1750

॥ ଓଁ ନମୋ ଭଗବତେ ବାସୁଦେବାୟ ॥

ଅତିବଡ଼ୀ ଜଗନ୍ନାଥଦାସ ପ୍ରଣୀତ

# ଶ୍ରୀମଦ୍ଭାଗବତ ମହାପୁରାଣ

## ଏକାଦଶ ସ୍କନ୍ଧ

सन्त जगन्नाथदासकृत श्रीमद्भागवत—एकादश स्कन्ध ( ओड़िआ )

ତ୍ୱମେବ ମାତା ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ ।
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ
ତ୍ୱମେବ ସର୍ବଂ ମମ ଦେବଦେବ ॥

ସମ୍ପାଦକ ମଣ୍ଡଳୀ

ଡଃ ରଘୁନାଥ ମହାପାତ୍ର

ଶ୍ରୀ ନିରଞ୍ଜନ ପଣ୍ଡା

ଶ୍ରୀ ଦୀନବନ୍ଧୁଦାସ

ଗୀତାପ୍ରେସ, ଗୋରଖପୁର

॥ ଶ୍ରୀହରିଃ ॥

# ବିନମ୍ର ନିବେଦନ

ଶ୍ରୀମଦ୍‌ଭାଗବତର ଏକାଦଶ ସ୍କନ୍ଧକୁ ଭାଗବତର ସାରସର୍ବସ୍ୱ କହିଲେ ଅତ୍ୟୁକ୍ତି ହେବ ନାହିଁ; କାରଣ ସମଗ୍ର ଭାଗବତର ସାରଗର୍ଭକ ବିଷୟ ତଥା ମାନବଜୀବନରେ ପରମ ଶାନ୍ତି ବା ଚରମ ଲକ୍ଷ୍ୟ ପ୍ରାପ୍ତି ନିମନ୍ତେ ଉପାଦେୟ ହେଉଥିବା ନାନାବିଧ ସାଧନାପଦ୍ଧତି ଏଥିରେ ବର୍ଣ୍ଣିତ ହୋଇଛି। ମୁଖ୍ୟତଃ ଭକ୍ତପ୍ରବର ଉଦ୍ଧବଙ୍କୁ ଭଗବାନ ଶ୍ରୀକୃଷ୍ଣ ଦେଇଥିବା ଉପଦେଶ ଯାହାକି **'ଉଦ୍ଧବ ଗୀତା'** ନାମରେ ମଧ୍ୟ ପ୍ରସିଦ୍ଧ, ତାହା ଏହି ସ୍କନ୍ଧରେ ରହିଛି। ଶ୍ରୀମଦ୍‌ଭଗବଦ୍‌ଗୀତାରେ ଯେପରି ଭଗବାନ ତାଙ୍କର ପ୍ରିୟସଖା ଭକ୍ତଶ୍ରେଷ୍ଠ ଅର୍ଜୁନଙ୍କୁ କୃପାପରବଶ ହୋଇ ଉପଦେଶ ଦେଇଛନ୍ତି, ଉକ୍ତ ଏକାଦଶ ସ୍କନ୍ଧରେ ସେହିପରି ତାଙ୍କର ଆତ୍ମସ୍ୱରୂପ ଭକ୍ତପ୍ରବର ଉଦ୍ଧବଙ୍କୁ ହୃଦୟର କରୁଣାପୂର୍ଣ୍ଣ ଉଦ୍‌ଗାରରୂପେ ଜ୍ଞାନ, ଭକ୍ତି, ଉପାସନା ସମ୍ବନ୍ଧୀୟ ଅନେକ ଦୁର୍ଲଭ ଉପଦେଶ ଦେଇଛନ୍ତି। ବିଶେଷତଃ ଅବଧୂତ ଉପାଖ୍ୟାନର ଚବିଶ ଗୁରୁ ପ୍ରସଙ୍ଗ, ବର୍ଣ୍ଣାଶ୍ରମଧର୍ମ ପ୍ରସଙ୍ଗ, ପ୍ରକୃତିପୁରୁଷ ସମ୍ବନ୍ଧୀୟ ତତ୍ତ୍ୱ ବିବେଚନା, ଭିକ୍ଷୁଗୀତା, ଭଗବତ୍‌ଉପାସନା ବିଧି ପ୍ରଭୃତି ଏହି ଉପଦେଶରେ ଅତ୍ୟନ୍ତ ମାର୍ମିକ ତଥା ହୃଦୟସ୍ପର୍ଶୀ ବିଷୟ। ଏହାଛଡ଼ା ଏହି ସ୍କନ୍ଧରେ ବର୍ଣ୍ଣିତ ନିମି-ନବଯୋଗେଶ୍ୱରଙ୍କ ସଂବାଦ ମଧ୍ୟ ଭଗବତ୍-ଉପାସକମାନଙ୍କ ନିମନ୍ତେ ପରମ ଉପାଦେୟ। ଏହିସବୁ ଦୃଷ୍ଟିକୋଣରୁ ଅନେକ ଭାଗବତପ୍ରେମୀ ରସଗ୍ରାହୀ ଶ୍ରଦ୍ଧାଳୁ ଜନ ସମଗ୍ର ଭାଗବତ ମଧ୍ୟରୁ କେବଳ ଏକାଦଶ ସ୍କନ୍ଧକୁ ସ୍ୱତନ୍ତ୍ରଭାବେ ମଧ୍ୟ ପାଠ କରିଥାନ୍ତି। ଏଭଳି ପାଠକମାନଙ୍କ ନିକଟରୁ ଆସୁଥିବା ପରାମର୍ଶକୁ ଦୃଷ୍ଟିରେ ରଖି, ଗୀତାପ୍ରେସରୁ ପୂର୍ବପ୍ରକାଶିତ ଶ୍ରୀଜଗନ୍ନାଥଦାସକୃତ ଖଣ୍ଡିକିଆ ଭାଗବତ ଆଧାରରେ ବର୍ତ୍ତମାନ କେବଳ ଏକାଦଶ ସ୍କନ୍ଧକୁ ସ୍ୱତନ୍ତ୍ରରୂପେ ପ୍ରକାଶିତ କରାଯାଉଛି।

ପାଠକମାନଙ୍କୁ ବିନମ୍ର ନିବେଦନ ଯେ, ପୂର୍ବପ୍ରକାଶିତ ଖଣ୍ଡିକିଆ ସମ୍ପୂର୍ଣ୍ଣ ଭାଗବତକୁ ସେମାନେ ଯେପରି ବିପୁଳ ଶ୍ରଦ୍ଧାର ସହିତ ଗ୍ରହଣ କରିଛନ୍ତି, ଏହାକୁ ମଧ୍ୟ ସେହିପରି ଶ୍ରଦ୍ଧାପୂର୍ବକ ଗ୍ରହଣ କରିବେ ଏବଂ ଏହାକୁ ପଠନ-ପାଠନ କରି ମାନବଜୀବନକୁ ସାର୍ଥକ କରିବେ।

**—ପ୍ରକାଶକ**

॥ ଶ୍ରୀହରିଃ ॥

# ବିଷୟ ସୂଚୀ

| ଅଧ୍ୟାୟ | ବିଷୟ | ପୃଷ୍ଠା |
|---|---|---|

| ଅଧ୍ୟାୟ | ବିଷୟ | ପୃଷ୍ଠା |
|---|---|---|



□□□

॥ ଓଁ ଶ୍ରୀ ଗଣେଶାୟ ନମଃ ॥
॥ ଓଁ ନମୋ ଭଗବତେ ବାସୁଦେବାୟ ॥

# ମଙ୍ଗଳାଚରଣ

ବାଗୀଶା ଯସ୍ୟ ବଦନେ ଲକ୍ଷ୍ମୀର୍ଯସ୍ୟ ଚ ବକ୍ଷସି ।
ଯସ୍ୟାସ୍ତେ ହୃଦୟେ ସଂବିତ୍ ତଂ ନୃସିଂହମହଂ ଭଜେ ॥ ୧ ॥
ବିଶ୍ୱସର୍ଗବିସର୍ଗାଦିନବଲକ୍ଷଣଲକ୍ଷିତମ୍ ।
ଶ୍ରୀକୃଷ୍ଣାଖ୍ୟଂ ପରଂଧାମ ଜଗଦ୍ଧାମ ନମାମ ତତ୍ ॥ ୨ ॥
ମାଧବୋମାଧବାବୀଶୌ ସର୍ବସିଦ୍ଧିବିଧାୟିନୌ ।
ବନ୍ଦେ ପରସ୍ପରାତ୍ମାନୌ ପରସ୍ପରନୁତିପ୍ରିୟୌ ॥ ୩ ॥
ମୂକଂ କରୋତି ବାଚାଳଂ ପଙ୍ଗୁଂ ଲଙ୍ଘୟତେ ଗିରିମ୍ ।
ଯତ୍ କୃପା ତମହଂ ବନ୍ଦେ ପରମାନନ୍ଦମାଧବମ୍ ॥ ୪ ॥
ଯଂ ବ୍ରହ୍ମାବରୁଣେନ୍ଦ୍ରରୁଦ୍ରମରୁତଃ ସ୍ତୁନ୍ୱନ୍ତି ଦିବ୍ୟୈଃ ସ୍ତବୈ-
ର୍ବେଦୈଃ ସାଙ୍ଗପଦକ୍ରମୋପନିଷଦୈର୍ଗାୟନ୍ତି ଯଂ ସାମଗାଃ ।
ଧ୍ୟାନାବସ୍ଥିତତଦ୍‌ଗତେନ ମନସା ପଶ୍ୟନ୍ତି ଯଂ ଯୋଗିନୋ
ଯସ୍ୟାନ୍ତଂ ନ ବିଦୁଃ ସୁରାସୁରଗଣା ଦେବାୟ ତସ୍ମୈ ନମଃ ॥ ୫ ॥
ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମମ୍ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ॥ ୬ ॥



॥ ଓଁ ନମୋ ଭଗବତେ ବାସୁଦେବାୟ ॥

# ଏକାଦଶ ସ୍କନ୍ଧ

[ମୁକ୍ତି*]

## ପ୍ରଥମ ଅଧ୍ୟାୟ

ବ୍ରାହ୍ମଣ ଅଭିଶାପ ଫଳେ । ଜାତ ଯେ ହୋଇଲା ମୁଷଳେ ॥
ଯହୁଁ ଯାଦବ ବଂଶକ୍ଷୟ । ବର୍ଣ୍ଣନ ପ୍ରଥମ ଅଧ୍ୟାୟ ॥

ନମଇଁ ନୃସିଂହ ଚରଣ । ଅନାଦି ପରମ କାରଣ ॥
ଲୀଳା ବିଧୃତ କଳେବର । ଦେବ ମାନବେ ଅଗୋଚର ॥
ମାୟା ସଂସାର ଯାର ଲୀଳା । ଯା ନାମ ଭବଜଳେ ଭେଳା ॥
କରୁଣା କଟାକ୍ଷ ପ୍ରକାଶେ । ଭକତ ଜନ ଦୁଃଖ ନାଶେ ॥
ତା ପାଦେ ଶରଣ ମୋହର । ଏଣେ ତରିବି ଭବ ଘୋର ॥
ସେ ହରି ଚରିତ ପ୍ରକାଶ । ମୁକ୍ତି ଲକ୍ଷଣ ଏକାଦଶ ॥
ଏ ଭାଗବତ ଧର୍ମ କଥା । ହେଲେ ଖଣ୍ଡଇ ଭବ ବ୍ୟଥା ॥
ନାରଦ ବସୁଦେବ ବାଣୀ । ନିମି ରାଜନେ ନବ ମୁନି ॥
ଉଦ୍ଧବ ନିସ୍ତାରଣ ବାଣୀ । ଯାହା କହିଲେ ଚକ୍ରପାଣି ॥
ଏ କଥା ପ୍ରାକୃତେ ପ୍ରକାଶ । ଆରମ୍ଭେ ଜଗନ୍ନାଥ ଦାସ ॥
ବ୍ୟାସନନ୍ଦନ ମୁଖୁଁ ଶୁଣି । ନିର୍ମଳ ଭାଗବତ ବାଣୀ ॥
ସାଧୁ ସଙ୍ଗମେ ଗଙ୍ଗାତୀରେ । ଶୁକ ଚରଣ ଧରି କରେ ॥
ଆନନ୍ଦେ କରି ଅଶ୍ରୁପାତ । ବୋଇଲେ ଅଭିମନ୍ୟୁ ସୁତ ॥

*ରାଜା ପରୀକ୍ଷିତ ଉବାଚ*

ଭୋ ମୁନି ନମେ ତୋ ପୟରେ । ମୋତେ ଉଦ୍ଧର ଏ ସଂସାରେ ॥
କହ ଶ୍ରୀକୃଷ୍ଣ ଗୁଣମାନ । ପୁଣି କି କଲେ ଭଗବାନ ॥(ଜ.)

---

* ଭାଗବତର ନବମ ଲକ୍ଷଣ ।

*ଶ୍ରୀ ଶୁକ ଉବାଚ*

ଦେବଙ୍କ ବ୍ୟାକୁଳେ ମୁରାରି । ଅବନୀ ତଳେ ଅବତରି ॥
ଅଂଶେ ମନୁଷ୍ୟ ରୂପ ଧରି । ଯାଦବ ତୁଳେ ରାମହରି ॥
ଦୁଷ୍ଟ ଦନୁଜଗଣ ମାରି । ଅବନୀ ଭାରା ହେଳେ ହରି ॥ ୧
କୁରୁ ପାଣ୍ଡବ ମଧ୍ୟେ ହରି । ମାୟା କନ୍ଦଳେ ଭେଦ କରି ॥
କପଟ ପଶା ବନବାସ । ଆକର୍ଷି ଦ୍ରୌପଦୀର କେଶ ॥
ଭୀମକୁ ବିଷଲଡୁ ଦେଇ । ଜତୁର ଘରେ ଅଗ୍ନି ଦାହି ॥
ଏ ଆଦି ଯେତେ କଷ୍ଟମାନ । ପାଣ୍ଡବେ ଦେଲା ଦୁର୍ଯ୍ୟୋଧନ ॥
ସେ ଅପମାନେ କ୍ରୋଧ ବହି । ସଙ୍ଗତେ ଘେନି ପାଞ୍ଚଭାଇ ॥
ନିମିତ୍ତ କରି ତାଙ୍କୁ ହରି । ଅନେକ ଅକ୍ଷୌହିଣୀ ମାରି ॥
ଭାରା ନିବାରି ଭଗବାନ । ଅନ୍ତେ ଚଳିଲେ ନିଜ ସ୍ଥାନ ॥ ୨
ଯାଦବେ କୃଷ୍ଣ ଭୁଜବଳେ । ଅଜେୟ ଏ ମହୀମଣ୍ଡଳେ ॥
ତାହାଙ୍କୁ ସଙ୍ଗେ ଘେନି କରି । ଦୁଷ୍ଟରାଜାଙ୍କ ପ୍ରାଣ ହରି ॥
ମନରେ କରନ୍ତି ବିଗ୍ରହ । ଯାବତ ଛନ୍ତି ଯଦୁବୀର ॥
ତାବତ ପୃଥିବୀର ଭାର । ଉଶ୍ୱାସ କାହିଁ ଅଛି ଆର ॥ ୩
ଦେବତା ଆଦି ନାଗ ନର । ଏଣେ ଏ ନୁହନ୍ତି ସଂହାର ॥
ମୋର ବିଭବ ମୋର ହସ୍ତେ । ନାଶିବା ନୁହଇ ଉଚିତେ ॥
କଳି ଭିଆଇ ନିଜ ବଂଶେ । ସଂହାରି ବିଶ୍ରାମିବି ଶେଷେ ॥
ବନୁଁ ଅନଳ ଜାତ ହୋଇ । ଯେହ୍ନେ ଲିଭଇ ବନ ଦହି ॥ ୪
ଶୁଣ ରାଜନ ପରୀକ୍ଷିତ । ଏମନ୍ତ ବିଗ୍ରହି ଅଚ୍ୟୁତ ॥
ନିମିତ୍ତ ବିପ୍ରଶାପ କରି । କନ୍ଦଳେ ନିଜ ବଂଶ ମାରି ॥ ୫
ଲାବଣ୍ୟରୂପେ ଜନ ମୋହି । ପ୍ରାଣୀ ନୟନେ ସୁଖ ଦେଇ ॥
ସେ ରୂପ କରି ଅନ୍ତର୍ଦ୍ଧାନ । ହରିଲେ ପ୍ରାଣୀଙ୍କର ମନ ॥
କୃଷ୍ଣ କୋମଳ ମଞ୍ଜୁବାଣୀ । ଯେ କର୍ଣ୍ଣପଥେ ଥିଲେ ଶୁଣି ॥
ତେଣେ ତାହାଙ୍କ ମନ ହରି । ଅନ୍ତର ହୋଇଲେ ମୁରାରି ॥

କୃଷ୍ଣର ପାଦପଦ୍ମ ଚିହ୍ନ । ସୁନ୍ଦର ମନ୍ଥର ଗମନ ॥
ସେ ପାଦପଦ୍ମେ ଦେଇ ମନ । ଯେ ଅବା ଦେଖିଥିଲେ ଜନ ॥
ତେଣେ ତାହାଙ୍କ ମନ ହରି । ନିଜ ଭୁବନେ ବିଜେ କରି ॥
କୃଷ୍ଣର ଯଶ ଗୁଣ ଯେତେ । ସଂସାରେ ଶୁଣି ଗୁଣି ଚିତ୍ତେ ॥
ପ୍ରାଣୀ ହୋଇବେ ଭବୁଁ ପାର । ଏମନ୍ତ ମହିମା ଯାହାର ॥
ସେ ରୂପ କଲେ ଅନ୍ତର୍ଦ୍ଧାନ । ହରି ଚଳିଲେ ନିଜ ସ୍ଥାନ ॥୬,୭
ଶୁକ ଚରଣତଳେ ପଡ଼ି । କହେ ପରୀକ୍ଷ କର ଯୋଡ଼ି ॥(ଜ.)

*ରାଜା ପରୀକ୍ଷିତ ଉବାଚ*

ଅଖଣ୍ଡ ଯଦୁବଂଶ କୋପେ । କିମ୍ପା ହରିଲେ ବ୍ରହ୍ମଶାପେ ॥
ଯେ ଯଦୁବଂଶ ମହୀତଳେ । କ୍ଷୟ ନୁହନ୍ତି ରିପୁବଳେ ॥
ଯାହାର ସ୍ନେହ ଅନୁବନ୍ଧେ । ଈଶ୍ୱର ଖେଳଇ ଆନନ୍ଦେ ॥
ଯାଦବେ ବିପ୍ର ଗୁରୁ ପାଦେ । ସେବନ୍ତି ବେଦବିଧି ବାଦେ ॥
ସେ ବ୍ରହ୍ମଶାପ ନରହରି । ହେଲେ ପାରଇ ଆନ କରି ॥
ସର୍ବ ସମ୍ପଦ ନିଜ ପୁରୀ । ମାୟାର ବଳେ ଯେତେ କରି ॥
କିମ୍ପା ଗୋବିନ୍ଦ ସଂହାରିଲେ । ନିଜ ଭୁବନେ ବିଜେ କଲେ ॥
ଯାଦବେ ଏକଆତ୍ମା ହୋଇ । କିମ୍ପା କନ୍ଦଳ କଲେ ସେହି ॥
କି ଶାପ କି ଅବା କାରଣ । ଏ ସର୍ବ ମୋହର ପ୍ରଶନ ॥
ଭୋ ମୁନି କହ ତୋଷମନେ । ଏମନ୍ତ ରାଜାର ବଚନେ ॥୮,୯
ବୋଲନ୍ତି ବ୍ୟାସମୁନି ସୁତ । ଶୁଣ ହୋ କୃଷ୍ଣର ଚରିତ ॥(ଜ.)

*ଶ୍ରୀ ଶୁକ ଉବାଚ*

ଜନମୋହନ ମାୟାଧର । ପ୍ରକାଶି ନର କଳେବର ॥
ନାନା ବିଚିତ୍ର କର୍ମ କରି । କନ୍ଦଳେ ନିଜ ବଂଶ ମାରି ॥
କାହାର ସାଧ୍ୟ ଏ ବେଭାର । ଶୁଣ ସୁମନେ ନୃପବର ॥୧୦
କଳି କଳୁଷ ନିବାରଣ । ସଂସାରେ ସ୍ଥାପି ଯଶଗୁଣ ॥
ଏବେ ଗୋବିନ୍ଦ କଲେ ଯେତେ । କହିବା ଶୁଣ ଏକଚିତ୍ତେ ॥

ଯାଦବ ବଂଶ ନାଶ ଅର୍ଥେ । ଗୋବିନ୍ଦ ସୁମରିଲେ ଚିତ୍ତେ ॥
ବିପ୍ରେ ଯେ ଥିଲେ ନିଜ ଦେଶେ । ବାହାର କୃଷ୍ଣ ମାୟାବଶେ ॥
ବିଶ୍ୱାମିତ୍ରଙ୍କୁ ଆଗ କରି । ଅସିତ କଣ୍ୱ ବ୍ରହ୍ମଗ୍ରୀ ॥
ବଶିଷ୍ଠ ନାରଦ ବିଶେଷି । ଭୃଗୁ ଅଙ୍ଗିରା ଅତ୍ରି ଋଷି ॥
ଦୁର୍ବାସା କଶ୍ୟପଙ୍କୁ ଘେନି । ଶ୍ରୀବାମଦେବ ବ୍ରହ୍ମମୁନି ॥
ସର୍ବେ ଗ୍ଲନ୍ତି ବନପଥେ । ମିଳିଲେ ପିଣ୍ଡାରକ ତୀର୍ଥେ ॥୧୧,୧୨
ଏଣେ ଯେ କୃଷ୍ଣର କୁମରେ । ଆନନ୍ଦେ ସମୁଦ୍ରର ତୀରେ ॥
ସକଳେ ଏକସ୍ଥାନେ ମିଳି । ରଙ୍ଗେ କରନ୍ତି ନାନାକେଳି ॥
ଶାମ୍ବକୁ ନାରୀବେଶ କରି । ଉଦରେ ଲୌହପାତ୍ର ଭରି ॥
ଗ୍ଲଇ ଚରଣ ମନ୍ଥରେ । ଶ୍ରମେ ଘର୍ମିତ କଳେବରେ ॥
ମୁନିଙ୍କି ଦେଖି ଲଜ୍ଜା ପାଇ । ଅନ୍ତରେ ଅଧୋମୁଖ ହୋଇ ॥
ରହିଲା ଲତା ଅଭ୍ୟନ୍ତରେ । ଏମନ୍ତେ କୃଷ୍ଣର କୁମରେ ॥
ମୁନି ସମୀପେ ଧୀରେ ଯାଇ । କର ଅଞ୍ଜଳି ଶିରେ ଦେଇ ॥
କୋମଳ ମଧୁର ବଚନେ । ବୋଲନ୍ତି ଶୁଣ ବିପ୍ରଜନେ ॥
ଯାଦବ କୁଳବଧୂ ଏହି । ଅନେକ ଦିନୁ ଗର୍ଭ ବହି ॥
ପ୍ରସବ ନୋହେ କି କାରଣେ । ପୁଚ୍ଛିଲୁ ତୁମ୍ଭର ଚରଣେ ॥
ଗ୍ଲି ନ ପାରେ ଶ୍ରମଭାଗେ । ଲାଜେ ନ କହେ ତୁମ୍ଭ ଆଗେ ॥
ତୁମ୍ଭେ ସର୍ବଜ୍ଞ ମୁନି ସର୍ବେ । ଏହାର ଗର୍ଭେ କି ହୋଇବ ॥
ପୁତ୍ର ଦୁହିତା କିବା ଜାତ । ମାୟା ନ କରି କହ ସତ ॥୧୩-୧୫
ଶୁଣି ସେ କପଟ ବଚନ । କୋପେ ବୋଲନ୍ତି ମୁନିଜନ ॥
ଏ ନାରୀ ଗର୍ଭବାସ ବାଣୀ । ଆମ୍ଭେ ଜାଣିଲୁଁ ପରିମାଣି ॥
ଏହାର ଗର୍ଭେ ହେବ ବାଳ । ନିଷ୍ଠୁର ଲୌହର ମୁଷଳ ॥
ଆଜ ଏ ଗର୍ଭ ପ୍ରସବିବ । ତୁମ୍ଭର ବଂଶ ବିନାଶିବ ॥
କୁଳ ସମୂଳେ କରି ନାଶ । ଭୂମିରେ ଯେତେ ଯଦୁବଂଶ ॥୧୬
ଏମନ୍ତ କହି ଗଲେ ମୁନି । କୃଷ୍ଣକୁମରେ ତାହା ଶୁଣି ॥
ବଜ୍ର ପଡ଼ିଲା ଯେହ୍ନେ ମୁଣ୍ଡେ । ଶାମ୍ବକୁ ଘେନି ରାଜଦାଣ୍ଡେ ॥

ତକ୍ଷଣେ ଲୌହପାତ୍ର ଫେଇ । ପେଟ ଖୋଜନ୍ତି ହସ୍ତ ଦେଇ ॥
ପିଙ୍ଗଳ କର୍କଶ ପିଚ୍ଛିଳ । ଦେଖିଲେ ଲୌହର ମୁଷଳ ॥
ଗର୍ଭୁଁ ପଡ଼ିଲା ବଜ୍ର ପ୍ରାୟେ । ଦେଖି କମ୍ପନ୍ତି ମହାଭୟେ ॥
ଲୌହମୁଷଳ ତେଜଭରେ । ଚକ୍ଷୁ ବୁଜିଲେ ବେନି କରେ ॥
ବୋଲନ୍ତି କଲୁଁ ମନ୍ଦକର୍ମି । କିବା ବୋଲିବେ କୃଷ୍ଣ ରାମ ॥୧୭,୧୮
ଏମନ୍ତେ ଶ୍ରୀକୃଷ୍ଣର ସୁତେ । ଲୌହମୁଷଳ ଘେନି ହସ୍ତେ ॥
ଉଗ୍ରସେନର ସଭାତଳେ । ମିଳିଲେ ହୃଦୟ ବିକଳେ ॥
ଲୌହମୁଷଳ ତଳେ ଥୋଇ । କହନ୍ତି ସଭାମୁଖ ଚାହିଁ ॥
ଆମ୍ଭେ ଯେ କ୍ରୀଡ଼ା କଉତୁକେ । ଖେଳନ୍ତେ ତୀର୍ଥ ପିଣ୍ଡାରକେ ॥
ଶାମ୍ବକୁ ନାରୀବେଶ କରି । ଉଦରେ ଲୌହପାତ୍ର ଭରି ॥
ମୁନିଙ୍କି ପଚ୍ଚାରିଲୁଁ ଭାବେ । ଏ ଗର୍ଭ ପ୍ରସବ ପ୍ରସ୍ତାବେ ॥
ଶୁଣି କୋପିଲେ ମୁନିଜନେ । ବନ ଗହନ ପଥଶ୍ରମେ ॥
ବୋଇଲେ ଗର୍ଭେ ଅଛି ବାଳ । ନିଷ୍ଠୁର ଲୌହର ମୁଷଳ ॥
ଭୂମିରେ ଯଦୁବଂଶ ଯେତେ । ଏ ଲୌହେ ମରିବେ ସମସ୍ତେ ॥
ନାଶ କରିବ ଯଦୁକୁଳ । ଏ ଜାତ ଲୌହର ମୁଷଳ ॥
ତକ୍ଷଣେ ଗର୍ଭ ଫେଇ ଦେଖି । ଭୟେ ବୁଜିଲୁଁ ବେନି ଆଖି ॥
ଏମନ୍ତ କହି ସଭାମଧ୍ୟେ । କୁମରେ ବସିଲେ ବିଷାଦେ ॥୧୯
ଶୁଣି ସକଳ ପୁରଜନେ । କହନ୍ତି ଦୁଃଖିତ ବଚନେ ॥
ନିଷ୍ଠୁର ବ୍ରହ୍ମ କୋପାନଳ । ଦହିବ ନିଶ୍ଚେ ଯଦୁକୁଳ ॥
ଅନ୍ୟଥା କେ ତାହା କରିବ । ବ୍ରହ୍ମାଣଙ୍କର ବାସୁଦେବ ॥
ଭୟେ ତରସ୍ତ ସର୍ବଜନ । ବଦନୁ ନ ସ୍ଫୁରେ ବଚନ ॥
ତା ଦେଖି ରାଜା ଉଗ୍ରସେନ । ଭୃତ୍ୟଙ୍କୁ ବୋଲନ୍ତି ବଚନ ॥୨୦
ଏ ଲୌହ ଗିରିଶିଖେ ନେଇ । ଘଷ ସମୁଦ୍ରଜଳ ଦେଇ ॥
ନିଃଶେଷ କରି ଲୌହ ଘଷ । ଯେମନ୍ତେ ନ ରହଇ ଶେଷ ॥
ତକ୍ଷଣେ ରାଜା ଆଜ୍ଞା ପାଇ । ମୁଷଳ ଘେନି ବେଗେ ଯାଇ ॥
ପର୍ବତେ ସମୁଦ୍ରର ଜଳେ । ଲୌହ ଘଷନ୍ତି ଭୁଜବଳେ ॥

ଘଷନ୍ତେ ଲୌହଚୂର୍ଣ୍ଣ ଶିଳେ । ପଡ଼ଇ ସମୁଦ୍ରର ଜଳେ ॥
ଅନେକ ଦିନ ଘଷି ରୋଷେ । ଅଳପ ରହେ ଅବଶେଷେ ॥
ଅଙ୍ଗୁଳି ଛିଡ଼େ ଘରଷଣେ । ନିଷ୍ଠୁର ନିଃଶେଷ କରଣେ ॥
ନ ପାରି ପକାଇଲେ ଜଳେ । ଘୋର ଗଭୀର ମୀନମେଳେ ॥୨୧
ଲୌହ ପଡ଼ନ୍ତେ ଘୋର ପାଣି । ଆହାର ପ୍ରାପ୍ତ ତାହା ମଣି ॥
ମୀନ ଗିଳିଲା ଅତି ବେଗେ । ସେ ମୀନ ମତ୍ସ୍ୟଗଣ ସଙ୍ଗେ ॥
ଚରନ୍ତେ ସମୁଦ୍ରର ଜଳେ । ଜାଲେ ପଡ଼ିଲା ରାତ୍ରକାଳେ ॥
ଧୀବର ମୀନ ନେଇ ଏକା । ଜାରାଶବରେ ଦେଲା ଦେଖା ॥
ମୀନ କାଟନ୍ତେ ତାର ଘରେ । ଲୌହ ଦେଖିଲା ତା ଉଦରେ ॥
କର୍କଶ ପିଙ୍ଗଳ ପ୍ରଚଣ୍ଡ । ଯେହ୍ନେ ଜଳଇ ମାରତଣ୍ଡ ॥
ଦେଖି ଶବର ତୋଷ ହୋଇ । ନାରାଚ କଲା ତାହା ନେଇ ॥
ବାଣର ମୁନେ ତୀକ୍ଷ୍ଣଫଳ । ତେଜେ କି ଗଞ୍ଜଇ ଅନଳ ॥
ଲୌହର ଚୂର୍ଣ୍ଣ ପଡ଼ି ଜଳେ । ଭାସିଲା ସମୁଦ୍ର ଉଲ୍ଲୋଳେ ॥
ତୀରେ ଲାଗନ୍ତେ ଲୌହଚୂର୍ଣ୍ଣ । ଜନ୍ମିଲା ଏରକାର ବନ ॥
ତୀକ୍ଷ୍ଣ ତ୍ରିଶିର ସେ ସ୍ୱଭାବେ । ଯେଣେ ଯାଦବେ ନାଶଯିବେ ॥୨୨,୨୩
ଯେ କାଳରୂପୀ ଭଗବାନ । ଜାଣଇ ସକଳ ବିଧାନ ॥
ବଳେ ସକଳ କରିପାରେ । ତଥାପି ବ୍ରହ୍ମଶାପେ ଡରେ ॥
କୁଳବିନାଶ ହେତୁ କରି । ଅବନୀଭାରା ହେଲେ ହରି ॥
ନିଜ ଭୁବନେ ଅବଧାନ । ନିର୍ଲେପ ପ୍ରଭୁ ଭଗବାନ ॥୨୪
ଶ୍ରୀଏକାଦଶ ଭାଗବତ । ବୋଲଇ ଦାସ ଜଗନ୍ନାଥ ॥
ଜାହ୍ନବୀ ତୀରେ ରାଜା ଆଗେ । ଶୁକ କହନ୍ତି ବ୍ରହ୍ମଭାଗେ ॥
ପୁରାଣ ଭାଗବତ ବାଣୀ । ସୁଜନେ ତର ଏହା ଶୁଣି ॥

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ଏକାଦଶସ୍କନ୍ଧେ ବିପ୍ରଶାପକଥନଂ ନାମ ପ୍ରଥମୋଽଧ୍ୟାୟଃ ।

# ଦ୍ୱିତୀୟ ଅଧ୍ୟାୟ

ଦ୍ୱିତୀୟେ ନିମି ନବଋଷି । ସଂବାଦେ ନାରଦ ମହର୍ଷି ॥
ଶ୍ରୀ ଭାଗବତ ଧର୍ମବାଣୀ । ବସୁଦେବଙ୍କ ଆଗେ ଭଣି ॥

*ଶ୍ରୀ ଶୁକ ଉବାଚ*

ଶୁଣ ପରୀକ୍ଷ ମନସ୍ଥିରେ । ଅଦ୍ଭୁତ ଦ୍ୱାରକା ନଗରେ ॥
ଗୋବିନ୍ଦ ଭୁଜଦଣ୍ଡ ବଳେ । ଯାଦବେ ଥାନ୍ତି ସୁଖଭୋଳେ ॥
ଯହିଁ ନାରଦ ଥାନ୍ତି ନିତି । କୃଷ୍ଣଭକତି ହୃଦେ ଚିନ୍ତି ॥ ୧
ମର୍ତ୍ତ୍ୟେ ମନୁଷ୍ୟ ଦେହ ଧରି । କେ କୃଷ୍ଣଭାବ ପରିହରି ॥
ବାସବ ଆଦି ଦେବଗଣ । ଯାକୁ ସେବନ୍ତି ଅନୁକ୍ଷଣ ॥
ଭବ ବିରଞ୍ଚି ଯାର ପାଦେ । ସେବନ୍ତି ନିତ୍ୟେ ଅପ୍ରମାଦେ ॥ ୨
ନାରଦମୁନି ଏକଦିନେ । ଗଲେ ବସୁଦେବ ଭୁବନେ ॥
ନାରଦ ଆଗମନ ଭାବ । ଦେଖି ଜାଣିଲେ ବସୁଦେବ ॥
ପବିତ୍ର ଜଳେ ପାଦ ଧୋଇ । ଆସନେ ବସାଇଲେ ନେଇ ॥
ଚରଣେ କରି ନମସ୍କାର । ଭାବେ ବୋଇଲେ ଯଦୁବୀର ॥ ୩

*ବସୁଦେବ ଉବାଚ*

ଧନ୍ୟ ଜୀବନ ଆଜ ମୋର । ଦେଖିଲି ଚରଣ ତୁମ୍ଭର ॥
ତୁମ୍ଭେ ଯେ ଲୋକ ପରିତ୍ରାଣେ । ବ୍ରହ୍ମାଣ୍ଡେ ବୁଲ ଅନୁକ୍ଷଣେ ॥
ପିତାମାତାଙ୍କ ଆଗମନ । ପୁତ୍ରଙ୍କୁ କଲ୍ୟାଣ ଯେସନ ॥
ବିଷ୍ଣୁ ଭକତଜନ ଦେଖି । ନିର୍ମଳ ହୋଏ ଚର୍ମ ଆଖି ॥ ୪
ଜନ୍ତୁଙ୍କୁ ଦେବଙ୍କ ଚରିତ । ସାଧଇ ଦୁଃଖ ସୁଖ ଅର୍ଥ ॥
ତୁମ୍ଭର ପ୍ରାୟ ସାଧୁ ଯେତେ । କେବଳ ପ୍ରାଣୀ ସୁଖ ଅର୍ଥେ ॥
ସାଧବେ ବିଷ୍ଣୁଭାବେ ଥାନ୍ତି । ଏଣୁ ପ୍ରାଣୀଙ୍କ ହିତ ଚିନ୍ତି ॥
ଦେବଙ୍କ ଚରିତ ପ୍ରମାଦ । କରଇ ହରଷ ବିଷାଦ ॥ ୫

ମନୁଷ୍ୟେ ସୁଖଭୋଗ ଚିନ୍ତି । ଯେ ଅବା ଦେବଙ୍କୁ ଭଜନ୍ତି ॥
ଦେବେ ତାହାଙ୍କ ଉପକାରେ । ଭଜନ୍ତି ଭକ୍ତି ଅନୁସାରେ ॥
ସ୍ୱଭାବେ ଦେବେ ଛାୟାବତ । ବସନ୍ତି କର୍ମର ଆୟତ୍ତ ॥
ତେଣୁ ସେ କର୍ମ ଅନୁସାରେ । ପ୍ରାଣୀଙ୍କି ତୋଷୁଥାନ୍ତି ବରେ ॥
ସେ କର୍ମଫଳ ଅନୁମତେ । ପ୍ରାଣୀ ଭୁଞ୍ଜନ୍ତି ବେନି ମତେ ॥
ବିଷ୍ଣୁ ଭକତ ପ୍ରାଣୀଙ୍କର । ଜଗତେ ନାହିଁ ଆତ୍ମ ପର ॥
ଦୟା କରନ୍ତି ଦୀନଲୋକେ । ଦିନ ହରନ୍ତି ଦୁଃଖସୁଖେ ॥ ୬
ଆଜ ମୁଁ ଦେଖି ତୁମ୍ଭ ପାଦ । ଲଭିଲି ସକଳ ସମ୍ପଦ ॥
ତଥାପି ବୈଷ୍ଣବର ଧର୍ମ । ବିଷ୍ଣୁ ପ୍ରସନ୍ନେ ଯେତେ କର୍ମ ॥
ତାହା ଶୁଣିତେ ମୋର ଇଚ୍ଛା । ପୁଚ୍ଛଇ କହ ଧର୍ମଦୀକ୍ଷା ॥
ଯେ ଧର୍ମ କଥନ ଶ୍ରବଣ । ସକଳ ଭୟ ନିବାରଣ ॥ ୭
ପୂର୍ବେ ମୁଁ ତପ ଯୋଗବଳେ । ସେବିଲି ବିଷ୍ଣୁ ପାଦମୂଳେ ॥
ବିଷ୍ଣୁ ଯାଚିଲେ ମୋତେ ବର । ମୋର ଅଦୃଷ୍ଟ ବଳୀୟାର ॥
ମୋକ୍ଷ ନ ମାଗି ପୁତ୍ର କାମେ । ପଡ଼ିଲି ମାୟା ମୋହ ଭ୍ରମେ ॥
ଏବେ ଉପାୟ ତୁମ୍ଭେ କର । ଯେମନ୍ତେ ତୁଟେ ଭ୍ରମ ମୋର ॥୮,୯

*ଶ୍ରୀ ଶୁକ ଉବାଚ*

ଏରୂପେ ବସୁଦେବ ବାଣୀ । ଶୁଣି ସାନନ୍ଦେ ଦେବମୁନି ॥
ବୋଲନ୍ତି ଶୁଣ ଯଦୁବୀର । ଧନ୍ୟ ବଚନ ଏ ତୋହର ॥
ତୋ ଚିତ୍ତ ଭାଗବତଧର୍ମେ । କଲ୍ପିଲା ପୂର୍ବ ପୁଣ୍ୟକର୍ମେ ॥
ଶୁଣ ସେ ଧର୍ମର ମହିମା । କେ କହିପାରେ ଗୁଣ ସୀମା ॥୧୦,୧୧
ଯେବେ ଶ୍ରବଣେ ଏହା ଶୁଣି । ମନ ବଚନେ ପରିମାଣି ॥
ଯଦ୍ୟପି ଦେବ-ବିଶ୍ୱ-ଦ୍ରୋହୀ । ଅନ୍ୟ ପତିତ ଯେବେ ହୋଇ ॥
ସେ ଧର୍ମେ ଯେବେ ମନ ପଶେ । ସର୍ବ କଳୁଷ ବେଗେ ନାଶେ ॥୧୨
ଧନ୍ୟ ଯାଦବ ତୋ ଜୀବନେ । କୃଷ୍ଣେ ମୋ ନିବେଶିଲୁ ମନ ॥
କୃଷ୍ଣର ଶ୍ରବଣ କୀର୍ତ୍ତନ । ଅଶେଷ ଦୁରିତ ଦହନ ॥୧୩

କହିବା ଶୁଣ ସାବଧାନ । ଯେ ଇତିହାସ ପୁରାତନ ॥
ପୂର୍ବେ ଯେ ବିଦେହମଣ୍ଡଳେ । ନିମି ରାଜାର ଯଜ୍ଞକାଳେ ॥
ଦିବ୍ୟ ପୁରୁଷ ନବଋଷି । ମିଳିଲେ ଯଜ୍ଞଶାଳେ ଆସି ॥
ସେ ନବଋଷି ମହାଜନ । ଶୁଣ ହେ ତାହାଙ୍କ ବିଧାନ ॥୧୪
ବ୍ରହ୍ମାର ଶରୀରୁ ସମ୍ଭବେ । ଯେ ମନୁ ନାମ ସ୍ୱାୟମ୍ଭୁବେ ॥
ତାର ତନୁଜ ପ୍ରିୟବ୍ରତ । ସୁଗୁଣ ସାଧୁ ଶୁଚିବନ୍ତ ॥
ପ୍ରିୟବ୍ରତର ସୁତ ଯେହି । ଆଗ୍ନୀଧ୍ର ବୋଲି ନାମ ହୋଇ ॥
ନାଭି ତାହାର ତହୁଁ ଜାତ । ସୁନ୍ଦର ସର୍ବଗୁଣ ଯୁକ୍ତ ॥
ଋଷଭ ତାହାର କୁମର । ସେ ବିଷ୍ଣୁଅଂଶେ ଅବତାର ॥
ତାର ମହିମା ଗୁଣ ଯେତେ । ଅନ୍ତ କେ କରୁ ତ୍ରିଜଗତେ ॥
କହିବା ଶୁଣ ହୋ ତାହାର । ହୋଇଲେ ଶତେକ କୁମର ॥
ସକଳେ ବେଦବିଦ୍ୟା ସାର । ପବିତ୍ରମୟ କଳେବର ॥୧୫,୧୬
ତାହାଙ୍କ ମଧ୍ୟେ ଜ୍ୟେଷ୍ଠ ସୁତ । ଭରତ ନାମରେ ବିଦିତ ॥
ଭରତ ଥାଇ ପୁଣ୍ୟକର୍ମେ । ଭାରତ ଭୂମି ଯାର ନାମେ ॥୧୭
ଭୁବନେ ରାଜଭୋଗ ଭୁଞ୍ଜି । ବନେ ପଶିଲା ରାଜ୍ୟ ତେଜି ॥
ତପେ ତୋଷିଲା ଭାବଗ୍ରାହୀ । ଜାତିସ୍ମର[୧] ସେ ଜନ୍ମୁଁ ହୋଇ ॥
ଏମନ୍ତେ ତିନି ଜନ୍ମ ଅନ୍ତେ । ପଶିଲା ବିଷ୍ଣୁପାଦଗତେ ॥
ଅଶେଷ ଦୁଃଖ ନାଶ ଗଲା । ଜନ୍ମ ମରଣୁଁ ନିସ୍ତରିଲା ॥୧୮
ଆବର ଊନଶତ ଭାଇ । ତାଙ୍କ ମହିମା ଶୁଣ ତୁହି ॥
ତାହାଙ୍କ ମଧ୍ୟେ ନବସୁତ । ସାଧୁ ସୁଗୁଣ ବଳବନ୍ତ ॥
ହୋଇଲେ ନବଦ୍ୱୀପେ ରାଜା । ସୁଖେ ପାଳିଲେ ଜନପ୍ରଜା ॥
ଏକ ଅଧିକେ ଅଶୀ ସୁତେ । ବେଦ ଅଭ୍ୟାସି ଦୃଢ଼ଚିତ୍ତେ ॥
କର୍ମେ ଆରାଧି ନାରାୟଣ । ଜଗତେ ହୋଇଲେ ବ୍ରାହ୍ମଣ ॥୧୯
ଶେଷ ଯେ ନବସୁତ ଥିଲେ । ନିର୍ଗୁଣ ଯୋଗ ଅଭ୍ୟାସିଲେ ॥

୧. ଜାତିସ୍ମର—ଯାହାର ପୂର୍ବଜନ୍ମ କଥା ମନେ ଥାଏ ।

ସେ ଆତ୍ମଜ୍ଞାନୀ ସାଧୁ ଧୀର । ଜଟା ବିଭୂତି ଦିଗମ୍ବର ॥
ମିତ୍ର ଅଇରି ପକ୍ଷ ସମ । ଶୁଣ ହୋ ତାହାଙ୍କର ନାମ ॥
ସେ କବି ହରି ଅନ୍ତରିକ୍ଷ । ଏ ତିନି ଜ୍ଞାନେ ଧ୍ୟାନେ ଦକ୍ଷ ॥
ପ୍ରବୁଦ୍ଧ ଯେ ପିପ୍ପଳାୟନ । ଷଷ୍ଠରେ ଆବିର୍ହୋତ୍ର ନାମ ॥
ଦ୍ରୁମିଳ ଚମସ ଏ ଦୁଇ । କରଭାଜନ ନବ ହୋଇ ॥୨୦,୨୧
ଏମନ୍ତେ ନବ ସହୋଦରେ । ଆନନ୍ଦେ ଭ୍ରମନ୍ତି ସଂସାରେ ॥
ତାହାଙ୍କ ମନ କୃଷ୍ଣଦେହେ । କପଟ ତେଜି ଏକସ୍ନେହେ ॥
ଦେଖନ୍ତି ସର୍ବଜୀବ ଦେହେ । ଏକା ଗୋବିନ୍ଦ ଆନ ନୋହେ ॥୨୨
ପରମଆତ୍ମା ଭାବେ ମଜ୍ଜି । ଏକା ଗୋବିନ୍ଦ ପାଦେ ଭଜି ॥
ସେ ଅବ୍ୟାହତ ଇଷ୍ଟଗତି[୧] । ଏମନ୍ତେ ନବବିପ୍ର ଥାନ୍ତି ॥
ସିଦ୍ଧ ଗନ୍ଧର୍ବ ସୁରମେଳେ । ଯକ୍ଷ କିନ୍ନର ରସାତଳେ ॥
ଶିବ ସୁରଭି ପୁରେ[୨] ଯାନ୍ତି । ବ୍ରହ୍ମାର ଭୁବନେ ମିଳନ୍ତି ॥
ଏ ଆଦି ନାନା ଦେଶ ପୁରେ । ଭ୍ରମନ୍ତି ନବ ସହୋଦରେ ॥୨୩
ସେ ନବମୁନି ଏକଦିନେ । ମିଳିଲେ ନିମି ଯଜ୍ଞସ୍ଥାନେ ॥
ତାହାଙ୍କୁ ଯଜ୍ଞସ୍ଥାନେ ଦେଖି । ଜନକ* ଆସନ ଉପେକ୍ଷି ॥
ଦେଖିଲା ଦିବ୍ୟ ତେଜୋମୟେ । ରବି ଶଶାଙ୍କ ସରି ନୋହେ ॥
ଅଗ୍ନି ଯେ କୁଣ୍ଡମଧ୍ୟେ ଥିଲେ । ବିପ୍ରଙ୍କ ସଙ୍ଗତେ ଉଠିଲେ ॥୨୪,୨୫
ଜାଣିଲା ବିଦେହ ରାଜନ । ଏ ସର୍ବେ କୃଷ୍ଣପରାୟଣ ॥
ଆନନ୍ଦମନେ ନୃପବର । ପୂଜିଲା ମୁନିଙ୍କ ପୟର ॥
ପ୍ରଣାମ କରି ତାଙ୍କ ପାଦେ । ଆସନେ ବସାଇ ଆନନ୍ଦେ ॥୨୬
ଦେଖଇ ରୂପ ତାହାଙ୍କର । ଯେସନେ ବ୍ରହ୍ମାଙ୍କ କୁମର ॥
କରଯୁଗଳ ଶିରେ ଦେଇ । ବୋଲଇ ନିସ୍ତରିଲି ମୁହିଁ ॥୨୭

---

୧. ଅବ୍ୟାହତ ଇଷ୍ଟଗତି—ଯେ ଅବାଧରେ ଯେଣେ ଇଚ୍ଛା ତେଣେ ଯାଇ ପାରନ୍ତି । ୨. ଶିବ ସୁରଭି ପୁର—ଶିବଙ୍କ ପୁର ଏବଂ ଗୋରୁମାନଙ୍କ ପୁର ।

* 'ଜନକ' ନାମ ବିଦେହରାଜ ନିମିଙ୍କ ପାଇଁ ବ୍ୟବହୃତ ହୋଇଛି ।

ବିଦେହ ଉବାଚ

ତୁମ୍ଭ ଚରଣଯୁଗ ଦେଖି । ନିର୍ମଳ କଲି ଚର୍ମ ଆଖି ॥
ତୁମ୍ଭେ ଯେ ନବ ବିପ୍ରବର । ନିଶ୍ଚୟେ କୃଷ୍ଣ ଅନୁଚର ॥
ସଂସାରେ ତୁମ୍ଭର ଭ୍ରମଣ । ଅଶେଷ ଲୋକ ପରିତ୍ରାଣ ॥୨୮
ଏ ଯେ ମନୁଷ୍ୟ କଳେବର । ଦୁର୍ଲଭ କ୍ଷଣିକ ଭଙ୍ଗୁର ॥
ତଥାପି ମନୁଷ୍ୟ ଶରୀରେ । ଯେ ଭଜେ ଗୋବିନ୍ଦ ପୟରେ ॥
ତାହାଙ୍କୁ ଦେଖନ୍ତି ଯେ ପ୍ରାଣୀ । ତରନ୍ତି ଭବତରଙ୍ଗିଣୀ ॥୨୯
କ୍ଷଣେ ନିମିଷେ ଲବେ ଲେଶେ । ଯେ ବସେ ସାଧୁଜନ ପାଶେ ॥
ଚିତ୍ତେ ଚିନ୍ତଇ କୃଷ୍ଣଭାବ । ତାହାକୁ ବୋଲି ନିଧିଲାଭ ॥୩୦
ସେ ଲାଭ ତୁମ୍ଭର ବଚନ । ମୁଁ ଯେବେ ଶୁଣିତେ ଭାଜନ ॥
ଯେ ଧର୍ମ ଆଚରିଲେ ପ୍ରାଣୀ । ନିଶ୍ଚେ ଲଭନ୍ତି ଚକ୍ରପାଣି ॥
ସେ ହରି ଯେଣେ ବଶ ହୋଇ । ତାହାଙ୍କୁ ଆତ୍ମଦାନ ଦେଇ ॥
ସେ ଧର୍ମ କହ ମୁନି ମୋତେ । ଏ ମାୟା ନ ଲାଗେ ଯେମନ୍ତେ ॥୩୧

ନାରଦ ଉବାଚ

ଏମନ୍ତେ ନିମି ବାକ୍ୟ ଶୁଣି । ବୋଲନ୍ତି ନବ ମହାମୁନି ॥
ଶୁଣ ହେ ରାଜା ଏକଚିତ୍ତେ । ଯାହା କହିଲେ ଭାଗବତେ ॥୩୨

କବି ଉବାଚ

କବି ବୋଲନ୍ତି ରାୟେ ଶୁଣ । ଯେ ଭାଗବତ ଧର୍ମ ଗୁଣ ॥
ନାନା ପ୍ରକାରେ ହରିପାଦେ । ଯାହାର ଚିତ୍ତ ଅପ୍ରମାଦେ ॥
ଭଜଇ ଜାଣି ବିଷ୍ଣୁମାୟା । ସେ ହରି କରେ ତାରେ ଦୟା ॥
ବିଷ୍ଣୁର ଅଭୟ ଚରଣ । ମଙ୍ଗଳ କୁଶଳ କଲ୍ୟାଣ ॥
ଅଶେଷ ଭୟ ନାଶ କରେ । ଯେ ନିତ୍ୟେ କୃଷ୍ଣନାମ ଧରେ ॥
ଦେହ ସମ୍ପଦ ଦାରା ସୁତ । ଏଣେ ମୋହିତ ଯାର ଚିତ୍ତ ॥
କାମ ସଙ୍କଳ୍ପ ଦିନେ ଦିନେ । ବଢ଼ଇ ବିଷୟ ଚିନ୍ତନେ ॥
ମାୟାରେ ମନ ଅଗୋଚରେ । ଭ୍ରମଇ ଅଶେଷ ପ୍ରକାରେ ॥

କୃଷ୍ଣର ଅଭୟ ଚରଣ । ଅଶେଷ ଦୁଃଖ ନିବାରଣ ॥୩୩
ହରି ଚରଣ ଲାଭ ଅର୍ଥେ । ନାନା ଉପାୟ ଶାସ୍ତ୍ରଗତେ ॥
ଯାହା କହିଲେ ଚକ୍ରଧର । ସେ ଭାଗବତଧର୍ମ ସାର ॥
ଭାବେ ଅଭାବେ ମନେ ଗୁଣି । ମୂର୍ଖହିଁ ତରେ ଯାହା ଶୁଣି ॥୩୪
ଏଣେ ଯେ ଭଜେ କୃଷ୍ଣପାଦ । ତାହାକୁ ନ ଲାଗେ ପ୍ରମାଦ ॥
ହୃଦେ ଗୋବିନ୍ଦପାଦ ଧ୍ୟାୟି । ନୟନ ବୁଜି ଯେବେ ଧାଇଁ ॥
ପଥ ନ ଜାଣି ଯେବେ ହୁଡ଼େ । ସେ ପ୍ରାଣୀ କେବେହେଁ ନ ପଡ଼େ ॥
ବେଦବଚନ ଧର୍ମଶାସ୍ତ୍ର । ଏ ବେନି ବିପ୍ରଙ୍କର ନେତ୍ର ॥
ଏକ ନ ଥିଲେ କାଣ[୧] ହୋଇ । ଦୁଇ ଅଭାବେ ଅନ୍ଧ ସେହି ॥
ଏମନ୍ତ ବିପ୍ର ଯେବେ ଚିତ୍ତେ । ହରିଙ୍କି ଭଜେ ଅବିରତେ ॥
ତାହାର ଅମଙ୍ଗଳ ନାହିଁ । ସକଳ ପାପୁଁ ସେ ତରଇ ॥
ଏମନ୍ତେ ଭାଗବତ ତତ୍ତ୍ୱ । ଈଶ୍ୱର ବଚନ ନିର୍ମିତ ॥
ଏହା ଯେ ନ କରନ୍ତି ପ୍ରାଣୀ । ଧର୍ମ ସଂଶୟ ମନେ ଗୁଣି ॥
କେବେହେଁ ନାହିଁ ସୁଖଲେଶ । ଉଭୟ ଲୋକେ ସେ ନିରାଶ ॥୩୫
ମନ ବଚନ ଦେହ ଚିତ୍ତ । ଅବା ଇନ୍ଦ୍ରିୟ ବୁଦ୍ଧିକୃତ ॥
କିବା ସ୍ୱଭାବେ ଅନୁସାରେ । ଯେ କର୍ମ କରି ଏ ସଂସାରେ ॥
ତା ନାରାୟଣେ ସମର୍ପିବ । ଜୀବର ସ୍ୱଧର୍ମ ଏ ଭାବ ॥
ଏ ଭାଗବତଧର୍ମ ଗୁଣ । ଈଶ୍ୱର ବଚନ ପ୍ରମାଣ ॥
ଏଣେ ସକଳ ଜ୍ଞାନ ପାଇ । ଅଜ୍ଞାନତମ ନାଶ ଯାଇ ॥୩୬
ଶୁଣ ବିଦେହ ମହୀପତି । ଯେ ହରିଭାବ ନ ଜାଣନ୍ତି ॥
ନାନା ପ୍ରକାରେ ତପ କରେ । ସେ ପ୍ରାଣୀ ସଂସାରୁ ନ ତରେ ॥
ହରି ବିମୁଖ ପ୍ରାଣୀ ଯେତେ । ସେ ଥାନ୍ତି ପଶୁଙ୍କ ସଙ୍ଗତେ ॥
ତାହାଙ୍କୁ ମୋହେ ବିଷ୍ଣୁମାୟା । ବିଷୟା ରସେ ବଢ଼େ ସ୍ପୃହା ॥
ଦେହକୁ ବସ୍ତୁ ପ୍ରାୟେ ମଣେ । ବଇରୀ ମିତ୍ର ପରିମାଣେ ॥

---

୧. କାଣ—କଣା, ଏକଚକ୍ଷୁହୀନ ।

ଭ୍ରମଇ ଶୋକ ମୋହ ପଥେ । ଅଜ୍ଞାନ ବୁଦ୍ଧିଭ୍ରମ ଗ୍ରସ୍ତେ ॥
ତେଣୁ ସଂସାର ମୋହେ ଜଡ଼ି । ଦୁଃଖ ସଙ୍କଟେ ଥାନ୍ତି ପଡ଼ି ॥
ଯାର ମାୟାରେ ଏତେ ଗତି । ତା ଭାବ ବୁଧଜନେ ଚିନ୍ତି ॥
କୃଷ୍ଣ ଭଜନ୍ତି ଏକମନେ । ନିର୍ମଳ ଧ୍ୟାନ ତତ୍ତ୍ୱଜ୍ଞାନେ ॥
ଗୁରୁଙ୍କୁ ଇଷ୍ଟଦେବ ଭାବେ । ମନେ ଚିନ୍ତନ୍ତି ଜ୍ଞାନଲାଭେ ॥୩୭
ଜୀବ ଅଜ୍ଞାନଭାବ ଦେଖି । ଦୁଃଖକୁ ମଣେ ମହାସୁଖି ॥
ଯେସନେ ସ୍ୱପ୍ନ ମନୋରଥେ । ଭ୍ରମଇ ନିଦ୍ରାର ଆୟତ୍ତେ ॥
ମଣଇ ସତ୍ୟପ୍ରାୟ ତାହା । ମନ ବିଳାସ ମାତ୍ର ମାୟା ॥
ଏ ମନ କୃଷ୍ଣପାଦେ ଦେଲେ । ଏ ମାୟା ନ ଲାଗଇ ଭଲେ ॥୩୮
ଦୁର୍ଗମ ପଥ ଏ ଭଜନ । ଭୟେ ଭାଜିଲେ ଯୋଗୀଜନ ॥
ଏବେ କହିବା ଶୁଣ ରାୟେ । ସୁଗମ ଭଜନ ଉପାୟେ ॥
କୃଷ୍ଣର ଜନ୍ମକର୍ମ ଯେତେ । ନାନା ଚରିତ ଏ ଜଗତେ ॥
ଶ୍ରବଣ ସ୍ମରଣ କୀର୍ତ୍ତନ । ତାରଇ ଅଶେଷ ଭୁବନ ॥
ସେ ନାମଭାବେ ଚିତ୍ତ ଜଡ଼ି । ହୃଦରୁ ଲାଜ ଭୟ ଏଡ଼ି ॥
କାମାଦି ସଙ୍ଗ ଦୂର କରି । ଏ ଘୋର ସଂସାରେ ବିହରି ॥୩୯
ଉଚ୍ଚେ ଡାକିବ କୃଷ୍ଣ ନାମ । ଶୁଭିବ ସକଳ ଶ୍ରବଣ ॥
ଆନନ୍ଦେ ଟେକି ବେନି କର । କଣ୍ଠ ଗର୍ଜନ ଉଚ୍ଚସ୍ୱର ॥
ଉନ୍ମତ୍ତ ପ୍ରାୟ ନୃତ୍ୟ କରି । ଲୋକବେଭାର ପରିହରି ॥୪୦
ଗଗନ ସମୀରଣ ଜ୍ୟୋତି । ଯେ ଅବା ସଲିଳ ଧରିତ୍ରୀ ॥
ନଦୀ ସାଗର ତରୁଗଣ । ପର୍ବତ ସ୍ଥାବର ଜଙ୍ଗମ ॥
ଜନ୍ତୁଙ୍କ ବାହ୍ୟ ଅଭ୍ୟନ୍ତର । ଏ ସର୍ବ କୃଷ୍ଣର ଶରୀର ॥
ନିଶ୍ଚୟ ଜାଣି ଏକଚିତ୍ତେ । ପ୍ରଣାମ କରୁଥିବ ନିତ୍ୟେ ॥
ଅମୃତ ବିନୟ ବଚନ । କହି ତୋଷିବ ପ୍ରାଣୀ ମନ ॥
ଏ ଭାବେ ଲଭି କୃଷ୍ଣପାଦ । ହରିବ ବିଷୟା ବିଷାଦ ॥୪୧
ଶୁଣ ରାଜନ ପୁଣ୍ୟଦେହା । ତୁ ଅବା ପଗ୍ଭରିବୁ ଏହା ॥

ଯୋଗୀଏ ଯୋଗ ତପବଳେ । ଭ୍ରମନ୍ତି ଭାରତ ମଣ୍ଡଳେ ॥
ନିର୍ମଳ ଜ୍ଞାନେ ହୃଦଗତେ । ଯାହା ଚିନ୍ତନ୍ତି ଏକଚିତ୍ତେ ॥
ଅନେକ ଜନ୍ମେ ଯାହା ସାଧି । ବହୁ ଦୁର୍ଲଭ ଯେଉଁ ସିଦ୍ଧି ॥
ଶ୍ରୀକୃଷ୍ଣ ନାମର କୀର୍ତ୍ତନେ । କେମନ୍ତେ ଲଭେ ଏକ ଜନ୍ମେ ॥
ଶୁଣ ହେ ରାଜା ମନ ଦେଇ । ଉତ୍ତମ ଶିଷ୍ୟେ ଏହା କହି ॥
ଯେ ଭକ୍ତିଯୋଗ ପ୍ରାଣୀଙ୍କର । ଶ୍ରବଣ କୀର୍ତ୍ତନ ଗୋଚର ॥
ଏଣୁ ସେ ତତ୍ତ୍ୱଜ୍ଞାନ ସ୍ଫୁରେ । ବିଷୟ ରସ ନ ସୁମରେ ॥
ପରମ ପ୍ରେମକୁ ଲଭଇ । ଏ ତିନି ଏକକାଳେ ହୋଇ ॥
ବଢ଼ଇ ଦିନେ ଦିନେ ଜ୍ଞାନ । ଜନ୍ତୁଙ୍କୁ ଭୋଜନ ଯେସନ ॥
ଅନ୍ନ ଭୋଜନେ ପ୍ରତିଗ୍ରାସ । କ୍ଷୁଧା ପିପାସା କରେ ନାଶ ॥
ତଦନ୍ତେ ତୁଷ୍ଟି ପୁଷ୍ଟି ଲଭେ । ସୁଖ ଉଦୟ ହୁଏ ତେବେ ॥
କୃଷ୍ଣ ଭଜନୁଁ ସେହିମତେ । ଭକ୍ତି ଲଭନ୍ତି ଭାଗବତେ[୧] ॥
ତହୁଁ ଜନ୍ମଇ ବଇରାଗ୍ୟ । ମାୟା ଜଡ଼ିତ ସୁଖ ତ୍ୟାଗ ॥
ତଦନ୍ତେ ହୋଏ ଦିବ୍ୟଜ୍ଞାନ । ଏ ଅନୁଭବ ଅଭ୍ୟାସିଣ ॥
ଆନନ୍ଦ ରସ ପାଇ ନିତି । ଚିତ୍ତେ ପ୍ରବେଶ ହୋଏ ଶାନ୍ତି ॥
ପରମ ଶାନ୍ତି ଭଜେ ଭଲେ । ତ୍ରିତୟ ତାପୁଁ ସେ ନିସ୍ତରେ ॥୪୨,୪୩
ଏମନ୍ତେ କବିର ବଚନ । ଜନକ ଶୁଣି ତୋଷମନ ॥
ସୁଖ ସମ୍ପଦେ କୃତକୃତ୍ୟ । ବୋଲଇ ବିପ୍ର ଜଗନ୍ନାଥ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଏକାଦଶସ୍କନ୍ଧେ ବସୁଦେବନାରଦସଂବାଦେ ଭଗବଦ୍ଭକ୍ତିଧର୍ମ ନିରୂପଣଂ ନାମ ଦ୍ୱିତୀୟୋଽଧ୍ୟାୟଃ ।



୧. ଭାଗବତେ—ଭକ୍ତଜନ ।

# ତୃତୀୟ ଅଧ୍ୟାୟ*

ଉତ୍ତମ ମଧ୍ୟମ ଅଧମ । ତ୍ରିବିଧ ଭକତ ଲକ୍ଷଣ ॥
ପୂର୍ବ ଅଧ୍ୟାୟ ଅବଶେଷ । ତୃତୀୟେ ହୋଇଛି ପ୍ରକାଶ ॥

ଏମନ୍ତେ ବିଦେହ ରାଜନ । ମନେ ବିଗ୍ଭରି ତତ୍ତ୍ୱଜ୍ଞାନ ॥
ଆନନ୍ଦେ ଶିରେ କର ଦେଇ । ବୋଲଇ ନିସ୍ତରିଲି ମୁହିଁ ॥(ଜ.)

*ବିଦେହ ଉବାଚ*

ତୁମ୍ଭେ ନିର୍ମଳ ଯୋଗୀଗଣ । କହିବା ଭକତ ଲକ୍ଷଣ ॥
କି ରୂପେ ଭ୍ରମନ୍ତି ଜଗତେ । କୃଷ୍ଣଭଜନ ଅନୁମତେ ॥
କିବା କହନ୍ତି ବାକ୍ୟସାର । କି ଧର୍ମ କରନ୍ତି ଆଗ୍ଭର ॥
ତାହାଙ୍କୁ ଜାଣିବା କେମନ୍ତେ । କହ ସୁଦୟା ଯେବେ ମୋତେ ॥୪୪

*ହରି ଉବାଚ*

ହରି ବୋଲନ୍ତି ତାହା ଶୁଣି । ଶୁଣ ବିଦେହ ନୃପମଣି ॥
କୃଷ୍ଣଭକତ ଏ ସଂସାରେ । ପ୍ରଚରେ ତ୍ରିବିଧ ପ୍ରକାରେ ॥
ଉତ୍ତମ ମଧ୍ୟମ ପ୍ରାକୃତ୧ । ଯାହାର ଲକ୍ଷଣ ଯେମନ୍ତ ॥
ତାହା କହିବା ଶୁଣ ଏବେ । ରାଜନ ପଗ୍ଭରିଲୁ ଯେବେ ॥
ସକଳ ଦେହେ ନାରାୟଣ । ବସନ୍ତି ଅନାଦି କାରଣ ॥
ସେ ନାରାୟଣ ଦେହଗତେ । ବସନ୍ତି ଭାବ ଅନୁମତେ ॥
ଏ ଭାବେ ଦୃଢ଼ ଯାର ମନ । ସେ ପ୍ରାଣୀ ଭକତ ଉତ୍ତମ ॥୪୫
ଈଶ୍ୱରଠାରେ ପ୍ରେମ କରେ । ମିତ୍ର ଭାବନା ସାଧୁଠାରେ ॥
କରୁଣା ଅଜ୍ଞାନ ଲୋକରେ । କରେ ଉପେକ୍ଷା ଶତ୍ରୁଠାରେ ॥
ସେ ଭକ୍ତ ମଧ୍ୟମ ଅଟଇ । ଯେଣୁ ସେ ଭେଦକୁ ଦେଖଇ ॥୪୬

---

୧. ପ୍ରାକୃତ—କନିଷ୍ଠ ବା ସାଧାରଣ ।

* ମୂଳ ସଂସ୍କୃତ ଅନୁସାରେ ଦ୍ୱିତୀୟ ଅଧ୍ୟାୟର ଅବଶିଷ୍ଟାଂଶ ।

ପ୍ରତିମାଠାରେ ଶ୍ରଦ୍ଧା ବହି । ହରିପୂଜାକୁ ଯେ କରଇ ॥
ନ ସେବେ ବିଷ୍ଣୁର ସେବକ । ଇତର ମଣେ ଅନ୍ୟ ଲୋକ ॥
ତାକୁ ପ୍ରାକୃତ ବୋଲି କହି । ତଥାପି ଭକ୍ତ ସେ ବୋଲାଇ ॥୪୭
ଇନ୍ଦ୍ରିୟ ଦ୍ୱାରେ ଅର୍ଥମାନ[୧] । ଗ୍ରହଣ କଲେହେଁ ଯେ ଜନ ॥
କାହାକୁ ଦ୍ୱେଷ ନ କରଇ । କିଛିହିଁ ହରଷ ନୁହଇ ॥
ସକଳ ବିଷ୍ଣୁମାୟା ମଣି । ଉତ୍ତମଭକ୍ତେ ତାକୁ ଗଣି ॥୪୮
ଦେହର ଜନ୍ମ ମୃତ୍ୟୁ ଦୁଇ । ସଂସାର ଧର୍ମ ଏ ବୋଲାଇ ॥
ଇନ୍ଦ୍ରିୟମାନଙ୍କର ଶ୍ରମ । ପ୍ରାଣର କ୍ଷୁଧା ତୃଷା ଧର୍ମ ॥
ମନର ଭୟ ବୁଦ୍ଧି ଧର୍ମ । ତୃଷ୍ଣା ଏଣେ ଯେ ନୋହି ଭ୍ରମ ॥
ହରିଙ୍କୁ ସ୍ମରଣ କରଇ । ଉତ୍ତମ ଭାଗବତ ସେହି ॥୪୯
ଯାହାର କାମ କର୍ମ ବେନି । ବାସନା ମିଶି ଏହୁ ତିନି ॥
ଚିତ୍ତରେ ନୁହଇ ସମ୍ଭବ । ଆଶ୍ରୟ ଏକା ବାସୁଦେବ ॥
ଉତ୍ତମ ଭକ୍ତ ସେ ବୋଲାଇ । ଶୁଣ ରାଜନ ମନଦେଇ ॥୫୦
ଜନ୍ମ କରମେ ଯାର ମନ । ନ ଘେନେ ଦେହେ ଅଭିମାନ ॥
ଜାତି ଆଶ୍ରମ ବର୍ଣ୍ଣ ଧର୍ମ । ଏ ଅହଙ୍କାରେ ନୋହେ ଭ୍ରମ ॥
ହରିର ପ୍ରିୟ ସେହୁ ପ୍ରାଣୀ । ଭକତ ମଧ୍ୟେ ପରିମାଣି ॥୫୧
ଯାହାର ସୁତ ବିତ୍ତ ଦେହେ । ପର ଆପଣା ବୁଦ୍ଧି ନୋହେ ॥
ସକଳ ଦେହେ ସମବୁଦ୍ଧି । ଉତ୍ତମ ଭକ୍ତ ସେ ପ୍ରସିଦ୍ଧି ॥୫୨
ସିଦ୍ଧ ଯୋଗୀନ୍ଦ୍ର ମୁନିଗଣ । ସେବନ୍ତି ଯେ ହରିଚରଣ ॥
ଭବ ବିରଞ୍ଚି ଯାର ପାଦେ । ଧ୍ୟାନେ ଚିନ୍ତନ୍ତି ଅପ୍ରମାଦେ ॥
ସେ ପ୍ରଭୁପାଦ ନିତ୍ୟେ ଚିନ୍ତି । ଲବ ନିମିଷ ନ ଛାଡ଼ନ୍ତି ॥
ଏ ତିନିଭୁବନ ସମ୍ପତ୍ତି । ଦେଲେହେଁ ତହୁଁ ନ ଚଳନ୍ତି ॥
ନୁହନ୍ତି ମାୟାରେ ମୋହିତ । ସେ ପ୍ରାଣୀ ମହାଭାଗ୍ୟବନ୍ତ ॥
ବିଷ୍ଣୁ ଭକତେ ସେ ପ୍ରଧାନ । ନିସ୍ତରେ ତାକୁ ଦେଖି ଜନ ॥
କେବେହେଁ ନୋହେ ଜ୍ଞାନଧ୍ୱଂସ । ସେ ପ୍ରାଣୀ ନାରାୟଣ ଅଂଶ ॥୫୩

୧. ଅର୍ଥମାନ—ବିଷୟମାନ ।

କୃଷ୍ଣର ପାଦ ନଖପନ୍ତି । ଚନ୍ଦ୍ରକିରଣ ପ୍ରାୟ ଜ୍ୟୋତି ॥
ସେ ଯାର ହୃଦରେ ପ୍ରକାଶେ । ଅଶେଷ ଘୋର ତମ ନାଶେ ॥୫୪
ଏଣୁ ଯେ ହୃଦେ ହରି ଭଜେ । ହରି ତା ହୃଦୟ ନ ତେଜେ ॥
ସ୍ନେହ ରଜ୍ଜୁରେ ତା ଚରଣ । ହୃଦରେ କରଇ ବନ୍ଧନ ॥
ଚିନ୍ତିଲେ ଚିତ୍ତେ କ୍ଷଣମାତ୍ର । ଯେ ହରେ ଅଶେଷ ଦୁରିତ ॥
ସେ ହରିପାଦ ହୃଦେ ଧରି । ଭକତ ହରି ବଶ କରି ॥
ଶୁଣ ବିଦେହ ନରପତି । ତ୍ରିବିଧ ବଇଷ୍ଣବ ଗତି ॥୫୫
ଏକାଦଶରେ ଭାଗବତ । କହିଲା ବିପ୍ର ଜଗନ୍ନାଥ ॥

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ଏକାଦଶସ୍କନ୍ଧେ ବସୁଦେବନାରଦସଂବାଦେ ତ୍ରିବିଧଭକ୍ତିଲକ୍ଷଣଂ
ନାମ ତୃତୀୟୋଽଧ୍ୟାୟଃ ।

□□□

# ଚତୁର୍ଥ ଅଧ୍ୟାୟ*

ଚତୁର୍ଥେ ମାୟାର ଲକ୍ଷଣ । ଯେମନ୍ତେ ତହୁଁ ପରିତ୍ରାଣ ॥
ବ୍ରହ୍ମ ସ୍ୱରୂପ ପୁଣି କର୍ମ । ଏ ଚାରି ବିଷୟ ବ୍ୟାଖ୍ୟାନ ॥

*ନିମି ଉବାଚ*

ବୋଲନ୍ତି ନିମି ପୁଣ୍ୟଦେହା । ଜଗନ୍ମୋହିନୀ ବିଷ୍ଣୁମାୟା ॥
କି ରୂପେ ସଂସାରେ ପ୍ରଚରେ । ପ୍ରାଣୀ ତା କେମନ୍ତେ ନିସ୍ତରେ ॥
ତାହା ଜାଣିତେ ମୋର ଇଚ୍ଛା । କହି ପୂରାଅ ମନବାଞ୍ଛା ॥ ୧
ଗୋବିନ୍ଦକଥା ସୁଧାପାନ । ଶୁଣି ସନ୍ତୋଷ ନୋହେ ମନ ॥
ବିଷ୍ଣୁମାୟାରେ ମୁହିଁ ଭ୍ରମି । ଜନ୍ମମରଣେ ପଥଶ୍ରମୀ ॥

* ମୂଳ ସଂସ୍କୃତ ଅନୁସାରେ ତୃତୀୟ ଅଧ୍ୟାୟ ।

ସେ ତାପେ ତାପିତ ମୋ ଦେହ । ଅମୃତପାନ ମୋତେ ଦିଅ ॥
ତାପ ଔଷଧ ତୁମ୍ଭ ବାକ୍ୟ । ତା ଶୁଣି ବୋଲେ ଅନ୍ତରିକ୍ଷ ॥ ୨

*ଅନ୍ତରିକ୍ଷ ଉବାଚ*

ଶୁଣ ରାଜନ ଶୁଦ୍ଧଚେତା । ଯେ ବିଷ୍ଣୁମାୟାର ବ୍ୟବସ୍ଥା ॥
କେ ଜାଣିପାରେ ତା ସଂସାରେ । ଶୁଣ କହିବା କିଛି ତୋରେ ॥
ଅନାଦି ପୁରୁଷ ଅନନ୍ତ । ଯେମନ୍ତେ ସର୍ଜିଲେ ଜଗତ ॥
ନିର୍ଲେପ ପ୍ରଭୁ ଭଗବାନ । ମାୟାର ପରମ କାରଣ ॥
ସଂସାର କ୍ରୀଡ଼ା ଇଚ୍ଛା କରି । ଭାବେ ଈଶ୍ୱର ରୂପ ଧରି ॥
ଈଶ୍ୱର ତେଜ ଅନ୍ତରାଳ । ତକ୍ଷଣେ ଉପୁଜିଲା କାଳ ॥
କାଳ ଶରୀରୁ ଆତ୍ମା ଜାତ । ସେ ନୋହେ ବିଷ୍ଣୁମାୟା ଗ୍ରସ୍ତ ॥
ଆତ୍ମା ସମୀପେ ଆଶ୍ରା କରି । ଜୀବ ଉପୁଜେ ମାୟା ଧରି ॥
ସେ ଜୀବ ଈଶ୍ୱର ଆୟତ୍ତ । ତ୍ରିଗୁଣ ମାୟାରେ ଯନ୍ତ୍ରିତ ॥
ସେ ମାୟା ଜୀବ ଦେହେ ଥାଇ । ପ୍ରକୃତି ରୂପେ ସମ୍ଭବଇ ॥
ସେ ମାୟା ପୁଣ ମହଦାଦି । ଜଗତ କାରଣ ପ୍ରସିଦ୍ଧି ॥
ସେ ମାୟା ଜୀବକୁ ଅନାଇ । ଈଶ୍ୱର ବଶେ କ୍ଷୋଭ ପାଇ ॥
ଯେସନେ ଜଳବିମ୍ବ ଜଳେ । ରୂପ ପ୍ରକାଶେ ବାୟୁବଳେ ॥
ସେ ରୂପେ ବିରାଟ ପୁରୁଷେ । ଈଶ୍ୱର ମାୟାରେ ପ୍ରବେଶ ॥
ତାହାର ମଧ୍ୟେ ଆତ୍ମା ରୂପେ । ଜୀବ ଭ୍ରମଇ ମାୟାକଳ୍ପେ ॥
ଜୀବ ବିଷୟଭୋଗ ଅର୍ଥେ । ନାନା ପ୍ରପଞ୍ଚ ଏ ଜଗତେ ॥
ଯେ ଉଚ୍ଚନୀଚ ଦେହଧାରୀ । ଏ ପଞ୍ଚ ମହାଭୂତେ କରି ॥
ସୃଷ୍ଟି କରଇ ଭଗବାନ । ସେ ମାୟା ପ୍ରକାଶେ ପ୍ରଧାନ ॥
ଜୀବର ଭୋଗାଭୋଗ ପାଇଁ । ଦଶଇନ୍ଦ୍ରିୟ ମନ ହୋଇ ॥
ପ୍ରବେଶ କରେ ତାର ମଧ୍ୟେ । ବିବିଧ ବିଷୟଙ୍କ ସଧେ ॥୩,୪
ବସଇ ଜୀବର ସମୀପେ । ନିର୍ଲେପ ନିରଞ୍ଜନ ରୂପେ ॥
ଜୀବକୁ ଭୁଞ୍ଜାଇ ଭୁଞ୍ଜଇ । ଅନ୍ତରେ ସାକ୍ଷୀରୂପେ ଥାଇ ॥

ଜୀବ ମଣଇ ମୋର ଦେହ । ତେଣୁ ପଶଇ ମାୟା ମୋହ ॥
କରେ କରାଏ ସର୍ବକର୍ମ । ଯେ ବେଦବିଧି ନିଜ ଧର୍ମ ॥
ସଙ୍ଗ ନୁହଇ କର୍ମଫଳେ । ନଳିନୀଦଳ ଯେହ୍ନେ ଜଳେ ॥
ଜୀବ ଈଶ୍ୱର ବଶ ହୋଇ । ଇନ୍ଦ୍ରିୟ ଅର୍ଥେ ଭୋଗ ପାଇଁ ॥
ଦେହରେ କରେ ଅହଙ୍କାର । ବୋଲଇ ସର୍ବକର୍ମ ମୋର ॥
ଏଣୁ ସେ କର୍ମର ଅଧୀନେ । ପଡ଼ଇ ଶରୀର ବନ୍ଧନେ ॥
ବୋଲଇ କରୁଅଛି ମୁହିଁ । ମୋ ତହୁଁ କର୍ତ୍ତା ଭିନ୍ନ ନାହିଁ ॥
ଦେହ ବନ୍ଧନେ ହୋଇ ଭ୍ରମ । କରଇ ନାନାମତେ କର୍ମ ॥
ଭବବନ୍ଧନେ ଏହି ମତେ । ଭ୍ରମଇ ସୁଖଦୁଃଖ ପଥେ ॥୫.୬
ଦେହ ବିଯୋଗେ କର୍ମ ଘେନି । ଜନ୍ମ ଲଭଇ ନାନା ଯୋନି ॥
ଅଶେଷ ଦେହେ କର୍ମ ଭୁଞ୍ଜେ । ଦୁର୍ଗମ ଦୁଃଖ ସୁଖ ବୁଝେ ॥
ଯାବତ ମାୟା ନୁହେଁ ହତ । ତାବତ ସୁଖଦୁଃଖେ ଗ୍ରସ୍ତ ॥
ଭବସଙ୍କଟେ ଏହି ମତେ । ଭ୍ରମଇ ଦୁଃଖସୁଖ ପଥେ ॥
ଏ ବିଷ୍ଣୁମାୟାର ବିଧାନ । ଶୁଣ ହେ ବିଦେହ ରାଜନ ॥ ୭
ଯେ ନିରାକାର ଆଦିକନ୍ଦ । ନିର୍ଗୁଣ ନିତ୍ୟ ସଦାନନ୍ଦ ॥
ଅନାଦିନିଧନ[୧] ସେ କାଳ । ସୃଷ୍ଟି ପ୍ରଳୟେ ଅଧିକାର ॥
ଏ ସୃଷ୍ଟି ତାର ଦେହଗତେ । ପ୍ରବେଶ ହେବା ଯେବେ ଚିନ୍ତେ ॥
ପ୍ରଳୟକାଳ ତେଜରାଶି । ବେଗେ ବ୍ରହ୍ମାଣ୍ଡ ମଧ୍ୟେ ପଶି ॥
ଶତେବରଷ ଦେବମତେ । ଜଳ ନ ବରଷେ ଜଗତେ ॥
ଦ୍ୱାଦଶସୂର୍ଯ୍ୟ ଶୂନ୍ୟେ ରହେ । ତିନିଭୁବନ ତେଜେ ଦହେ ॥୮,୯
ଅନନ୍ତ ମୁଖୁଁ ଅଗ୍ନି ଜାତ । ଦହଇ ପାତାଳ ସମସ୍ତ ॥
ପବନେ ଊର୍ଦ୍ଧ୍ୱେ ଶିଖା ଯାଇ । ସପତ ସ୍ୱର୍ଗ ତେଜେ ଦହି ॥୧୦
ଦହନ ଅନ୍ତେ ମେଘମାଳେ । ମିଳନ୍ତି ଗଗନମଣ୍ଡଳେ ॥
ସଂବର୍ତ୍ତ ନାମ ସେ ବହନ୍ତି । ଶତେ ବରଷ ବରଷନ୍ତି ॥

୧. ଅନାଦିନିଧନ—ଯାହାର ଆଦି ଅନ୍ତ ନାହିଁ ।

ଧାରା ବରଷା ଘୋର ବାୟେ । ପ୍ରମାଣ ହସ୍ତୀଶୁଣ୍ଡ ପ୍ରାୟେ ॥
ଜଳ ବହୁଳେ ସୃଷ୍ଟି ନାଶ । ତା ଦେଖି ବିରାଟ ପୁରୁଷ ॥
ତକ୍ଷଣେ ଛାଡ଼ି ତ୍ରିଭୁବନ । ବ୍ରହ୍ମଶରୀରେ ହୁଏ ଲୀନ ॥୧୧,୧୨
ଭୂତ ବିକାର ପଞ୍ଚଗୁଣ । ତ୍ରିଗୁଣ ଅହଙ୍କାର ପୁଣ ॥
ମହତ ଅଙ୍ଗେ ବିଶ୍ରାମଇ । ପ୍ରଳୟ ନ ପାରଇ ସହି ॥
ସେ ପୁଣି ମାୟା ଅବସାନେ । ପ୍ରକୃତି ତହିଁ ହୋଏ ଲୀନେ ॥
ପ୍ରକୃତି ପ୍ରଳୟର ତ୍ରାସେ । ମିଳେ ପରମଆତ୍ମା ପାଶେ ॥୧୩-୧୫
ଏ ମାୟା ଜଗତମୋହିନୀ । ଖେଳଇ ଜୀବ ଆତ୍ମା ଘେନି ॥
ଏ ବିଷ୍ଣୁମାୟା ସେ କାରଣ । ସୃଷ୍ଟି ପାଳନ ସଂହାରଣ ॥
କହିଲୁଁ ଯେ ମାୟା ତ୍ରିଗୁଣେ । ପୁଣି କି ଇଚ୍ଛା ତୋ ଶ୍ରବଣେ ॥
ଏମନ୍ତ ଅନ୍ତରିକ୍ଷ ବାଣୀ । ଜନକ ବୋଲେ ତାହା ଶୁଣି ॥୧୬

*ରାଜା ଉବାଚ*

ଦୁସ୍ତର ଈଶ୍ୱରର ମାୟା । ମୂର୍ଖ କେମନ୍ତେ ଜାଣେ ଏହା ॥
ଦେହାଦି ଅହଂକାର ଯେତେ । ଏ ମାୟା ନିସ୍ତରି କେମନ୍ତେ ॥
ହେ ମହାଋଷି ଦୟାଚିତ୍ତେ । ଉପାୟ ଥିଲେ କହ ମୋତେ ॥୧୭

*ପ୍ରବୁଦ୍ଧ ଉବାଚ*

ପ୍ରବୁଦ୍ଧ ବୋଲେ ଶୁଣ ରାୟେ । କହିବା ଯେମନ୍ତ ଉପାୟେ ॥
ଦୁଃଖ ବିନାଶି ସୁଖ ପାଇ । ଅଖଣ୍ଡ ଭୋଗ ଭୁଞ୍ଜିବଇଁ ॥
ଏମନ୍ତ ଚିନ୍ତି ଗୃହବାସେ । କର୍ମ କରଇ ଫଳ ଆଶେ ॥
କାମିନୀ ସଙ୍ଗେ କରେ ଭାବ । କେବଳ ଦୁଃଖମାତ୍ର ଲାଭ ॥
ଦେଖି ଏମନ୍ତ ବିପରୀତ । ଜାଣିବ ଏ ମାୟା ଜଗତ ॥୧୮
ମରଣ ପଥ ହେତୁ ଧନ । ତାର ଅର୍ଜନେ ନିତ୍ୟେ ମନ ॥
ଅନେକ ଶ୍ରମେ ତା ସଞ୍ଚଇ । ନିଶି ଦିବସେ ମନ ଦେଇ ॥
ନିରତେ ହୃଦୟ ନିର୍ଦ୍ଦୟ । ଏଣୁଟି ଧନ ଦୁଃଖମୟ ॥

ଦୁଃଖେ ସଞ୍ଚିତ ଯେତେ ଧନ । ସେ ନୋହେ ସୁଖେ ପ୍ରୟୋଜନ* ॥
ପଶୁ ତନୟ ଦାରା ଦାସ । ଏ ସର୍ବ ବିଜୁଳି ପ୍ରକାଶ ॥
ଏହାଙ୍କ ସଙ୍ଗେ ବନ୍ଦୀ ହୋଇ । ପୋଷଇ ଦୁଃଖଭାର ବହି ॥
ସେ ପୁଣି ଯାନ୍ତି ଯେଝା ପଥେ । ଶୋକ ସନ୍ତାପ ଦେଇ ଚିତ୍ତେ ॥
ଏହାଙ୍କ ସଙ୍ଗଫଳ ଏହି । ଏ ଭାବ ମୂଢ଼ ନ ଜାଣଇ ॥
ଉଭୟଲୋକ କରେ ନାଶ । ଏହି କାରଣେ ଗୃହବାସ ॥
ଭୁଞ୍ଜଇ ନିଜ କର୍ମଫଳ । ସେ ପୁଣି ନୁହଇ ନିଶ୍ଚଳ ॥
ଗୃହୀ ସ୍ୱଭାବେ ପୁଣ୍ୟ କରି । ସ୍ୱର୍ଗେ ବସଇ ଦେହ ଧରି ॥
କ୍ରମେ ସେ ଭୋଗ କ୍ଷୀଣ ହୋଇ । କର୍ମ ସରିଲେ ଭୋଗ କାହିଁ ॥
ପୁଣି ପଡ଼ଇ ଘୋର ତମେ । ଗତ ଆଗତ ପଥଶ୍ରମେ ॥୧୯,୨୦
ଏକଥା ବୁଝି ଗୁରୁପାଦେ । ଆଶ୍ରେ କରିବ ଅପ୍ରମାଦେ ॥
ଉତ୍ତମଗୁରୁ ଆଶ୍ରେ କରି । ତାଙ୍କ ବଚନ ମନେ ଧରି ॥
ଯେ ଗୁରୁ ଜାଣେ ବେଦ ତତ୍ତ୍ୱ । ନିର୍ଗୁଣ ଆତ୍ମଜ୍ଞାନେ ରତ ॥
ସମଦରଶୀ ନିଷ୍ଠାପର । ତପ କଷଣ ସହେ ଧୀର ॥
ନିରତେ ଥାଇ ପରହିତେ । ଈଶ୍ୱର ମାୟା ଜାଣି ଚିତ୍ତେ ॥
ଏମନ୍ତ ଗୁରୁପାଦେ ଭଜି । ହିଂସା କପଟ ଦୂରେ ତେଜି ॥
ସେବା କରିବ ଦୃଢ଼ଚିତ୍ତେ । ଶିକ୍ଷା ଯେ ଧର୍ମ ଭାଗବତେ ॥
ଏଣେ ପ୍ରସନ୍ନ ନାରାୟଣ । କରନ୍ତି ଆତ୍ମଜ୍ଞାନ ଦାନ ॥୨୧,୨୨
ପ୍ରଥମେ ବିଷୟ ଅସଙ୍ଗୀ[୧] । ପ୍ରେମ ପୁଲକ ତନୁ ଭଙ୍ଗୀ ॥
ମନ ନ ଥିବ ଅନ୍ୟସଙ୍ଗେ । ଚିତ୍ତ ନିବେଶି ସାଧୁସଙ୍ଗେ ॥

---

୧. ଅସଙ୍ଗୀ—ଅନାସକ୍ତ ।

* 'ଦୁଃଖେ ସଞ୍ଚିତ.....ପ୍ରୟୋଜନ' ଅର୍ଥାତ୍ ସଂସାରରେ ଅତି କ୍ଳେଶ ଓ କଷ୍ଟ ସହନପୂର୍ବକ ଉପାର୍ଜିତ ଓ ସଞ୍ଚିତ ଧନ ବିନାଶଶୀଳ ଅଟେ । ଅବିନାଶୀ ପରମସୁଖକୁ ପାଇବାରେ ଏ ଧନ କୌଣସି ପ୍ରକାର ସାହାଯ୍ୟ କରେ ନାହିଁ ।

ଉତ୍ତମ ସଙ୍ଗ ସେବା ନିତ୍ୟେ । ଜନ୍ତୁଙ୍କୁ ଦୟା ହୃଦଗତେ ॥
ସମସ୍ତ ଲୋକେ ମିତ୍ରଭାବ । ଏ ଆଦି ଯତନେ ସାଧିବ ॥୨୩
ଶଉଚ ତପ ଦୟା ଗୁଣ । ମଉନ ବେଦ ଅଧ୍ୟୟନ ॥
ଅହିଂସା ସୁଖଦୁଃଖେ ସମ । ଯେ ବ୍ରହ୍ମଚର୍ଯ୍ୟ ଆଦି କର୍ମ ॥
ଏ ଆଦି ଧର୍ମମାନ ଯେତେ । ଶିକ୍ଷା କରିବ ଯଥୋଚିତେ ॥୨୪
ଜଗତ ବିଷ୍ଣୁଭାବେ ଗ୍ରହିଁ । ଉଦାସ ଭାବେ ଦେହ ବହି ॥
ନିର୍ଲେପେ ସର୍ବ ସଙ୍ଗେ ଥିବ । ସ୍ୱଭାବ କର୍ମହିଁ କରିବ ॥
ଗୃହ ଆରମ୍ଭି ଗୃହୀ ମେଳେ । ନ ପଶି ରହିବ ନିରୋଳେ ॥
କର୍ମେ ଈଶ୍ୱର ଯାହା ଦେବ । ସନ୍ତୋଷେ ଉଦର ପୋଷିବ ॥୨୫
ପରମଶାସ୍ତ୍ର ଭାଗବତ । ଅଭ୍ୟାସ କରୁଥିବ ନିତ୍ୟ ॥
ଯେ ଅନ୍ୟଶାସ୍ତ୍ରେ ଗୁଣ ଦୋଷ । ମୁଖେ ନ କରିବ ପ୍ରକାଶ ॥
ମନ ବଚନ ଯେଣେ ଦମି । ସେ ଶାସ୍ତ୍ରେ ହେଉଥିବ ଶ୍ରମୀ ॥
ସତ୍ୟ କହିବ ନିତ୍ୟ ତୁଣ୍ଡେ । କେବେହେଁ ନ ଥିବ ପାଷଣ୍ଡେ ॥୨୬
କୃଷ୍ଣର ଜନ୍ମ କର୍ମ ଗୁଣ । ନିରତେ ପଠନ ଶ୍ରବଣ ॥
ଦେହ ସ୍ୱଭାବେ ଯେତେ କର୍ମ । ବେଦ ବଚନେ କୁଳଧର୍ମ ॥
ସକଳ କୃଷ୍ଣେ ସମର୍ପିବ । ନିଷ୍କାମ ଚିତ୍ତେ ନିତ୍ୟେ ଥିବ ॥୨୭
ସ୍ୱଧର୍ମ ତପ ଜପ ଦାନ । ଯେ ଆତ୍ମପ୍ରିୟ ବସ୍ତୁମାନ ॥
ଯେ ଦାରା ସୁତ ଗୃହ ପ୍ରାଣ । କୃଷ୍ଣେ କରିବ ସମର୍ପଣ ॥
ସର୍ବ ସମ୍ପଦ କୃଷ୍ଣେ ଦେଇ । ଉଦାସୀ ମତେ ଦେହ ବହି ॥୨୮
କୃଷ୍ଣ ସନ୍ତୋଷ ଭାବ ସଧେ । ଯତ୍ନ କରିବ ଦୃଢ଼ବନ୍ଧେ ॥
ସେବିବ ଜଙ୍ଗମ ସ୍ଥାବରେ । ପୁଣି ମହାତ୍ମା ସାଧୁନରେ ॥୨୯
ନିର୍ମଳ କୃଷ୍ଣର ଚରିତ । ଯେ ଯଶ ଜଗତେ ପବିତ୍ର ॥
ଆନନ୍ଦେ ଦୁଃଖେ ଛାଡ଼ି ମନେ । ଗୋଷ୍ଠୀ କରିବ ବିଷ୍ଣୁଜନେ ॥
କୃଷ୍ଣର କଥା ଅନ୍ୟୋଅନ୍ୟେ । ସ୍ମରି ସ୍ମରାଉଥିବ ମନେ ॥
ଦିନ ବଞ୍ଚିବ ଭକ୍ତି ସଧେ । ବିଷ୍ଣୁଭକତଙ୍କର ମଧ୍ୟେ ॥
କଣ୍ଠ କୁଣ୍ଠିତ ଜଡ଼ମତି । ପୁଲକ ଦେହ ରୋମପନ୍ତି ॥୩୦,୩୧

ଚିତ୍ତେ ଗୋବିନ୍ଦ ନାମ ସ୍ମରେ । ରୋଦନ କରେ ଉଚ୍ଚସ୍ୱରେ ॥
କ୍ଷଣେ ହସଇ କ୍ଷଣେ ନାଚେ । ଘନ ଗର୍ଜନ କରେ ଉଚ୍ଚେ ॥
କ୍ଷଣକେ ଗାଏ ଗୁଣଗାଥା । କହଇ ଅଲୌକିକ କଥା ॥
କ୍ଷଣକେ କୃଷ୍ଣଗୁଣ ଗୁଣି । ଚକ୍ଷୁ ବୁଜଇ ହୋଇ ତୁନି ॥୩୨
ଏ ଭାଗବତଧର୍ମ ଦୀକ୍ଷା । ଗୁରୁ ବଚନେ ପାଇ ଶିକ୍ଷା ॥
ନିଶ୍ଚଳ ଚିତ୍ତେ କୃଷ୍ଣପାଦେ । ଭକତି ଲଭେ ଅପ୍ରମାଦେ ॥
ସେ ନାରାୟଣ ପରାୟଣ । ଅବିଦ୍ୟା ହୁଅଇ ହରଣ ॥୩୩
ଏମନ୍ତ ଶୁଣି କୃଷ୍ଣରସ । ରାଜନ ହୋଇ ମନେ ତୋଷ ॥
ଆନନ୍ଦେ ଶିରେ କର ଦେଇ । ବୋଲଇ ମୁନିଗଣ ଗ୍ରହିଁ ॥(ଜ.)

*ରାଜା ଉବାଚ*

ଅନାଦି ପ୍ରଭୁ ନାରାୟଣ । ସଂସାର ପରମ କାରଣ ॥
ଏକ ଅନେକ ରୂପ ଧରି । ପୁରାଣ ପୁରୁଷ ମୁରାରି ॥
ତୁମ୍ଭେ ଯେ ମୋତେ ଦୟା ବହ । ତାଙ୍କ ସ୍ୱରୂପ ମୋତେ କହ ॥୩୪
ରାଜାର ଶୁଣି ଏ ବଚନ । ପିପ୍ପଳାୟନ ବୋଲେ ଶୁଣ ॥(ଜ.)

*ପିପ୍ପଳାୟନ ଉବାଚ*

ସେ ନାରାୟଣ ବର୍ଣ୍ଣି ଚିହ୍ନ । କହି ପାରିବ କେଉଁ ଜନ ॥
ଯା ମାୟା ସଂସାର କାରଣ । ସୃଷ୍ଟି ପାଳନ ସଂହାରଣ ॥
ସ୍ୱୟଂ ଅହେତୁ[୧] ଯେ ବୋଲାଇ । ସେ ନାରାୟଣ ଜାଣ ତୁହି ॥
ସ୍ୱପ୍ନ ଜାଗ୍ରତ ସୁଷୁପ୍ତିରେ । କି ଅବା ସମାଧି କାଳରେ ॥
ବାହ୍ୟ ଅନ୍ତରେ ଯେ ଅଛଇ । ତାହାକୁ ବ୍ରହ୍ମ ବୋଲି କହି ॥
ଦେହ ଇନ୍ଦ୍ରିୟ ପଞ୍ଚପ୍ରାଣ । ଯେ ଅବା ଅନ୍ତରକରଣ ॥
ଯାହାର ଆଶ୍ରୟେ ଜୀଅନ୍ତି । ଯେଣେ ବିଷୟେ ସଞ୍ଚରନ୍ତି ॥
ତାଙ୍କୁ ପରମଆତ୍ମା ଜାଣି । ଅପରେ ଶୁଣ ନୃପମଣି ॥୩୫

---

୧. ଅହେତୁ—କାରଣରହିତ ।

ବ୍ରହ୍ମାଣ୍ଡ କୋଟି କୋଟି ମାତ୍ରେ । ଘଟଣ କରେ ନିଜ ଗାତ୍ରେ ॥
ଭୂତ ଭବିଷ୍ୟ ବର୍ତ୍ତମାନେ । ଯାହାର ଶକ୍ତି ଅନୁମାନେ ॥
ସମ୍ପୂର୍ଣ୍ଣେ ସର୍ବଜୀବେ ବସେ । କାହାରି ସଙ୍ଗେ ସେ ନ ମିଶେ ॥
ମନ ବଚନ ଯାର ଦେହେ । ପଶି ନ ପାରନ୍ତି ଉପାୟେ ॥
ନୟନ ଯାହା ନ ଦେଖଇ । ଇନ୍ଦ୍ରିୟଗଣ ଭେଦ କାହିଁ ॥
ଜୀବର ମନ ବୁଦ୍ଧି ପ୍ରାଣ । ଯାହାର ତହୁଁ ହୋନ୍ତି ଜାଣ ॥
ସେ କାହୁଁ ପାରିବେ ତା ଚିନ୍ତି । ଅନେକ ଦୂରେ ସେ ରହନ୍ତି ॥
ଅଗ୍ନିକଣିକା ବାୟୁବଳେ । ଯେହ୍ନେ ଉଡ଼ନ୍ତି ଅନ୍ତରାଳେ ॥
ପବନେ ଦଶଦିଗେ ଯାନ୍ତି । ପୁଣି ଅନଳେ ନ ମିଶନ୍ତି ॥
କୋଟିବ୍ରହ୍ମାଣ୍ଡ ଏହି ମତେ । ଯାହାର ଦେହୁଁ ହୋନ୍ତି ନିତ୍ୟେ ॥
ଏମନ୍ତ ମହିମା ଯାହାର । ତାକୁ କେ କରିବ ଗୋଚର ॥
ଶବଦବ୍ରହ୍ମ ଥାଇ ଦୂରେ । ସେ ପୁଣି ବେଦ ଅନୁସାରେ ॥
ନାନା ପ୍ରପଞ୍ଚ ଏ ଜଗତେ । ବିଧି ନିଷେଧ ବେନି ପଥେ ॥
ଜଗତ ଭ୍ରମାଇ ଭ୍ରମଇ । ସେ ତାକୁ ତତ୍ତ୍ୱେ ନ ଜାଣଇ ॥୩୬
ପ୍ରଥମେ ଏକ ବ୍ରହ୍ମ ଥିଲା । ଦ୍ୱିତୀୟେ ପ୍ରକୃତି ହୋଇଲା ॥
ପ୍ରକୃତି ତହୁଁ ସୂତ୍ର ଜାତ । ତାହାକୁ ବୋଲି ମହତତ୍ତ୍ୱ ॥
ତାହାର ତହୁଁ ଅହଙ୍କାର । ଯେ ଜୀବ ଆତ୍ମାର ଆଧାର ॥
ଇନ୍ଦ୍ରିୟ ଅର୍ଥ ଦେବଗଣ । ଫଳେ ଏ ସର୍ବ ନାରାୟଣ ॥୩୭
ତୁ ଯେ ବୋଲିବୁ ବ୍ରହ୍ମ ଏକ । ସେ ପୁଣି ପ୍ରକାଶେ ଅନେକ ॥
ଏକଇ ଆତ୍ମା ନରହରି । ମାୟାରେ ନାନାଶକ୍ତି ଧରି ॥
ଖେଳଇ ନାନାରୂପ ଧରି । ସ୍ଥୂଳ ସୂକ୍ଷ୍ମରେ ମୋଦ ଭରି ॥
କ୍ରୀଡ଼ାର ଅନ୍ତେ ସର୍ବ ନାଶେ । କି ରୂପେ ରହେ ଅବଶେଷେ ॥
କିମ୍ବାଁ ନୁହଇ ବ୍ରହ୍ମବଧ । ଆଗମ ନିଗମେ ପ୍ରସିଦ୍ଧ ॥
ଏମନ୍ତ କରୁ ଯେବେ ମନେ । ଶୁଣ କହିବା ସାବଧାନେ ॥
ନିତ୍ୟ ନିର୍ଗୁଣ ଭଗବାନ । ସେ ନୋହେ ଆଦି ଅବସାନ ॥

ଯାହାର କ୍ଷୟ ବୃଦ୍ଧି ନାହିଁ । ଅଳପ ବହୁତ ନୁହଇ ॥
ଯେ ନିତ୍ୟେ ଏକରୂପେ ଥାଇ । ଆଧି ଉପାଧି ଯାର ନାହିଁ ॥
ନିତ୍ୟ ଆନନ୍ଦମୟ ସାକ୍ଷୀ । ଯାହାକୁ ଚିତ୍ତେ ମାତ୍ର ଲକ୍ଷି ॥
ମନର କଳ୍ପନା ଜଗତ । ଏଣୁ ସେ ଦିଶେ ନାନାମତ ॥୩୮
କୀଟ ପତଙ୍ଗ ତରୁ ତୃଣେ । ବସଇ ଶରୀର ପ୍ରମାଣେ ॥
ସମେ ବସଇ ସର୍ବ ଦେହେ । ସ୍ଥୂଳ ନୟନେ ଭେଦ ନୋହେ ॥
ଏ ରୂପେ ବ୍ରହ୍ମ ପରିମାଣି । ଯାହା ନୟନେ ଦେଖି ଶୁଣି ॥
ମନେ ଗୋଚର କରି ଯେତେ । ସତ୍ୟ ନୁହନ୍ତି ଏ ସମସ୍ତେ ॥
ଏଣୁ ଏ ଆତ୍ମା ନିର୍ବିକାର । ଉପାଧି ଗୁଣେ ସେ ବିକାର ॥
ଆଧି ଉପାଧି ଯେବେ ଯାଇ । ସେ ନିତ୍ୟେ ଏକରୂପ ହୋଇ ॥
ନିତ୍ୟ ଆନନ୍ଦମୟ ସାକ୍ଷୀ । ସୁଷୁପ୍ତି ବୋଧେ ମାତ୍ର ଲକ୍ଷି ॥୩୯
ଏମନ୍ତ ରୂପ ନାରାୟଣ । ତୁ ଅବା ବିପ୍ରରୁ ଏସନ ॥
ପୁଣି ସଂସାର କିମ୍ପା ହୋଇ । ମାୟା ସଂସ୍କାର ଯେଣୁ ଥାଇ ॥
ସେ ମାୟା ନାଶ ଯାଇ ଯେଣେ । ଶୁଣ କହିବା ଏକମନେ ॥
ସେ ପଦ୍ମନାଭ ପଦ୍ମପାଦ । ହରଇ ବିଷୟ ବିଷାଦ ॥
ସକଳ ଛାଡ଼ି ସେ ଚରଣ । ଯେ ଭଜେ ଏକତ୍ୱ କରିଣ ॥
ସେ ପାଦ ତାରେ ଦୟା କରେ । ଭକ୍ତି ଜନ୍ମଇ ତା ହୃଦରେ ॥
ଘୋର କଳ୍ମଷ ଚିତ୍ତୁଁ ନାଶେ । ନିର୍ମଳ ତତ୍ତ୍ୱ ପରକାଶେ ॥
ଦର୍ପଣେ ରବିବିମ୍ବ ଯେହ୍ନେ । ବ୍ରହ୍ମ ପ୍ରକାଶେ ତାର ମନେ ॥୪୦
ଏମନ୍ତ ମୁନି ମୁଖୁଁ ଶୁଣି । ହୃଦେ ସାନନ୍ଦ ନୃପମଣି ॥
ଜନକ ଶୋକ ଗଦଗଦେ । ଆନନ୍ଦେ ନମି ମୁନିପାଦେ ॥
ବୋଲଇ ଶିରେ ଦେଇ କର । କୋମଳ ବଚନ ଗଭୀର ॥(ଢ଼.)

*ରାଜା ଉବାଚ*

ଭୋ ମୁନି କହ କର୍ମଯୋଗ । ଯେଣେ ଖଣ୍ଡଇ ଭବରୋଗ ॥
ଯେ କର୍ମେ ସର୍ବକର୍ମ ନାଶେ । ପରମବ୍ରହ୍ମ ପରକାଶେ ॥

ଜୀବ ନିସ୍ତରେ ଯାହା କରି । ଅନ୍ତେ ଲଭଇ ନରହରି ॥
ସେ ଯୋଗ କହ ମୁନିଗଣ । ନମଇଁ ତୁମ୍ଭର ଚରଣ ॥୪୧
ଏ କଥା ମୁଁ ପିତା ସମୀପେ । ପୁଚ୍ଛିଲି ଚତୁର ସନକେ ॥
କିମ୍ବା ସେ ନ ଦେଲେ ଉତ୍ତର । ଏ କଥା କହ ମୁନିବର ॥
ଆବିରହୋତ୍ର ତାହା ଶୁଣି । ବୋଲନ୍ତି ଶୁଣ ନୃପମଣି ॥୪୨

*ଆବିର୍ହୋତ୍ର ଉବାଚ*

ଯେ କର୍ମ ବିକର୍ମ ଅକର୍ମ । ଏ ତିନି କହନ୍ତି ନିଗମ ॥
ଈଶ୍ୱର ବାକ୍ୟ ତିନିବେଦ । ବ୍ରହ୍ମାଶଙ୍କରେ ନୋହେ ଭେଦ ॥
ଏଣେ ମୋହିତ ସର୍ବଜନ । ନ ବୁଝି ବେଦର ବଚନ ॥
ତୁମ୍ଭର ବାଳଭାବ ଯେଣୁ । ସେ ମୁନି ନ କହିଲେ ତେଣୁ ॥୪୩
ପରୋକ୍ଷେ ଧର୍ମ ବେଦ କହେ । ପୁତ୍ରକୁ ଯେହ୍ନେ ବାପମାଏ ॥
ଔଷଧ କଟୁ ତିକ୍ତ ଆଣି । କହନ୍ତି ନାନା ଗ୍ଚଟୁବାଣୀ ॥
ମଧୁର ବସ୍ତୁ ଥୋଇ ତଳେ । ଲୋଭେ ଭୁଞ୍ଜାନ୍ତି ତାକୁ ବଳେ ॥
ତେଣେ ହରଇ ତାର ରୋଗ । ଆନନ୍ଦେ କରେ ସୁଖଭୋଗ ॥
ବେଦ ବଚନ ଏହିମତେ । କରାନ୍ତି କର୍ମ ମୋକ୍ଷ ଅର୍ଥେ ॥
କହନ୍ତି ନାନା ମତେ ବାଣୀ । କର୍ମର ଫଳ ପରିମାଣି ॥
ସେ ଫଳଲୋଭେ କରେ କର୍ମ । କର୍ମେ ଖଣ୍ଡଇ ତାର ଭ୍ରମ ॥
ଏହାକୁ କର୍ମ ବୋଲି ଜାଣ । ଏ ଧର୍ମ ନିଗମ ପ୍ରମାଣ ॥୪୪
ଅଜିତଇନ୍ଦ୍ରିୟ ଯେ ପ୍ରାଣୀ । ସେ ନ କରନ୍ତି ବେଦବାଣୀ ॥
କରନ୍ତି ମୂର୍ଖଙ୍କର ରୀତି । ବିକର୍ମେ ଜନ୍ମ ମୃତ୍ୟୁ ପାନ୍ତି ॥
ଏହା ବିକର୍ମ ବୋଲି ଜାଣି । ଅକର୍ମ ଶୁଣ ନୃପମଣି ॥
ନାନାପ୍ରକାରେ ଧର୍ମ ଶୁଣି । ବେଦ ବଚନ ନ ପ୍ରମାଣି ॥
ଭେଦ କରନ୍ତି ବେଦପଥେ । ପାଷଣ୍ଡଗୁରୁ ବାକ୍ୟମତେ ॥
ଉଭୟଲୋକ ତାଙ୍କ ନାହିଁ । ନିରାଶେ ଥାନ୍ତି ଦୁଃଖ ସହି ॥
ଅକର୍ମ ମତ ଏ ବିଗ୍ରହ । ଏବେ ହୋ ଶୁଣ ନୃପବର ॥୪୫

ଯେ ଧର୍ମ କହେ ବେଦମତେ । ଆନନ୍ଦେ ଧରି ତାହା ଚିତ୍ତେ ॥
କର୍ମେ ସନ୍ଧ୍ୟାଦି କର୍ମଫଳ । ଯେ ଭାବେ ହୃଦୟ ନିର୍ମଳ ॥
ସେ ଫଳ କୃଷ୍ଣପାଦେ ଦେଇ । ଚିତ୍ତେ ଭକତିଭାବ ବହି ॥
ତାହାଙ୍କୁ ବୋଲି ମହାମତି । ଦୁର୍ଲଭ ମୁକ୍ତି ସେ ଲଭନ୍ତି ॥
ଏ ବେଦ ଈଶ୍ୱରର ବାଣୀ । ବ୍ରହ୍ମାର ବଚନେ ପ୍ରମାଣି ॥
ବେଦେ କହନ୍ତି ଫଳଶ୍ରୁତି । ରୋଚନ ଅର୍ଥେ ମୂଳ ମୁକ୍ତି ॥୪୬
ଏଣୁ ଏ ବେଦମାର୍ଗେ ତରି । ଏକାନ୍ତେ ବିଷ୍ଣୁ ଆଶ୍ରା କରି ॥
ଗୁରୁ ବଚନ ପରିମାଣେ । ବିଷ୍ଣୁଭକତି ତୀକ୍ଷ୍ଣବାଣେ ॥
ଏଣେ ଯେ ମାୟାଜାଲ ଛେଦେ । ଚିତ୍ତୁ ସଂଶୟଗ୍ରନ୍ଥି ଭେଦେ ॥
ନିର୍ଭୟେ ସଂସାରେ ଭ୍ରମଇ । ବିଷ୍ଣୁମାୟାରୁ ସେ ତରଇ ॥୪୭
ଏବେ ହୋ ଶୁଣ ନରନାଥ । ଭକ୍ତିଲକ୍ଷଣ ବିଧିମତ ॥
ଗୁରୁବଚନ ଧରି ଶିରେ । ଈଶ୍ୱରରୂପ ଅନୁସାରେ ॥
ପ୍ରତିମା କରି ନାନାମତେ । ଯେ ବିଧିବିଧାନ ଉକତେ ॥
ଦାରୁ ପାଷାଣ ଧାତୁମୟୀ । ଲେପ ଲିଖନ ଯେତେ ହୋଇ ॥
ଏ ଆଦି ଦୀକ୍ଷା ଅନୁମାନେ । ଆଗମ ନିଗମ ବିଧାନେ ॥
ଯେ ରୂପ ଦେଖି ରହେ ମନ । ଭାବେ ପୂଜିବ ଶୁଦ୍ଧମନ ॥୪୮
ଏମନ୍ତ ପ୍ରତିମା କରାଇ । ଉତ୍ତମ ଶୁଭ ସ୍ଥାନେ ଥୋଇ ॥
ନିର୍ମଳଜଳ ନଦୀକୂଳେ । ନିରୁପଦ୍ରବ ଭୂମିସ୍ଥଳେ ॥
ନିର୍ମଳ କଳ୍ପିତ ଆସନ । କୁଶ ବା ପଟ୍ଟବସ୍ତ୍ର ଚର୍ମ ॥
ଏ ଆଦି ନିଗମ ବଚନେ । ଯେବା ମିଳିବ ବର୍ତ୍ତମାନେ ॥
ସ୍ଥାପି ପ୍ରତିମା ଅଗ୍ରସ୍ଥାନେ । ବସିବ ହୋଇ ଶୁଦ୍ଧମନେ ॥
ପ୍ରଥମେ ପବନ ନିରୋଧି । ଯେ ବିଧିମତେ ଭୂତଶୁଦ୍ଧି ॥
ପଞ୍ଚାଶବର୍ଣ୍ଣେ ଦେହନ୍ୟାସ । ଗୁରୁର ବଚନ ଅଭ୍ୟାସ ॥
ବାମ ପାର୍ଶ୍ୱେ ଗୁରୁଧ୍ୟାୟି । ଦକ୍ଷିଣେ ଗଣେଶ ବସାଇ ॥
ପୂର୍ବେ ଦୁର୍ଗାଙ୍କୁ ନମସ୍କାର । ଅଧୋର୍ଦ୍ଧ୍ୱେ ବ୍ରହ୍ମା ମହୀଧର ॥

ପୃଷ୍ଠରେ କ୍ଷେତ୍ରପାଳ ଅନ୍ତେ । ଦୂର୍ବା ଅକ୍ଷତ ଘେନି ହସ୍ତେ ॥
କରିବ ଦଶଦିଗ ରକ୍ଷା । ଦିଗ ବନ୍ଧନ ମନ୍ତ୍ରଦୀକ୍ଷା ॥୪୯
ପୂଜାର ଉପହାର ଦ୍ରବ୍ୟ । ଯେବା ମିଳିବ ଯଥାଲାଭ ॥
ପ୍ରଥମେ ଜଳ ଅର୍ଘ୍ୟ କରି । ଶଙ୍ଖେ ଅକ୍ଷତ ପୁଷ୍ପ ଭରି ॥
ଅଙ୍ଗ ମେଦିନୀ ଦ୍ରବ୍ୟମାନ । ସେ ଜଳେ କରିବ ପ୍ରୋକ୍ଷଣ ॥
ଆଧାର ଶକ୍ତି ଆଦି ଧ୍ୟାନେ । ପୂଜିବ ନିଶ୍ଚଳ ଆସନେ ॥୫୦
ହୃଦୟ ପଦ୍ମ ଅଧିଷ୍ଠାନେ । ପୁଷ୍ପେ ପୂଜିବ ମନ୍ତ୍ରଧ୍ୟାନେ ॥
ଧର୍ମାଦି ଚତୁର ଚରଣ । ପାଶେ ଅଧର୍ମ ଗାତ୍ରିଗଣ ॥
ମଧ୍ୟେ କମଳଦଳ ଯେତେ । କର୍ଣ୍ଣିକା କେଶର ସହିତେ ॥
ସ୍ୱମନ୍ତ୍ରେ ରବି ସୋମାନଳ । ପୂଜିବ ତୃତୀୟ ମଣ୍ଡଳ ॥
ସତ୍ତ୍ୱାଦି ଗୁଣେ ନ୍ୟାସ କରି । ଭାବେ ପୂଜିବ ଆତ୍ମା ଗାତ୍ରି ॥
ଚତୁର ଆତ୍ମା ଶକ୍ତି ନବ । ପୂର୍ବାଦି ଦିଗେ ତା ପୂଜିବ ॥
କେଶରେ ମୂଳମନ୍ତ୍ର ସ୍ମରି । ଧ୍ୟାନେ ପୂଜିବ ମୁଦ୍ରା ଧରି ॥
ପ୍ରତିମା ଦେହେ ନିଜ ଅଙ୍ଗେ । ନ୍ୟାସ କରିବ ମନ୍ତ୍ରଭାଗେ ॥
ହୃଦୟ ଆଦି ନ୍ୟାସ କରି । ଧ୍ୟାନେ ନିରୋପି ନରହରି ॥
ପାଦ୍ୟାର୍ଘ୍ୟ ଆଚମନ ଆଦି । ସ୍ନାନ ଭୂଷଣ ବାସ ବିଧି ॥
ଧୂପ ଦୀପ ପୁଷ୍ପ ଚନ୍ଦନ । ଭୋଜନ ଦ୍ରବ୍ୟ ସମର୍ପିଣ ॥
ଅଙ୍ଗ ଉପାଙ୍ଗ ଆଦି ଯେତେ । ପୂଜିବ ପାରିଷଦ ମତେ ॥
ବସ୍ତ୍ର ଅକ୍ଷତ* ଆଦି ଯେତେ । ମନ୍ତ୍ରେ ସମର୍ପି ଶୁଦ୍ଧଚିତ୍ତେ ॥
ଏମନ୍ତେ ପୂଜି ନରହରି । ବହୁତ ଦଣ୍ଡବତ କରି ॥
କୃଷ୍ଣଙ୍କୁ ଈଶ୍ୱର ପ୍ରତ୍ୟକ୍ଷେ । ମଣି ନମିବ ପୁଣ ପକ୍ଷେ ॥୫୧-୫୩
ଧ୍ୟାନେ କୃଷ୍ଣଙ୍କୁ ହୃଦେ ଧରି । ମନ୍ତ୍ର ହୃଦୟପଦ୍ମେ ଭରି ॥
ଏମନ୍ତେ ପୂଜା ନିତ୍ୟ କରି । ଶେଷ ନିର୍ମାଲ୍ୟ ଶିରେ ଧରି ॥୫୪

* ବିଷ୍ଣୁଙ୍କ ପୂଜାରେ ଅକ୍ଷତକୁ କେବଳ କପାଳରେ ତିଳକ କରିବାରେ ବ୍ୟବହାର କରାଯାଏ, ଅର୍ଚ୍ଚନାରେ ଅକ୍ଷତ ବ୍ୟବହାର କରାଯାଏ ନାହିଁ— 'ନାକ୍ଷତୈରର୍ଚ୍ଚୟେଦ୍ ବିଷ୍ଣୁଂ ନ କେତକ୍ୟା ମହେଶ୍ୱରମ୍' ।

ପ୍ରତିମା ଯେବେ ନ ପାଇବ । ଶୁଣ କହିବା ପୂଜା ଭାବ ॥
ରବି ଅନଳେ କିବା ଜଳେ । ଅଥବା ହୃଦୟ କମଳେ ॥
ହରିଙ୍କି ପୂଜି ଏତେ ମତ । ଗୃହେ ଯେ ଅତିଥି ଆଗତ ॥
ତାହାଙ୍କୁ ବିଷ୍ଣୁଭାବେ ମାନି । ପୂଜିବ ଦେଇ ଅନ୍ନପାଣି ॥
ଏମନ୍ତେ ବିଷ୍ଣୁପୂଜା କରି । ଏ ଭବଜଳୁଁ ଯାନ୍ତି ତରି ॥
କୃଷ୍ଣର ଭାବେ ଦୃଢ଼ବୁଦ୍ଧି । କରି ଲଭନ୍ତି ସର୍ବସିଦ୍ଧି ॥
ଏଭାବେ ଈଶ୍ୱରର ବାଣୀ । ଯେ ଏହା ଏକାଦଶେ ଶୁଣି ॥
କୃଷ୍ଣେ କରନ୍ତି ଦୃଢ଼ଚିତ୍ତ । ନୁହନ୍ତି ମାୟାରେ ମୋହିତ ॥୫୫
ଖଣ୍ଡଇ ଭବଭୟ ତ୍ରାସ । କହଇ ଜଗନ୍ନାଥ ଦାସ ॥

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଏକାଦଶସ୍କନ୍ଧେ କର୍ମଯୋଗକଥନେ ପୂଜାବିଧିବର୍ଣ୍ଣନଂ ନାମ ଚତୁର୍ଥୋଽଧ୍ୟାୟଃ ।

❐❐❐

## ପଞ୍ଚମ ଅଧ୍ୟାୟ*

ପଞ୍ଚମେ ଦ୍ରୁମିଳ ଉତ୍ତର । ବିଷ୍ଣୁଙ୍କ ନାମ ଅବତାର ॥

ଏମନ୍ତେ କର୍ମଯୋଗ ଶୁଣି । ରାଜା ବୋଇଲେ ମନେ ଗୁଣି ॥(ଜ.)

ବିଦେହ ଉବାଚ

ନିର୍ଗୁଣ ନିରଞ୍ଜନ ହରି । ଧରଣୀ ତଳେ ଦେହ ଧରି ॥
ଯେ କର୍ମ କଲେ ତ୍ରିଭୁବନେ । ଯେ ଅବତାର ଯେଉଁ ସ୍ଥାନେ ॥
ସେ କଥା କହ ତପୋଧନ । ସନ୍ତୋଷ ନୋହେ ମୋର ମନ ॥ ୧
ଏମନ୍ତ ରାଜା ସାଧୁକଥା । ଶୁଣି ଦ୍ରୁମିଳ ଶୁଦ୍ଧଚେତା ॥
ରୋମପୁଳକ କରି ତନୁ । ଅଶ୍ରୁ ଗଳଇ ତା ନୟନୁ ॥

* ମୂଳ ସଂସ୍କୃତ ଅନୁସାରେ ଚତୁର୍ଥ ଅଧ୍ୟାୟ ।

ବୋଲଇ ଶୁଣ ନରନାଥ । ଅଶେଷ କୃଷ୍ଣର ଚରିତ ॥
କେ ତାହା ଅନୁମାନ କରି । ମୁଖେ କହିବ ଚିତ୍ତେ ଧରି ॥
ବାଳକ ସମ ବୁଦ୍ଧିହୀନ । ଜଗତେ ଅଛି କେବା ଜନ ॥
ପଣ୍ଡିତପଣେ ଗର୍ବ କରି । ହୃଦରେ ଅହଙ୍କାର ଭରି ॥
କଥନେ କୃଷ୍ଣଗୁଣ ବଳେ । କେ ଅଛି ଭୁବନମଣ୍ଡଳେ ॥
ମୃତ୍ତିକା ଖଣ୍ଡ ଚୂର୍ଣ୍ଣ କରି । ଯେ ଗଣିପାରେ ଧୂଳି ଧରି ॥
ସେ କାହିଁ କୃଷ୍ଣର ମହିମା । ମୁଖେ କହିବ ଗୁଣସୀମା ॥ ୨
ବ୍ରହ୍ମାଣ୍ଡ ରଚି ପଞ୍ଚଭୂତେ । ଅଂଶେ ତହିଁର ମଧ୍ୟଗତେ ॥
ଆଦି ଅନନ୍ତ ଦେବ ହରି । ପଣେ ପୁରୁଷ ନାମ ଧରି ॥ ୩
ତିନିଭୁବନ ଦେହେ ଧରେ । ସୃଷ୍ଟି ପାଳନ ଅନ୍ତ କରେ ॥
ଇନ୍ଦ୍ରିୟମାନଙ୍କର ଅର୍ଥ । ଯାହାର ଜ୍ଞାନେ ଆତଯାତ ॥
ଦେହ ଇନ୍ଦ୍ରିୟ କ୍ରିୟା ଶକ୍ତି । ଯାର ନିଃଶ୍ୱାସୁ ପ୍ରକାଶନ୍ତି ॥ ୪
ପ୍ରଥମେ ରଜୋଗୁଣ ଧରି । ବିଧାତା ରୂପେ ସୃଷ୍ଟି କରି ॥
ପାଳଇ ଯଜ୍ଞପତି ରୂପେ । ଦ୍ୱିଜଙ୍କ ଧର୍ମରକ୍ଷା କଳ୍ପେ ॥
ଈଶ୍ୱର ରୂପେ ତମୋଗୁଣେ । କରଇ ସୃଷ୍ଟି ସଂହାରଣେ ॥
ଏ ଗୁଣମୟ ନିରାକାର । ଏଣୁ ତୃତୀୟ[୧] ରୂପ ତାର ॥ ୫
ପୂର୍ବେ ଯେ ଦକ୍ଷପ୍ରଜାପତି । ତାର ଦୁହିତା ନାମ ମୂର୍ତ୍ତି ॥
ଧର୍ମର ପତ୍ନୀ ସେ ଯୁକତେ । ବିଷ୍ଣୁ ତାହାର ଗର୍ଭଗତେ ॥
ଅରୂପ ହୋଇ ରୂପରାଶି । ସେ ନର ନାରାୟଣ ଋଷି ॥
ତପ ଆରାଧି ଘୋର ବନେ । ବସିଲେ ବଦରିକାଶ୍ରମେ ॥
କଳ୍ପେ ପର୍ଯ୍ୟନ୍ତ ତପ କରି । ମନ ପବନ ହୃଦେ ଧରି ॥ ୬
ଦେଖି ତାହାଙ୍କ ତପ ଘୋର । ସ୍ୱର୍ଗେ କମ୍ପଇ ସୁନାସୀର ॥
ଭୟେ ଚିନ୍ତଇ ପୁରନ୍ଦର । ନିଶ୍ଚେ ଘେନିବ ମୋର ପୁର ॥
ମୋ ପଦ ଘେନିବ ଏ ବଳେ । ଏମନ୍ତ ଭାଳି ସେ ବିକଳେ ॥

୧. ତୃତୀୟ—ତିନି ।

ବିଗ୍ରହି ଦେବଙ୍କ ସଙ୍ଗତେ । ତପ ସମାଧି ଭଗ୍ନ ଅର୍ଥେ ॥
ଉପାୟ କଲା ଶଚୀପତି । ଯେଣୁ ସ୍ୱଭାବେ ମନ୍ଦମତି ॥
କନ୍ଦର୍ପେ ଡାଇ ପୁରନ୍ଦର । ବୋଇଲା ଚଳ ମର୍ତ୍ତ୍ୟପୁର ॥
ବସନ୍ତ ପବନକୁ ଗ୍ରହି । ବୋଲଇ ସଙ୍ଗେ ଚଳ ତୁହି ॥
ତୁ ତ ସ୍ୱଭାବେ ଶୀତ ମନ୍ଦ । ଘେନିଣ ଅପସରା ବୃନ୍ଦ ॥
କୋକିଳ ଧ୍ୱନି ଗୀତସ୍ୱନେ । ନୃତ୍ୟ କରିବ ବିଦ୍ୟମାନେ ॥
ନୟନ ବାଣେ ଚିତ୍ତ ହରି । ତପ ସମାଧି ଭଗ୍ନ କରି ॥
ବେଗେ ଆସିବ ସ୍ୱର୍ଗସ୍ଥାନେ । ଏମନ୍ତ ଇନ୍ଦ୍ରର ବଚନେ ॥
ମଧୁର ଧ୍ୱନି ଗୀତଗାନେ । ମିଳିଲେ ବଦରିକା ସ୍ଥାନେ ॥
ବସନ୍ତେ ପୁଷ୍ପିତ କାନନ । ଦେଖନ୍ତେ ହରେ ପ୍ରାଣୀମନ ॥
କନ୍ଦର୍ପ ନାରାୟଣେ ଗ୍ରହି । ପୁଷ୍ପକୋଦଣ୍ଡେ ଗୁଣ ଦେଇ ॥
ପଞ୍ଚନାରାଚ ଅତି ତମେ । ବିନ୍ଧିଲା ବିଷ୍ଣୁର ମରମେ ॥
ଲଳିତ ବହଇ ବସନ୍ତ । ଗଭୀର ନାଦେ ଶୁଭେ ଗୀତ ॥
ଏ ରୂପେ ନାନା ବିଘ୍ନ ଚିନ୍ତି । ବିଷ୍ଣୁମହିମା ନ ଜାଣନ୍ତି ॥ ୭
ଦେଖି ତାହାଙ୍କର ଉପାୟେ । ଧ୍ୟାନେ ଜାଣିଲେ ଦେବରାୟେ ॥
ଇନ୍ଦ୍ର ଯେ ଭୟ କରି ଚିତ୍ତେ । ମୋର ସମାଧି ଭଗ୍ନ ଅର୍ଥେ ॥
ଏହାଙ୍କୁ ପେଷି ଉଦବେଗେ । ମନ ବିଷାଦେ ଅଛି ସ୍ୱର୍ଗେ ॥
ଏତେ ବିଗ୍ରହି ନାରାୟଣ । ବୋଇଲେ ଇନ୍ଦ୍ରଗଣେ ଶୁଣ ॥
ରଙ୍ଗ ଅଧରେ ମନ୍ଦେ ହସି । ବୋଲନ୍ତି ବଚନ ଆଶ୍ୱାସି ॥
ଭୟ ନ କର ତୁମ୍ଭେ ଚିତ୍ତେ । ଉପାୟ କର ନାନାମତେ ॥
ମୋହର ତପ ଭଗ୍ନ କର । ଇନ୍ଦ୍ରକୁ ଯେବେ ତୁମ୍ଭେ ଡର ॥
ଆଜ ତୁମ୍ଭର ଆଗମନ । ଧନ୍ୟ ମଙ୍ଗଳ ମୋର ସ୍ଥାନ ॥
ଏମନ୍ତେ କହି ଭଗବାନ । ତକ୍ଷଣେ ହୋଇଲେ ମଉନ ॥ ୮
ତା ଶୁଣି ଇନ୍ଦ୍ରଗଣେ ଡରେ । ନମିଲେ ବିଷ୍ଣୁର ପୟରେ ॥
ଭୟେ କମ୍ପନ୍ତି ମୁଖ ଗ୍ରହି । ବୋଲନ୍ତି ଶୁଣ ଭାବଗ୍ରାହୀ ॥

ଏ ଯେ ବିଚିତ୍ର ନୋହେ ତୋର । ତୁ ଧର୍ମଦେବ ନିରାକାର ॥
ନିର୍ଗୁଣ ନିର୍ବିକଳ୍ପ ଦେହୀ । ପ୍ରକୃତି ତୋତେ ନ ଜାଣଇ ॥
ତୋହର ଅଭୟ ଚରଣେ । ସେବନ୍ତି ଆତ୍ମଜ୍ଞାନୀ ଜନେ ॥
ଯୋଗୀଙ୍କ ହୃଦୟ କମଳେ । ତୋହର ଆସନ ନିଶ୍ଚଳେ ॥
ତୋର ଚରଣେ ଯେ ସେବନ୍ତି । ଦେବେ ତାହାଙ୍କୁ ବିଘ୍ନ ଚିନ୍ତି ॥
ବୋଲନ୍ତି ଯଜ୍ଞ ତପ ତ୍ୟାଗୀ । ଏ କିମ୍ପା ହେବେ ମୋକ୍ଷଭାଗୀ ॥
ଏଣୁ ଡରନ୍ତି ଦେବଗଣ । କରନ୍ତି ବିଘ୍ନ ଆଚରଣ ॥
ଯେ ଅନ୍ୟ ଦେବତା ଭଜନ୍ତି । ସେ ତାଙ୍କ ବିଘ୍ନ ନ କରନ୍ତି ॥
ସମସ୍ତେ ମିଳି ଅଗ୍ନିକୁଣ୍ଡେ । ଘୃତ ସମିଧ ଖାଇ ତୁଣ୍ଡେ ॥
ଯଜ୍ଞ ଭୋଜନେ ସୁଖେ ଥାନ୍ତି । ତାହାଙ୍କୁ ଦୟା ସେ କରନ୍ତି ॥
ଯେ ତୁମ୍ଭ ଚରଣେ ସେବନ୍ତି । ସକଳ ଧର୍ମ ସେ ତେଜନ୍ତି ॥
ଏକାନ୍ତ ଚିତ୍ତେ ସୁଖେ ଥାନ୍ତି । ଅନ୍ୟ ଦେବଙ୍କୁ ନ ଗଣନ୍ତି ॥
ତେଣୁ ସେ ଦେବେ କୋପଭରେ । ବିଘ୍ନ ଆଚରନ୍ତି ତାହାରେ ॥
ଯେ ତୁମ୍ଭ ଚରଣେ କିଙ୍କର । ତାହାଙ୍କୁ ତୁମ୍ଭେ ଦୟା କର ॥୯,୧୦
ଜିହ୍ୱା ଲାଳସା କ୍ଷୁଧା ତୃଷା । ଗ୍ରୀଷମ ଋତୁ ଶୀତ ବର୍ଷା ॥
ମନ୍ଦପବନ କାମଭୋଗେ । ଥାଉଁ ନିରତେ ପ୍ରାଣୀ ସଙ୍ଗେ ॥
ବିଘ୍ନ ଆଚରୁଁ ଶତ୍ରୁପଣେ । ଯେ ଧର୍ମ କରେ ଅନୁକ୍ଷଣେ ॥
ଯେ ଘୋର ତପ ଆଚରନ୍ତି । ତାହାଙ୍କୁ ଆମ୍ଭେ ବିଘ୍ନ ଚିନ୍ତି ॥
କଠୋର ତପ କରୁ ନାଶ । ସେ ହୋନ୍ତି କାମ କ୍ରୋଧ ବଶ ॥
ଛାଡ଼ନ୍ତି ତପ ଧର୍ମ ଲୟେ । ପଡ଼ନ୍ତି ବିଷ୍ଣୁମାୟା ମୋହେ ॥
ଆମ୍ଭର ମହିମା ଏମନ୍ତ । ଯେ ପ୍ରାଣୀ ତୁମ୍ଭର ଭକତ ॥
ତାହାଙ୍କୁ ଦେଖି ଆମ୍ଭେ ଡରି । ସେ ପ୍ରାଣୀ ଭବୁ ଯାନ୍ତି ତରି ॥
ବାଛୁରୀ ଖୋଜେ ଜଳ ଥିଲେ । ତାହା ଯେମନ୍ତେ ଲଂଘି ହେଲେ ॥୧୧
ଏମନ୍ତ କହୁଁ ଇନ୍ଦ୍ରଗଣେ । ବିଷ୍ଣୁ ସମୀପେ ତତକ୍ଷଣେ ॥
ଅଦ୍ଭୁତ ନାରୀ ରୂପରାଶି । ବିଜୁଳି ଯେହ୍ନେ ମେଘୁ ଖସି ॥

ସେବନ୍ତି ନାରାୟଣ ପାଶେ । ତା ଦେଖି ଇନ୍ଦ୍ରଗଣେ ତ୍ରାସେ ॥
କମ୍ପନ୍ତି ଜୀବନ ବିକଳେ । ନୟନ ବୁଜି ବେନି କରେ ॥
ସେ ରୂପରାଶି ଦେହଗନ୍ଧ । ଆଘ୍ରାଣେ କରି ନାସାରନ୍ଧ୍ର ॥
ହରିଲା ତାହାଙ୍କର ମନ । ରୂପକୁ ଗ୍ରହିଁ ହତଜ୍ଞାନ ॥
ମୋହେ ପଡ଼ିଲେ ମହୀତଳେ । କନ୍ୟାଙ୍କ ରୂପ ଗୁଣ ବଳେ ॥୧୨,୧୩
ତା ଦେଖି ପ୍ରଭୁ ବ୍ରହ୍ମରାଶି । ରଙ୍ଗ ଅଧରେ ମନ୍ଦେ ହସି ॥
ବୋଲନ୍ତି ଦେବଗଣେ ଗ୍ରହିଁ । ଭୟ ନ କର ତୁମ୍ଭେ କେହି ॥
ମୋର ନିକଟେ କନ୍ୟା ଯେତେ । ଅଛନ୍ତି ସେବା ଅନୁମତେ ॥
ତାହାଙ୍କ ପାଶେ ସେବା କର । କନ୍ୟା ଗୋଟିଏ ମାଗ ବର ॥
ସେ ଯେବେ ଦେବେ ଏକ ନାରୀ । ତା ଘେନି ଚଳ ସ୍ୱର୍ଗପୁରୀ ॥
ସେ ହେଉ ସ୍ୱର୍ଗେ ଅଳଙ୍କାର । ରୂପେ ମୋହିବ ପୁରନ୍ଦର ॥୧୪
ତକ୍ଷଣେ ଆଜ୍ଞା ଶିରେ ଧରି । କନ୍ୟାଙ୍କ ପାଶେ ସେବା କରି ॥
କନ୍ୟାଏ ଲଭି ତାଙ୍କ ମଧ୍ୟେ । ସ୍ୱର୍ଗେ ଚଳିଲେ ଅପ୍ରମାଦେ ॥
ଉର୍ବଶୀ ନାମ ସେ ବୋଲାଇ । ଅପ୍ସରା ମଧ୍ୟେ ଶ୍ରେଷ୍ଠ ସେହି ॥
ଇନ୍ଦ୍ର ସମୀପେ ଦେଲେ ନେଇ । ନମିଲେ ଶିରେ କର ଦେଇ ॥୧୫
ଦେଖି ସାନନ୍ଦ ପୁରନ୍ଦର । ରୂପେ ମୋହିଲା ସ୍ୱର୍ଗପୁର ॥
ସଭାରେ ଦେବଙ୍କ ଅଗ୍ରତ । କହିଲେ ସକଳ ବୃତ୍ତାନ୍ତ ॥
ଇନ୍ଦ୍ର ସଭୟେ ତାହା ଶୁଣି । ଜାଣିଲେ ନିଶ୍ଚେ ଚକ୍ରପାଣି ॥
ବିସ୍ମୟ ହୋଇ ଇନ୍ଦ୍ର ମନେ । ବୋଧିଲା ହୃଦୟ ଯତନେ ॥୧୬
ଏବେ ହୋ ଶୁଣ ନୃପବର । ବିଷ୍ଣୁର କଳା ଅବତାର ॥
ପରମହଂସ ରୂପ ହୋଇ । ଅଶେଷ ଜ୍ଞାନମୟ ଦେହୀ ॥
ଜଗତ ମଙ୍ଗଳ ନିମିତ୍ତେ । କହିଲେ ଆତ୍ମଜ୍ଞାନ ଯେତେ ॥
ତୃତୀୟେ ଦତ୍ତାତ୍ରେୟ ହୋଇ । ଜ୍ଞାନ ମଙ୍ଗଳ ପୁଣ୍ୟଦେହୀ ॥
ବ୍ରହ୍ମା ମନରୁ ଅବତରି । ଚତୁଃସନଙ୍କ ରୂପ ଧରି ॥
ପୁଣି ଋଷଭ ଅବତାର । ଆମ୍ଭେ ଯେ ତାହାଙ୍କ କୁମର ॥

ସେ ପୁଣି ହୟଗ୍ରୀବ ହେଲେ । ସେ ରୂପେ ବେଦ ଉଦ୍ଧରିଲେ ॥
ମଧୁ କୈଟଭ ସଂହାରିଲେ । ବ୍ରହ୍ମାଙ୍କୁ ସଙ୍କଟୁ ତାରିଲେ ॥୧୭
ପଞ୍ଚମେ ମୀନରୂପ ହୋଇ । ଧରଣୀ-ନାବ ଶୃଙ୍ଗେ ବହି ॥
ପ୍ରଳୟ ଜଳେ ଶଙ୍ଖା ମାରି । ସେ ରୂପେ ନିଗମ ଉଦ୍ଧରି ॥
ସୃଷ୍ଟି ପ୍ରଳୟେ ଜଳରାଶି । ଭୂମି ପାତାଳେ ଥିଲା ପଶି ॥
ଶୂକର ରୂପେ ପଦ୍ମକଳ୍ପେ । ଭୂମି ତୋଳିଲେ ଦନ୍ତଶିଖେ ॥
ଆଦି ଅସୁର ହିରଣ୍ୟାକ୍ଷ । ତାହାକୁ ନାଶିଲେ ପ୍ରତ୍ୟକ୍ଷ ॥
ଇନ୍ଦ୍ର ସମ୍ପଦ ଲାଭ ଅର୍ଥେ । ଦେବ ଦାନବ ଅନୁମତେ ॥
ଗଭୀର କ୍ଷୀରସିନ୍ଧୁ ମଧ୍ୟେ । ମନ୍ଦର ଆଣି ସୁଖ ସାଧ୍ୟେ ॥
ଜଳେ ପକାନ୍ତେ ମହାଗିରି । ହରି ତା କୂର୍ମରୂପେ ଧରି ॥
ଅମୃତ ଆଦି ନାନା ଦ୍ରବ୍ୟ । ଇନ୍ଦ୍ରଙ୍କୁ ଦେଲେ ହରି ସର୍ବ ॥
ଗଜ କୁମ୍ଭୀର ଯୁଦ୍ଧ କାଳେ । ସେ ହରିରୂପ ଅନ୍ତରାଳେ ॥
ଚକ୍ରେ କୁମ୍ଭୀର ମୁଣ୍ଡ ହାଣି । ଗଜ ଉଦ୍ଧାରି ଚକ୍ରପାଣି ॥୧୮
କଶ୍ୟପ ଯଜ୍ଞେ ଋଷିମେଳା । ଷାଠିସହସ୍ର ବାଳଖିଲ୍ୟା ॥
ନିତ୍ୟେ ଗମନ୍ତି ବନଦାଣ୍ଡେ । କାଷ୍ଠ ବହନ୍ତି କନ୍ଧେ ମୁଣ୍ଡେ ॥
ଦିନେକ ଘେନି ଏକ ଡାଳେ । ଷାଠିସହସ୍ର ଏକାବେଳେ ॥
ବହି ଆଣନ୍ତେ ବାହୁବଳେ । ବୁଡ଼ିଲେ ଗୋଷ୍ପଦ ସଲିଳେ ॥
ସମସ୍ତେ ହୋଇ ଏକମୁଖ । ଡାକିଲେ ନାରାୟଣ ରଖ ॥
ଦେଖିଣ ତାହାଙ୍କ ବିକଳ । ଦୟାସାଗର ଆଦିମୂଳ ॥
ତକ୍ଷଣେ ଦିବ୍ୟରୂପ ଧରି । ବିପ୍ରଙ୍କୁ ସଙ୍କଟୁ ଉଦ୍ଧରି ॥
ଦେବ ଅସୁର ଯୁଦ୍ଧକାଳେ । ବାସବ ନିଜ ଭୁଜବଳେ ॥
ଯେଣୁ ଛେଦିଲା ବୃତ୍ର କନ୍ଧ । ତେଣୁ ଲଭିଲା ବ୍ରହ୍ମବଧ ॥
ବିଗ୍ରହି କଲା ମନେ ଦୁଃଖ । ଡାକିଲା ନାରାୟଣ ରଖ ॥
ତକ୍ଷଣେ ଧର୍ମରୂପ ଧରି । ଇନ୍ଦ୍ରଙ୍କୁ ସଙ୍କଟୁ ଉଦ୍ଧରି ॥
ଆଦିଅସୁର ପଦ୍ମକଳ୍ପେ । ନାଶିଲେ ନରସିଂହ ରୂପେ ॥୧୯

ଦୟାସାଗର ଦାମୋଦର । ହୋଇଣ କଳା ଅବତାର ॥
ଦେବଙ୍କ ଛଳେ ଦୈତ୍ୟ ମାରି । ପୃଥ୍ୱୀ ପାଳଇ ନରହରି ॥
ଅଦ୍ଭୁତ ବାମନ ଶରୀରେ । ମିଳିଲେ ବଳି ଯଜ୍ଞଘରେ ॥
ସେ ରୂପେ ମୋହି ତାର ମନ । ଦାନେ ହରିଲେ ତ୍ରିଭୁବନ ॥
ପାଦେ ତାହାର ଶିର ଚ୍ପି । ପାତାଳପୁରେ ନେଇ ସ୍ଥାପି ॥
ଇନ୍ଦ୍ରର ମନ କଲେ ଶୁଭ । ସେ ସୁଖ ଭୁଞ୍ଜଇ ଦୁର୍ଲଭ ॥୨୦
ସେ ପୁଣି ଭୃଗୁବଂଶେ ହରି । ପରଶୁରାମ ରୂପ ଧରି ॥
ଏକବିଂଶତି ବାର କୋପେ । ଅବନୀ ଭ୍ରମି ବିଶ୍ୱରୂପେ ॥
କ୍ଷତ୍ରିୟକୁଳ ସଂହାରଣ । କଲେ ଅନାଦି ନାରାୟଣ ॥
ରାବଣ ରାମ ରୂପେ ମାରି । ଜାନକୀ ସଙ୍କଟୁ ଉଦ୍ଧରି ॥
ଧରଣୀ ମଧ୍ୟେ ଯଶ ଥୋଇ । ସଂସାର ତରେ ଯାହା ଗାଇ ॥୨୧
ପୁଣି ଅନନ୍ତ ଅବତାର । ଯାଦବକୁଳେ ହଳଧର ॥
ଘୋର ଦାନବ ଦର୍ପ ହରି । ସୁଖେ ସ୍ଥାପିବେ ବସୁନ୍ଧରୀ ॥
ପ୍ରବୋଧ ବୁଦ୍ଧ ଅବତାରେ । ଜ୍ଞାନ ବିସ୍ତାରେ ଏ ସଂସାରେ ॥
ଅଶ୍ୱ ଆରୋହି କଲ୍କି ରୂପେ । ମ୍ଳେଚ୍ଛ ସଂହାରେ ମହାକୋପେ ॥୨୨
ଏମନ୍ତେ ନାନାରୂପ ଧରେ । ସେ ହରି ସଂସାରେ ବିହରେ ॥
କେ ତାର ଜନ୍ମ କର୍ମ ମୁଖେ । ସଂଖ୍ୟା କରିବ ଶତ କଳ୍ପେ ॥
ଯେ ଅବା କହିଲି ସଂକ୍ଷେପେ । ଭୋ ରାଜା ତୋହର ସମୀପେ ॥୨୩
ନାରଦ ବସୁଦେବ ମେଳେ । ଶୁକ ପରୀକ୍ଷ ଗଙ୍ଗାକୂଳେ ॥
ଏମନ୍ତ ପ୍ରଶ୍ନ ଏକୋଦଶ । କହଇ ଜଗନ୍ନାଥ ଦାସ ॥
ଶ୍ରୀଭାଗବତ ଧର୍ମକଥା । ଶୁଣି ଛାଡ଼ିବ ମନୁ ବ୍ୟଥା ॥

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ଏକାଦଶସ୍କନ୍ଧେ ଭଗବଦବତାରବର୍ଣ୍ଣନଂ
ନାମ ପଞ୍ଚମୋଽଧ୍ୟାୟଃ ।

□□□

# ଷଷ୍ଠ ଅଧ୍ୟାୟ*

ଭକ୍ତିହୀନଙ୍କ ଯେବା ଗତି । ଯୁଗାନୁସାରେ ଯେ ଯେ ମୂର୍ତ୍ତି ॥
ଉପାସନାର ଯେବା ବିଧି । ଷଷ୍ଠରେ କହନ୍ତି ସମ୍ପାଦି ॥

*ବିଦେହ ଉବାଚ*

ବୋଲନ୍ତି ବିଦେହରାଜନ । ଭୋ ମୁନି ଶୁଣ ମୋ ବଚନ ॥
ଏ ଭୂମି ମଧ୍ୟେ ଦୁଷ୍ଟଲୋକେ । ହରିଙ୍କି ନ ଭଜନ୍ତି ଥୋକେ ॥
କାମ ସଙ୍କଳ୍ପ ଲୋଭେ ଜଡ଼ି । ଅଜ୍ଞାନ ମୋହେ ଥାନ୍ତି ପଡ଼ି ॥
ଧର୍ମ ଅଧର୍ମ ନ ଜାଣନ୍ତି । ଅନ୍ତେ ସେ ଲଭନ୍ତି କି ଗତି ॥ ୧
ଚମସ ଶୁଣି ତା ବଚନ । କହନ୍ତି ସଭା ବିଦ୍ୟମାନ ॥(କ୍ଷ.)

*ଚମସ ଉବାଚ*

କୃଷ୍ଣର ମୁଖ ଭୁଜ ଊରୁ । ଅଭୟ ପାଦ ପଙ୍କଜରୁ ॥
ବ୍ରାହ୍ମଣ ଆଦି ଚତୁର୍ବର୍ଣ୍ଣେ । ଜନ୍ମିଲେ ସ୍ୱଭାବେ ତ୍ରିଗୁଣେ ॥ ୨
ଏଣୁ ସେ ବିଷ୍ଣୁ ପିତାମାତା । ଗୁରୁ ବାନ୍ଧବ ଇଷ୍ଟଦାତା ॥
ଏମନ୍ତ ସ୍ୱାମୀ ସେବା ତେଜି । ଲୋଭେ ଯେ ଅନ୍ୟ ଦେବ ଭଜି ॥
ସେ ପ୍ରାଣୀ ପତିତ ପାମର । ଅନ୍ତେ ପଡ଼ଇ ତମ ଘୋର ॥ ୩
ବଦନ ଥାଉଁ ହରି ବାଣୀ । ମୁଖେ ଯେ ନ ବୋଲନ୍ତି ପ୍ରାଣୀ ॥
ନାମ ନ ଶୁଣନ୍ତି ଶ୍ରବଣେ । ଯେ ଥାନ୍ତି ପାପ ଆଚରଣେ ॥
ସ୍ତ୍ରୀ ଶୂଦ୍ର ଆଦି ଯେତେ ନରେ । ଯେ ଥାନ୍ତି ନିନ୍ଦିତ ଆଗ୍ରହେ ॥
ସେ ଯେବେ ସାଧୁଙ୍କୁ ଦେଖନ୍ତି । କଳ୍ମଷ ପଙ୍କୁଁ ନିସ୍ତରନ୍ତି ॥ ୪
ବ୍ରାହ୍ମଣ କ୍ଷତ୍ରି ବୈଶ୍ୟଜନ । ସ୍ୱଭାବେ ଧନ୍ୟ ତିନିବର୍ଣ୍ଣ ॥
କୃଷ୍ଣଚରଣ ସନ୍ନିଧାନେ । ଥିଲେହେଁ ନିଗମ ବଚନେ ॥
ବ୍ରାହ୍ମଣ ବେଦ ବିଦ୍ୟାବଳେ । କୁଳ ସମ୍ପଦ ଧନ ଛଳେ ॥

* ମୂଳ ସଂସ୍କୃତ ଅନୁସାରେ ପଞ୍ଚମ ଅଧ୍ୟାୟ ।

ମଜ୍ଜଇ କରି ଅହଙ୍କାର । କନ୍ଧେ ବହଇ ବେଦଭାର ॥
ଧର୍ମ ଅଧର୍ମ ମାର୍ଗ କହି । ଆତ୍ମାକୁ ପଣ୍ଡିତ ବୋଲାଇ ॥
ସଭାର ମଧ୍ୟେ ଗୃଟୁ କହି । ହସି ହସାଇ ମନ ମୋହି ॥
ସ୍ୱଭାବେ ରଜୋଗୁଣ ଚଣ୍ଡେ[୧] । ସଙ୍କଳ୍ପ କରେ କର୍ମକାଣ୍ଡେ ॥
ଧନ ତନୟ ସୁଖ ଆଶେ । ଶରୀର ଅନ୍ତେ ସ୍ୱର୍ଗବାସେ ॥
ଅଳପ କାର୍ଯ୍ୟେ କ୍ରୋଧ ବହି । କାଳ ଭୁଜଙ୍ଗ ପ୍ରାୟ ହୋଇ ॥
ସ୍ୱଭାବେ କାମ କ୍ରୋଧ ବଳେ । ନିତ୍ୟ ଅସାଧୁ ସଙ୍ଗେ ମିଳେ ॥
ଏଣୁ ଏ ବିପ୍ର ଆଦି ବର୍ଣ୍ଣେ । ପାପୀ ଦାମ୍ଭିକ ଅଭିମାନେ ॥
ବିଷ୍ଣୁଜନଙ୍କୁ ଦେଖି ପାଶେ । ନିନ୍ଦା କରନ୍ତି ଉପହାସେ ॥୫-୭
ଅନ୍ୟୋଽନ୍ୟେ କହି ହାସ୍ୟ ବାଣୀ । ନିକଟେ କୃଷ୍ଣକଥା ଶୁଣି ॥
ଗୃହେ ଗୃହିଣୀ ଅଙ୍ଗସଙ୍ଗେ । ଚିତ୍ତ ବୁଡ଼ାଇ କାମଭୋଗେ ॥
ଆଶା ବନ୍ଧନେ ଧନ ସଞ୍ଚେ । ମାୟା ସଙ୍କଳ୍ପେ କାଳ ବଞ୍ଚେ ॥
ପିଣ୍ଡ ପରାଣ ତୁଷ୍ଟି ଅର୍ଥେ । ପଶୁ ହିଂସନ୍ତି ହିଂସାଶାସ୍ତ୍ରେ ॥
ଦେବ ଉଦ୍ଦେଶ୍ୟେ ଜନ୍ତୁ ମାରି । ପୂଜନ୍ତି ନାନା ଯଜ୍ଞ କରି ॥
ଦାନ ଦକ୍ଷିଣା ବିଧିହୀନେ । କୁକର୍ମ କରନ୍ତି ଅଜ୍ଞାନେ ॥
ପଶୁ ମାରଣେ ପାପ ଯେତେ । ଦେଖି ନ ଦେଖନ୍ତି ଅଗ୍ରତେ ॥ ୮
ଶ୍ରୀମଦ କୁଳ ଅଭିମାନ । ଐଶ୍ୱର୍ଯ୍ୟ ମଦିରାରେ ମଗ୍ନ ॥
ଯେ ଦାନ କର୍ମ ବିଦ୍ୟା ବଳ । ଏ ସର୍ବ ମଣନ୍ତି ନିଶ୍ଚଳ ॥
ଏ ସର୍ବ ମଦେ ଅନ୍ଧ ହୋନ୍ତି । ସାଧୁ ଅସାଧୁ ନ ଗଣନ୍ତି ॥
ବିଷ୍ଣୁ ବୈଷ୍ଣବ ଜନ ଗୃହେଁ । ନିନ୍ଦା କରନ୍ତି ଗର୍ବ ବହି ॥
ଏ ଭାବେ ସର୍ବନାଶ ପରେ । ନରକେ ପଡ଼ନ୍ତି ନିର୍ଭରେ ॥ ୯
ସକଳ ଜୀବ ମଧ୍ୟେ ହରି । ବସଇ ଆତ୍ମାରୂପ ଧରି ॥
ତାକୁ ପାମରେ ନ ବୁଝନ୍ତି । ବିଷ୍ଣୁମାୟାରେ ଭ୍ରମି ହୋନ୍ତି ॥

୧. ଚଣ୍ଡେ—କ୍ରୋଧରେ, ନିଷ୍ଠୁରଭାବରେ ।

ଯାର ମହିମା ବେଦ ଭଣେ । ଯତୀନ୍ଦ୍ର ଯେ ହରି ଚରଣେ ॥
ନିତ୍ୟେ ନିର୍ମଳ ଚିତ୍ତେ ଚିନ୍ତି । ଧ୍ୟାନ ଧାରଣେ ନ ଦେଖନ୍ତି ॥
ସେ ହରି ନ ଭଜନ୍ତି ଚିତ୍ତେ । କୁବୁଦ୍ଧିଭାବ ଅବିରତେ ॥
କୁତ୍ସିତ କଥା ରତ ନିତ୍ୟେ । ନାନା କୁପଥ ମନୋରଥେ ॥
ମନ ଭ୍ରମାଇ ଭ୍ରମୁଥାନ୍ତି । ଦୁର୍ଗମ ପଥ ନ ଚିହ୍ନନ୍ତି ॥୧୦
ନାରୀ ସେବନ ମାଂସ ମଦ୍ୟ । ଲୋକ ବେଭାରେ ଏ ପ୍ରସିଦ୍ଧ ॥
ପ୍ରାଣୀ ତା କରେ ଆତ୍ମସୁଖେ । ବେଦ ନ କହେ ଏହା ମୁଖେ ॥
ଏ ବେଦପଥ ଛାଡ଼ି ଥୋକେ । କର୍ମ କରନ୍ତି ଆତ୍ମସୁଖେ ॥
ଛାଡ଼ି ନ ପାରି ହୀନ ଚିତ୍ତେ । ସେବନ୍ତି ମଦ ମାଂସ ନିତ୍ୟେ ॥
ଏ ଘେନି ବେଦ ବିଧି ବାଣୀ । ଧର୍ମ ଅଧର୍ମ ପରିମାଣି ॥
କଲେ କରିବ ଧର୍ମ ମତେ । ଯେ ବେଦ ବିଧି ଅନୁମତେ ॥
ନାରୀ ନ ସେବି କାମ ସଧେ । ସେବ ବିବାହ ଅନୁବନ୍ଧେ ॥
ମଦ୍ୟ ବା ମାଂସ ଯଜ୍ଞେ ଲେଖେ । ପଶୁମାରଣ ପିତୃପକ୍ଷେ ॥
ବେଦ ନିଷେଧ ଏ ପ୍ରସିଦ୍ଧି । ଏହା ନ ଜାଣେ ପଶୁବୁଦ୍ଧି* ॥
ଧର୍ମ ଅଧର୍ମ ବେନି ପଥ । ବେଦ ବୋଲଇ ଯାହା ନିତ୍ୟ ॥
ଆଦି ଈଶ୍ୱର ଆଜ୍ଞା ଏହୁ । ଏଥୁଁ ଅଧିକ କେବା କହୁଁ ॥୧୧

---

* ବେଦରେ ବିଧ୍ୟାତ୍ମକ ଭାବରେ ଏ କଥା କୁହାଯାଇ ନାହିଁ ଯେ 'ସ୍ତ୍ରୀସଙ୍ଗ ତଥା ମାଂସ ଓ ମଦ୍ୟ ସେବନ କରିବା ଉଚିତ', ବରଂ ଲୋକମାନଙ୍କର ଏ ସମସ୍ତ ନିଷିଦ୍ଧ କର୍ମ ପ୍ରତି ସ୍ୱାଭାବିକ ରୁଚି ରହିଥିବାରୁ ସେମାନଙ୍କ ଉଚ୍ଛୃଙ୍ଖଳ ପ୍ରବୃତ୍ତିକୁ ନିୟନ୍ତ୍ରିତ ବା ପ୍ରଶମିତ କରିବା ଉଦ୍ଦେଶ୍ୟରେ କେତେକ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ଏସବୁ ସେବନର ପ୍ରତିବନ୍ଧକକୁ କୋହଳ କରାଯାଇଛି । ବିବାହ, ଯଜ୍ଞ ଓ ସୌତ୍ରାମଣି ଯଜ୍ଞରେ ଏସବୁ ସେବନ ପାଇଁ ଯେଉଁ ସୀମିତ ବିଧାନ ରହିଛି, ତାହାର ବାସ୍ତବିକ ଉଦ୍ଦେଶ୍ୟ ହେଲା— ଲୋକମାନଙ୍କୁ ଏଭଳି କର୍ମରୁ ନିବୃତ୍ତ କରିବା । ପ୍ରକୃତରେ ସୌତ୍ରାମଣି ଯଜ୍ଞରେ ସୁରାକୁ କେବଳ ଆଘ୍ରାଣ କରିବାର ବିଧାନ ଅଛି, ପିଇବାକୁ ନୁହେଁ; ଯଜ୍ଞରେ ପଶୁକୁ କେବଳ ଆଲଭନ (ସ୍ପର୍ଶ) କରିବାର ବିଧାନ ଅଛି,

ଧନ ଅର୍ଜନେ ଧର୍ମ କରି । ଧର୍ମେ ପ୍ରାପତ ନରହରି ॥
ସେ ଧନେ ପୋଷେ ନିଜ ଦେହୀ । ମୃତ୍ୟୁ ଭାବନା ନ କରଇ ॥୧୨
ଯଦ୍ୟପି ଯଜ୍ଞର ବିଧାନ । ମାଂସ ଭକ୍ଷଣ ସୁରାପାନ ॥
ତଥାପି ମଦ୍ୟ ଯଜ୍ଞମତେ । ଆଘ୍ରାଣ କରି ନାସାଗ୍ରତେ ॥
କେବେହେଁ ନ କରିବ ପାନ । ଏ ବିଧି ବେଦର ବିଧାନ ॥
କେବଳ ଯଜ୍ଞେ ପଶୁବଧ । ଅନ୍ୟତ୍ର ବଧଟି ପ୍ରମାଦ ॥
ନାରୀ ସଙ୍ଗମ ଋତୁମତେ । କେବଳ ପୁତ୍ରଜନ୍ମ ଅର୍ଥେ ॥
ଅନ୍ୟଥା ରତିସୁଖ ଅର୍ଥେ । କେବେହେଁ ନ ଚିନ୍ତିବ ଚିତ୍ତେ ॥୧୩
ଜୀବର ସ୍ୱଧର୍ମ ଏ ବାଣୀ । ସକଳ ବେଦେ ପରିମାଣି ॥
ଏହା ନ ବୁଝି ମୂଢ଼ପ୍ରାଣୀ । ଦୁଃଖକୁ ସୁଖ ପ୍ରାୟ ମଣି ॥
କରନ୍ତି ଜ୍ଞାନହୀନ କର୍ମ । ଏଣୁ ସଂସାରେ ହୋନ୍ତି ଭ୍ରମ ॥
ମୂର୍ଖ ସ୍ୱଭାବେ ମୂଢ଼ପ୍ରାଣୀ । ଆତ୍ମାକୁ ପଣ୍ଡିତ ବଖାଣି ॥
କେବଳ ଦେବତା ବିଶ୍ୱାସେ । ନ ଜାଣି ଯଜ୍ଞେ ପଶୁ ହିଂସେ ॥
ପଶୁଏ ଥାନ୍ତି ପ୍ରେତମେଳେ । ତାର ଜୀବନ ଅନ୍ତକାଳେ ॥
ଧରି ଭକ୍ଷନ୍ତି ତାର ମାଂସ । କେବଳ ଅସ୍ଥି ରହେ ଶେଷ ॥
ଯେ ଯାକୁ ମାରେ ସୁଖଭୋଳେ । ସେ ତାକୁ ହିଂସେ ଅନ୍ତକାଳେ ॥
ଏ ବାଣୀ ପଣ୍ଡିତଙ୍କ ମଧ୍ୟେ । ପାପ ଲଭନ୍ତି ପଶୁବଧେ ॥୧୪
ସକଳ ଜୀବେ ନରହରି । ବସଇ ଆତ୍ମାରୂପ ଧରି ॥
ସମେ ବସଇ ସର୍ବଦେହେ । ମୂଢ଼ ନ ଜାଣେ ମାୟାମୋହେ ॥

---

ହିଂସା ବା ହତ୍ୟା କରିବା ପାଇଁ ନୁହେଁ; କେବଳ ବଂଶରକ୍ଷା ଉଦ୍ଦେଶ୍ୟରେ (ଧାର୍ମିକ ପରମ୍ପରା ରକ୍ଷା ନିମିତ୍ତ) ନିଜ ଧର୍ମପତ୍ନୀ ସଙ୍ଗେ ସହବାସ କରିବାର ବିଧାନ ଅଛି, ସମ୍ଭୋଗ ଉଦ୍ଦେଶ୍ୟରେ ନୁହେଁ। ଏଭଳି ନିର୍ଦ୍ଦିଷ୍ଟ କ୍ଷେତ୍ରରେ ସୀମିତ କରିବା ଦ୍ୱାରା ବେଦ ବସ୍ତୁତଃ ଏସବୁ ସେବନକୁ ନିଷେଧ କରିଛି। ମାତ୍ର ବିଷୟୀ ଲୋକମାନେ ବେଦବାକ୍ୟରେ ଅନ୍ତର୍ନିହିତ ଏହି ବିଶୁଦ୍ଧ ଅର୍ଥକୁ ଜାଣନ୍ତି ନାହିଁ।

ପୁତ୍ର କଳତ୍ର କଳେବରେ । ମୋହର ବୋଲି ସ୍ନେହ କରେ ॥
ସୁଖାନୁଭବେ ପ୍ରାଣୀ ମାରେ । କେବଳ ବିଷ୍ଣୁଦ୍ରୋହ କରେ ॥
ଦୁଷ୍ଟ ପତିତ ବୋଲି ତାରେ । ପଡ଼େ ନରକ ତମ ଘୋରେ ॥୧୫
ପଣ୍ଡିତପଣେ ବାଦ ଚିନ୍ତି । ଦମ୍ଭେ ନ ବୁଝେ ମୋକ୍ଷଗତି ॥
ବଞ୍ଚିତ ହୁଏ କୃଷ୍ଣ ନାମେ । ସଞ୍ଚଇ ଧର୍ମ ଅର୍ଥ କାମେ ॥
କରଇ ନାନା କର୍ମ ନିତ୍ୟେ । କ୍ଷଣେ ନ ରହେ ସ୍ଥିର ଚିତ୍ତେ ॥
କର୍ମ ହରଇ ତାର ମନ । ତାହାର କାହିଁ ପରିତ୍ରାଣ ॥
ଚିତ୍ତେ ନ ରହେ କେବେ ଶାନ୍ତି । ତାହାକୁ ବୋଲି ଆତ୍ମଘାତୀ ॥
ପାଷଣ୍ଡ ଭାବେ ଅନୁମାନି । ଆତ୍ମାକୁ ମଣେ ତତ୍ତ୍ୱଜ୍ଞାନୀ ॥
ମନେ କଳ୍ପଇ ଯେତେ ଫଳେ । ଦଇବ ହରଇ ତା ବଳେ ॥
ବଞ୍ଚିତ ଇହ ପରଲୋକେ । ଦିନ ବଞ୍ଚଇ ମହାଦୁଃଖେ ॥୧୬,୧୭
ଦୁଃଖେ ସଞ୍ଚିତ ଦାରା ସୁତ । ଗୃହ ସମ୍ପଦ ପଶୁ ଭୃତ୍ୟ ॥
ଏ ସର୍ବ ଛାଡ଼ି ଅନ୍ତକାଳେ । ଚଳଇ ପାପ-ପୁଣ୍ୟ ବଳେ ॥
ନରକେ ପଡ଼ି ଦୁଃଖ ଭୁଞ୍ଜେ । ଯମଯାତନା ଘୋର ପୁଞ୍ଜେ ॥
ହରି ବିମୁଖ ଯେହୁ ପ୍ରାଣୀ । ନ ତରେ ଭବତରଙ୍ଗିଣୀ ॥୧୮
ଏମନ୍ତେ ମୁନିବାକ୍ୟ ଶୁଣି । ରାଜା ବୋଲଇ ମନେ ଗୁଣି ॥(ଜ.)

*ବିଦେହ ଉବାଚ*

ଭୋ ମୁନି ପ୍ରଭୁ ଭଗବାନ । କେବଣ ଯୁଗେ କେଉଁ ବର୍ଣ୍ଣ ॥
କି ନାମ ରୂପ ଅନୁସାରେ । ଭକତ ଭଜେ କି ପ୍ରକାରେ ॥
କେବଣ ଯୁଗେ କେଉଁ ରୂପେ । ଶରୀର ଧରେ ମାୟାକଳ୍ପେ ॥
ଏହା ଶୁଣିତେ ମୋର ଇଚ୍ଛା । କହି ପୂରାଅ ମନୋବାଞ୍ଛା ॥୧୯
ଜୀବ ଉଦ୍ଧାର ଏହୁ ବାଣୀ । କରଭାଜନ ତାହା ଶୁଣି ॥
ବୋଲନ୍ତି ଶୁଣ ନରନାଥ । ଅଶେଷ କୃଷ୍ଣର ଚରିତ ॥

*କରଭାଜନ ଉବାଚ*

କଳି କଳୁଷ ନିବାରଣ । ଯେ କରେ ଶ୍ରବଣ କୀର୍ତ୍ତନ ॥

ଯେ ରୂପ ବହେ ସତ୍ୟଯୁଗେ । ତ୍ରେତା ଦ୍ୱାପର କଳିଯୁଗେ ॥
ଇଚ୍ଛା ବିହାରେ ଅବତରେ । ସ୍ୱଭାବେ ନାନାରୂପ ଧରେ ॥
ବିଧି ବିଧାନେ ନାନାମତେ । ଯେ ରୂପ ପୂଜନ୍ତି ଜଗତେ ॥
ଯେ ଯୁଗେ ଯେବା ଅବତାର । ଯେ ବର୍ଣ୍ଣ ନାମ ଦାମୋଦର ॥
ସୁଖେ ବିହରେ ନରଲୋକେ । ଶୁଣ କହିବା ଏକେ ଏକେ ॥୨୦
ପ୍ରଥମେ ଶୁକ୍ଳବର୍ଣ୍ଣ ଦେହେ । ଜଟାକଳାପ ମୁଣ୍ଡେ ବହେ ॥
ଦେହେ ଉତ୍ତରୀ ଅକ୍ଷମାଳ । ପିନ୍ଧନ୍ତି ବୃକ୍ଷର ବକଳ ॥
ଆଜାନୁ ଲମ୍ବେ ଭୁଜ ଗ୍ରୀବ । ତ୍ରିଦଣ୍ଡ କମଣ୍ଡଳୁଧାରୀ ॥୨୧
ଏମନ୍ତ ରୂପ ଭଗବାନ । ସେ କାଳେ ସର୍ବ ସାଧୁଜନ ॥
ଶୁଚି ପବିତ୍ର ଶାନ୍ତ ଦାନ୍ତ । ଯେ ହରି ସର୍ବଜୀବ ହିତ ॥
ତପ ଆଚରି ଶମ ଦମେ । ପ୍ରାଣ ସଂଯମି ମହାଶ୍ରମେ ॥
ଭଜନ୍ତି ସେ ହରି ଚରଣେ । ନିଗମ ଧର୍ମ ଆଚରଣେ ॥୨୨
ବୈକୁଣ୍ଠ ସୁପର୍ଣ୍ଣ ଲକ୍ଷଣ । ଧର୍ମ ସ୍ୱରୂପ ନାରାୟଣ ॥
ହଂସପୁରୁଷ ଭଗବାନ । ପରମଆତ୍ମା ଦିବ୍ୟଜ୍ଞାନ ॥
ଏ ରୂପ ଧରେ ସତ୍ୟଯୁଗେ । ଭକତଜନ ଅନୁରାଗେ ॥୨୩
ଶୋଣିତବର୍ଣ୍ଣ ତ୍ରେତାଯୁଗେ । ବିଷ୍ଣୁ ସମ୍ଭୂତ ଭୂମିଭାଗେ ॥
ସୁନ୍ଦର ଚତୁର୍ଭୁଜ ଧରେ । ସୁବର୍ଣ୍ଣ ବର୍ଣ୍ଣ କେଶ ଶିରେ ॥
ତ୍ରିଗୁଣ ମେଖଳା ଉତ୍ତରୀ । ସୁନ୍ଦର ସ୍ରୁବ ସ୍ରୁଚ ଧରି ॥
ଯଜ୍ଞପୁରୁଷ ଦାମୋଦର । ସର୍ବଦେବତା କଳେବର ॥
ଅଶେଷ ଭୁବନ ଈଶ୍ୱର । ଅଜ୍ଞାନୀ ଜନେ ଅଗୋଚର ॥
ସେ ରୂପ ଦେଖି ବିପ୍ରଗଣେ । ନିଗମ ପଥ ଆଚରଣେ ॥
ଯଜ୍ଞେ ପୂଜିଲେ ଭଗବାନ । ଯେ ଯଜ୍ଞେ ବିଷ୍ଣୁ ଦରଶନ ॥୨୪,୨୫
ସେ ବିଷ୍ଣୁ ଯଜ୍ଞ ପୃଶ୍ନିଗର୍ଭେ । ଜୟନ୍ତ ପୁଣି ସର୍ବଦେବେ ॥
ଯେ ଉରୁକ୍ରମ ବୃଷାକପି । ଉରୁଗାୟ ଏ ନାମ ଜପି ॥୨୬
ଦ୍ୱାପର ଯୁଗେ ଭଗବାନ । ପୀତବସନ ଶ୍ୟାମବର୍ଣ୍ଣ ॥
ନିଜ ଆୟୁଧ ଧରି କରେ । ଶ୍ରୀବତ୍ସ କଉସ୍ତୁଭ ଉରେ ॥

ଏ ଆଦି ଲକ୍ଷଣେ ଲକ୍ଷିତ । ଅଶେଷ ଭୁବନେ ପୂଜିତ ॥
କାମକୁ ନିନ୍ଦେ କଳେବର । ସମ୍ପଦେ ରାଜରାଜେଶ୍ୱର ॥
ସେ ରୂପ ଦେଖି ମର୍ତ୍ତ୍ୟଜନେ । ପୂଜନ୍ତି ବେଦତନ୍ତ୍ର ଧ୍ୟାନେ ॥୨୭,୨୮
ସେ ସର୍ବଦେବମୟ ହରି । ଏମନ୍ତ ନାମେ ସ୍ତୁତି କରି ॥
ଶ୍ରୀବାସୁଦେବ ନମୋଽସ୍ତୁତେ । ସଙ୍କରଷଣ ବୋଲି ତୋତେ ॥
ପ୍ରଦ୍ୟୁମ୍ନ ଅନିରୁଦ୍ଧ ତୁହି । ଚତୁଃସ୍ୱରୂପେ ଏକଦେହୀ ॥
ନମସ୍ତେ ପ୍ରଭୁ ଜଗନ୍ନାଥ । ଯାର ଶରୀରୁ ଏ ଜଗତ ॥
ତୁ ନାରାୟଣ ଋଷିରୂପୀ । ମହାପୁରୁଷ ବିଶ୍ୱବ୍ୟାପୀ ॥
ଦ୍ୱାପର ଯୁଗେ ଏହି ମତେ । ବିଷ୍ଣୁଙ୍କୁ ପୂଜନ୍ତି ଜଗତେ ॥୨୯,୩୦
ଦ୍ୱାପରଯୁଗ ଶେଷ କାଳେ । କଳି ଆଗମ ଅନ୍ତରାଳେ ॥
ରୂପ ପ୍ରକାଶେ ଚକ୍ରପାଣି । ଯେସନ ଇନ୍ଦ୍ର ନୀଳମଣି ॥
କୃଷ୍ଣମୂରତି ଭଗବାନ । କେବଳ ନାମ ସଂକୀର୍ତ୍ତନ ॥
କୃଷ୍ଣର ରୂପ ଗୁଣ ଯେତେ । ଧ୍ୟାନେ ନିରୋପି ଶୁଦ୍ଧଚିତ୍ତେ ॥
ପ୍ରତିମା କରି ନାନାରୂପେ । ବିଷ୍ଣୁ ପୂଜନ୍ତି ଯଜ୍ଞକଳ୍ପେ ॥
ଅଙ୍ଗ ଉପାଙ୍ଗ ଅସ୍ତ୍ର ଯେତେ । ବିଷ୍ଣୁର ପାର୍ଷଦ ସହିତେ ॥
ସକଳ ପୂଜା ଅବସାନେ । ସ୍ତୁତି କରନ୍ତି ଏ ବଚନେ ॥୩୧,୩୨
ହେ ମହାପୁରୁଷ ମୁକୁନ୍ଦ । ବନ୍ଦୁଁ ତୋ ଚରଣାରବିନ୍ଦ ॥
ମୁନି କରନ୍ତି ଯାକୁ ଧ୍ୟାନ । ହରଇ ପରାଭବମାନ ॥
ଅଭୀଷ୍ଟଫଳ କାମଧେନୁ । ତୀର୍ଥନିବାସ ଯା ଚରଣୁ ॥
ଶିବ ବିରଞ୍ଚି ଯାକୁ ଚିତ୍ତେ । ସ୍ତୁତି କରନ୍ତି ଅବିରତେ ॥
ଶରଣଜନଙ୍କ ତାରଣ । ଭୃତ୍ୟ ଆରତ ନିବାରଣ ॥
ପ୍ରଣତଜନ ଯେ ପାଳଇ । ଏ ଭବଜଳେ ନାବ ହୋଇ ॥୩୩
ଯେ ରାଜଲକ୍ଷ୍ମୀ ଦେବଗଣ । ଧ୍ୟାନେ ଚିନ୍ତନ୍ତି ଅନୁକ୍ଷଣ ॥
ମର୍ତ୍ତ୍ୟେ ମନୁଷ୍ୟ ଦେହ ଧରି । କେ ତାହା ପାରେ ଦୂର କରି ॥
ପିତୃବଚନ ଶିରେ ଧରି । ସ୍ୱରାଜ୍ୟ ଦୂରେ ପରିହରି ॥

ଧର୍ମିଷ୍ଠ ପଣେ ପଶି ବନେ । ଯନ୍ତ୍ରିତ ପ୍ରିୟାର ବଚନେ ॥
ଧାଇଁଲେ ମାୟାମୃଗ ଅର୍ଥେ । ବନଗହନ ଘୋରପଥେ ॥
ସେ ପାଦେ ମୋର ନମସ୍କାର । ଧ୍ୟାନେ ଖଣ୍ଡଇ ତମ ଘୋର ॥୩୪
ଯୁଗକୁ ଯୁଗ ଏହିମତେ । ପରମାନନ୍ଦ ଏ ଜଗତେ ॥
ଧରଣୀ ମଧ୍ୟେ ଅବତରି । ଭ୍ରମଇ ନାନାରୂପ ଧରି ॥
ସେ ରୂପ ପୂଜି ନରନାରୀ । ମାୟାସଂସାରୁ ଯାନ୍ତି ତରି ॥୩୫
ସେ ପୁଣି ପଣ୍ଡିତ ବୋଲାଇ । ଗୁଣଙ୍କ ସର୍ବ ସାରଗ୍ରାହୀ ॥
ସକଳ ଶାସ୍ତ୍ର ଅନୁମାନେ । ନିର୍ମଳ ଚିତ୍ତେ ମହାଜନେ ॥
ବେଦ ବିଗ୍ରହି ବହୁଭାଗ । ବୋଲନ୍ତି ଧନ୍ୟ କଳିଯୁଗ ॥
ବ୍ରାହ୍ମଣ ଆଦି ତ୍ରିବର୍ଣ୍ଣେ । କରିବେ ନାମ ସଂକୀର୍ତ୍ତନ ॥
କଳି କଳୁଷ ଦୁଷ୍ଟଚିତ୍ତେ । ଗୃହ କଷଣ ଅବିରତେ ॥
ନାନା ସଙ୍କଟେ ଯେବେ ଥିବେ । ସଂସାରେ ଭ୍ରମ ନ କରିବେ ॥
ପରମ ଲାଭ ଏଥୁ ନାହିଁ । କୃଷ୍ଣ ଭକତି ହୃଦେ ଲଇଁ ॥୩୬,୩୭
ପ୍ରଜାଏ ସତ୍ୟଯୁଗ ଆଦି । ଭବିଷ୍ୟ କଥାକୁ ସମ୍ବୋଧି ॥
ଚିତ୍ତେ କଳ୍ପନ୍ତି ଅନୁରାଗେ । ଆମ୍ଭେ ଜନ୍ମିବୁ କଳିଯୁଗେ ॥
ଯେ ଯୁଗେ ନାମ ସଂକୀର୍ତ୍ତନ । କରି ତରିବେ ସର୍ବଜନ ॥
ତାହାଙ୍କ ମଧ୍ୟେ ଆମ୍ଭେ ଥାଇ । ତୁଣ୍ଡେ ଗୋବିନ୍ଦ ନାମ ଗାଇ ॥
ଗୋବିନ୍ଦ ଚରଣାରବିନ୍ଦ । ସ୍ୱାଦୁ ସୁଗନ୍ଧ ମକରନ୍ଦ ॥
ମନଭ୍ରମରେ କରି ପାନ । ଯେ ଅବା ଥିବେ ସାଧୁଜନ ॥
ତାହାଙ୍କ ସଙ୍ଗେ ମିତ୍ରପଣେ । ସେବିବୁଁ କୃଷ୍ଣର ଚରଣେ ॥
ଏମନ୍ତେ ଚିତ୍ତେ କରି ଆଶା । କଳିକି କରନ୍ତି ପ୍ରଶଂସା ॥
କଳିରେ ବିଷ୍ଣୁପରାୟଣ । ହୋଇ କରିବେ ନାମ ଗାନ ॥
ଦ୍ରାବିଡ଼ ଦେଶରେ ଅନେକ । ଜନ୍ମିବେ ହରିଭକ୍ତ ଲୋକ ॥
ଯେ ଦେଶେ ନଦୀ ତାମ୍ରପର୍ଣ୍ଣୀ । ଯେ କୃତମାଳା ପୟସ୍ୱିନୀ ॥
କାବେରୀ ପୁଣ୍ୟ ମହାନଦୀ । ପ୍ରତୀଚୀ ଆଦି ଛନ୍ତି ଭେଦି ॥

ତାହାଙ୍କ ଜଳ କରି ପାନ । ନିର୍ମଳ ହେବ ତାଙ୍କ ମନ ॥
ଲବେ ନିମିଷେ କ୍ଷଣେ ଲେଶେ । ଯେ ଅବା ଥିବେ ଯେଉଁ ଦେଶେ ॥
କୃଷ୍ଣର ନାମ ଉଚ୍ଚେ ଗାଇ । ରୋମ-ପୁଲକ ତନୁ ବହି ॥
ନୟନୁ ଢାଳି ଅଶ୍ରୁଜଳ । ଲଭିବେ କୋଟିତୀର୍ଥଫଳ ॥
ଏ ବଡ଼ ଲାଭ ଏ ଜଗତେ । ବିଷ୍ଣୁ ଭଜନ ଏହିମତେ ॥
ନିରତେ ସୁଖେ ଉଚ୍ଚାରିବେ । ଅଶେଷ ପାପୁଁ ନିସ୍ତରିବେ ॥
ମୁଖେ ଗୁଣିବେ କୃଷ୍ଣନାମ । ଶ୍ରବଣ ମାତ୍ରେ ଅଭିରାମ ॥
ସ୍ମରଣ କରି ହୃଦମଧ୍ୟେ । ଜନ୍ମ ମରଣ ପଥ ଛେଦେ ॥୩୮-୪୦
ଦେବତା ଋଷି ପିତୃ ଭୂତ । ଯେ ଅବା ଅଛନ୍ତି ଆଗତ ॥
ସେମାନଙ୍କର କର୍ମମାନ । ନ କଲେ ଋଣୀ ହୋନ୍ତି ଜନ ॥
ଯେ ସର୍ବଭାବେ କୃଷ୍ଣପାଦେ । ଶରଣ ଗଲା ଅପ୍ରମାଦେ ॥
ସେ ଋଣୀ ନୋହେ ଏହାଙ୍କର । ଆବର ନୁହଇ କିଙ୍କର ॥୪୧
ଯେ ଅନ୍ୟଭାବ ପରିହରି । କୃଷ୍ଣଚରଣେ ଆଶ୍ରେ କରି ॥
ହରି ତା ହୃଦୟକମଳେ । ପ୍ରକାଶ ହୋନ୍ତି ସର୍ବକାଳେ ॥
ତାର ବିକର୍ମ ଯେତେ ଥାନ୍ତି । ହେଲେ ସମସ୍ତ ବିନାଶନ୍ତି ॥
ଏ ଭାବେ କୃଷ୍ଣଭକ୍ତଜନ । ଶୁଣ ହେ ବିଦେହରାଜନ ॥୪୨

*ନାରଦ ଉବାଚ*

ଏମନ୍ତେ ନବ ମୁନିଗଣେ । ରାଜା ସମୀପେ ଜଣେ ଜଣେ ॥
କହିଲେ ଭାଗବତଧର୍ମ । ଯେରୂପେ ବିଷ୍ଣୁ ସେବା କର୍ମ ॥
ଶୁଣି ସାନନ୍ଦ ଦଣ୍ଡଧାରୀ । ରୋମ ପୁଲକେ ତନୁ ପୂରି ॥
ନୟନୁଁ ଅଶ୍ରୁଜଳ ଝରେ । ନିର୍ମଳ ବାହ୍ୟ ଅଭ୍ୟନ୍ତରେ ॥
ମୁନିଙ୍କ ଚରଣେ ପୂଜିଲା । ଆନନ୍ଦେ ନୟନ ବୁଜିଲା ॥୪୩
ତକ୍ଷଣେ ସଭା ବିଦ୍ୟମାନେ । ମୁନି ଚଳିଲେ ଅନ୍ତର୍ଦ୍ଧାନେ ॥
ଯେ ଧର୍ମ କହିଗଲେ ମୁନି । ନିମି ହୃଦୟେ ତାହା ଘେନି ॥
ଭାବି ହୋଇଲେ ଭବୁଁପାର । ଏବେ ହୋ ଶୁଣ ଯଦୁବୀର ॥
ତୁ ଏବେ ଏହି ଧର୍ମ କରି । ଅନ୍ତେ ଲଭିବୁ ନରହରି ॥୪୪,୪୫

ତୁ ଧନ୍ୟ ଧନ୍ୟ ତୋ ଜୀବନ । ଯାହାର ପୁତ୍ର ଭଗବାନ ॥
ଲଭିଲୁ ପୂର୍ବ ତପଫଳେ । ଏଣୁ ତୋ ଯଶ ମହୀତଳେ ॥
ବିଖ୍ୟାତ ତିନି ଭୁବନରେ । ଯେ ଯଶ ଗାଇ ପ୍ରାଣୀ ତରେ ॥୪୬
ଆସନ ଭୋଜନ ଶୟନେ । ନିରତେ ଦେଖୁ ତୁ ନୟନେ ॥
ଏ ମୋର ପୁତ୍ର ବୋଲି ଭୋଳେ । ଚୁମ୍ବନ ଦେଇ ଧରୁ କୋଳେ ॥
ବ୍ରହ୍ମଙ୍କୁ କରୁ ଆଲିଙ୍ଗନ । ଏଣୁ ତୁ ତ୍ରିଭୁବନେ ଧନ୍ୟ ॥୪୭
ଦନ୍ତବିକଟ ବିଦୂରଥ । ଶାଲ୍ୱ ପୌଣ୍ଡ୍ରକ ଚେଦିନାଥ ॥
କଂସ ମାଗଧ ଆଦି ଯେତେ । ଦୁଷ୍ଟେ ଯେ ଥିଲେ ଭୂମିଗତେ ॥
କୃଷ୍ଣେ ବଇରୀଭାବ ବହି । ପଶିଲେ କୃଷ୍ଣ ଦେହେ ଯାଇ ॥
ସେ ହରି ଚରଣ କମଳେ । ଯେ ଭଜେ ପ୍ରେମଭାବ ଭୋଳେ ॥
ତାହାର ଗତି କେବା ଜାଣି । ବ୍ରହ୍ମା ଶଙ୍କର ନ ପ୍ରମାଣି ॥୪୮
କୃଷ୍ଣଙ୍କୁ ପୁତ୍ର ତୁ ନ ମଣ । ସେଟି ଅନାଦି ନାରାୟଣ ॥
ଆଦିପୁରୁଷ ତୋର ଘରେ । ମାୟା ମନୁଷ୍ୟ ରୂପ ଧରେ ॥୪୯
ସ୍ୱଭାବେ ଯାର ଜନ୍ମ ନାହିଁ । ବୋଲୁ ବା ସେ କିମ୍ପା ଜନ୍ମଇ ॥
ଭୂଭାର ଅସୁର ସଂହାରେ । ଆପଦୁଁ ସାଧୁଙ୍କୁ ଉଦ୍ଧରେ ॥
ସେ ହରି ଦେବକୀ ଉଦରେ । ଜନ୍ମ ଲଭିଲେ ତୋର ପୁରେ ॥
ତୋ ଯଶ ଜଗତେ ବିସ୍ତାରି । ପୁଣି ସେ ଯିବେ ନିଜପୁରୀ ॥୫୦

*ଶ୍ରୀ ଶୁକ ଉବାଚ*

ଏମନ୍ତ ନାରଦର ବାଣୀ । ଦେବକୀ ବସୁଦେବ ଶୁଣି ॥
ତନୁ ପୁଲକ ରୋମରାଜି । ଅତି ବିସ୍ମୟେ ଚକ୍ଷୁ ବୁଜି ॥
କୃଷ୍ଣଙ୍କୁ ପୁତ୍ରଭାବେ ମାନି । କିଛି ନ ବୋଲି ହେଲେ ତୁନି ॥୫୧
ବୋଲନ୍ତି ଶୁକ ମୁନିବର । ଯେ ନବ ଋଷଭକୁମର ॥
ନିମିର ଯଜ୍ଞଶାଳେ ଥାଇ । ଯେ ଇତିହାସ ଗଲେ କହି ॥
ସେ ଧ୍ୟାନଯୋଗ ପୁରାତନ । ବିଶେଷେ ନାରଦ ବଚନ ॥
ଯେ ଏହା ଶ୍ରବଣେ ଶୁଣନ୍ତି । କି ଅବା ବଦନେ ଗୁଣନ୍ତି ॥
ଅଶେଷ ପାପୁଁ ସେହୁ ତରି । ଅନ୍ତେ ଲଭନ୍ତି ନରହରି ॥୫୨

ଶ୍ରୀଏକାଦଶେ ଭାଗବତ । କହିଲା ବିପ୍ର ଜଗନ୍ନାଥ ॥
ହରିଚରିତ ଗୀତବନ୍ଧେ । ସଂକ୍ଷେପେ ଏକାଦଶ ସ୍କନ୍ଧେ ॥
ଅମୃତ ରସମୟ ଗୀତ । ଶୁଣନ୍ତେ ଜଗତ ପବିତ୍ର ॥

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଏକାଦଶସ୍କନ୍ଧେ ଜାୟନ୍ତେୟୋପାଖ୍ୟାନେ ପୂଜାବିଧିର୍ବର୍ଣ୍ଣନଂ ନାମ ଷଷ୍ଠୋଽଧ୍ୟାୟଃ ।

❐❐❐

# ସପ୍ତମ ଅଧ୍ୟାୟ*

ସପ୍ତମେ କୃଷ୍ଣ ନିଜଧାମେ । ଗମନ ଅର୍ଥେ ଦେବଗଣେ ॥
ଜଣାନ୍ତେ ଉଦ୍ଧବ ଗୁହାରି । ମୋତେ ସଙ୍ଗତେ ନିଅ ହରି ॥

ଆନନ୍ଦେ ପରୀକ୍ଷିତ ଆଗେ । ଶୁକ କହନ୍ତି ଅନୁରାଗେ ॥(ଜ.)

*ଶ୍ରୀ ଶୁକ ଉବାଚ*

ବ୍ରହ୍ମା ଶଙ୍କର ପୁରନ୍ଦର । ସଙ୍ଗତେ ଚନ୍ଦ୍ର ଦିବାକର ॥
ଗନ୍ଧର୍ବ କିନ୍ନର ଚାରଣ । ସାଧ୍ୟ ଯେ ସିଦ୍ଧ ଦେବଗଣ ॥
କୁବେର ସମୀର ବରୁଣ । ଯେ ଦଶ ବିଶ୍ୱେଦେବା☫ ଗଣ ॥
ପିତୃ ଗୁହ୍ୟକ ଋଷି ଆଦି । ଯକ୍ଷ ଅପ୍ସରା ଯେ ପ୍ରସିଦ୍ଧି ॥
ନାଗଙ୍କ ତୁଲେ ବିଦ୍ୟାଧର । ଏ ଆଦି ଯେତେ ଅନୁଚର ॥
ମିଳିଲେ ଚଢ଼ି ନିଜାସନେ । ଦ୍ୱାରକା କୃଷ୍ଣ ଦରଶନେ ॥
ମନୁଷ୍ୟ ରୂପେ ନରହରି । ଦେବକୀ ଗର୍ଭେ ଅବତରି ॥
ନିର୍ଗୁଣ ବ୍ରହ୍ମ ଜନହିତେ । ଯଶ ବିସ୍ତାରି ଏ ଜଗତେ ॥

---

* ମୂଳ ସଂସ୍କୃତ ଅନୁସାରେ ଷଷ୍ଠ ଅଧ୍ୟାୟ ।

☫ ଦଶ ବିଶ୍ୱେଦେବାଙ୍କ ନାମ—ବସୁ, ସତ୍ୟ, କ୍ରତୁ, ଦକ୍ଷ, କାମ, କାଳ, ଧୃତି, କୁରୁ, ପୁରୁରବା ଓ ମାଦ୍ରବ ।

ଯା ଯଶ କଳମଷ ହରେ । ଯାର ଶ୍ରବଣେ ପ୍ରାଣୀ ତରେ ॥
ସେ ରୂପ ଦରଶନ ଅର୍ଥେ । ରାତ୍ରେ ମିଳିଲେ ଶୂନ୍ୟପଥେ ॥୧-୪
ଦେଖିଲେ ଦ୍ୱାରକା ମଣ୍ଡଳ । ଯହିଁ ବିଜୟେ ଆଦିମୂଳ ॥
ଭୁବନମଙ୍ଗଳ ଶ୍ରୀମୁଖ । ଦେଖିଲେ ଖଣ୍ଡେ ଭବଦୁଃଖ ॥
ଦ୍ୱାରକାପୁରେ ସର୍ବ ସିଦ୍ଧି । ଯହିଁ ସେବନ୍ତି ଅଷ୍ଟନିଧି ॥
ସର୍ବ ସମ୍ପଦ ମୂଳ ସ୍ଥାନ । ଦେଖିଲେ ହରେ ପ୍ରାଣୀ ମନ ॥
ଭୁବନମାନଙ୍କ ଉପମା । କେ ମୁଖେ କହୁ ଗୁଣ ସୀମା ॥ ୫
ଆକାଶ ମାର୍ଗେ ଦେବେ ଥାଇ । ଜୟ ଶବଦ ତୁଣ୍ଡେ ଗାଇ ॥
ନନ୍ଦନବନୁ ପୁଷ୍ପ ଆଣି । ପ୍ରୋକ୍ଷଣ କରି ଗଙ୍ଗାପାଣି ॥
ମଲ୍ଲିକା ଜାତି ପାରିଜାତ । ବିଚିତ୍ରମାଳା ଅପ୍ରମିତ ॥
ବୃଷ୍ଟି କରନ୍ତି କୃଷ୍ଣଦେହେ । ସୁଗନ୍ଧ ଜଳଧାରା ପ୍ରାୟେ ॥
ପୁଷ୍ପେ ଆଚ୍ଛାଦି ଯଦୁବୀର । ସ୍ତୁତି କରନ୍ତି ମନୋହର ॥
ସମସ୍ତ ଦେବେ ଏକମେଳେ । ଜୟ ଶବଦ ମୁଖଗୋଳେ ॥
କପାଳେ ବେନି କର ଦେଇ । ବୋଲନ୍ତି କୃଷ୍ଣମୁଖ ଚାହିଁ ॥ ୬

*ଦେବା ଊଚୁଃ*

ନମୋ ଗୋବିନ୍ଦ ହେ ଅଚ୍ୟୁତ । ତୁ ନାଥ ପ୍ରାଣ ପଞ୍ଚଭୂତ ॥
ତୋହର ଅଭୟ ଚରଣ । ଅଶେଷ ଜନ୍ତୁଙ୍କ ଶରଣ ॥
ସର୍ବ ଇନ୍ଦ୍ରିୟ ବୁଦ୍ଧି ମନ । ପ୍ରାଣାଦି ଏ ଦଶ ପବନ ॥
ଏ ଆଦି ବିଷୟ ସକଳେ । ଶରଣ ତୋ ପାଦକମଳେ ॥
ସେ ପାଦପଦ୍ମ ସୁଖେ ହେଜି । ମୁନିଏ ଭକ୍ତିଭାବେ ଭଜି ॥
ଆରୂଢ଼ ଯୋଗୀ[୧] ଯୋଗବଳେ । ନିଶ୍ଚଳ ହୃଦୟ କମଳେ ॥
ଆରୋପି ଅଭୟ ଚରଣ । ନିଶ୍ଚିନ୍ତେ ପଶନ୍ତି ଶରଣ ॥
ଅଶେଷ ଜନ୍ତୁଁ ହୃଦଗତେ । କର୍ମ ବାସନା ରଜ୍ଜୁ ଯେତେ ॥
ନିମିଷେ ଧ୍ୟାନେ ଯେ ସଂହାରେ । ରବି ଯେସନେ ଅନ୍ଧକାରେ ॥

---

୧. ଆରୂଢ଼ ଯୋଗୀ—ଯୋଗସାଧକ ।

ଭବ ଜଳଧି ସୁଖେ ନାବ । ତୋର ଚରଣ ପଦ୍ମନାଭ ॥
ଆମ୍ଭେ ସକଳ ଦେବଗଣ । ସେ ପାଦେ ପଶିଲୁଁ ଶରଣ ॥ ୭
ତୁ ନାଥ ଜଗତ ଜୀବନ । ଅଶେଷ ଭୁବନ ପାବନ ॥
ତୁ ନାଥ ରଜୋଗୁଣ ଧରି । ବିଧାତା ରୂପେ ସୃଷ୍ଟି କରି ॥
ସାତ୍ତ୍ୱିକେ ବିଷ୍ଣୁରୂପ ହୋଇ । ପାଳନ କରୁ ନାଥ ତୁହି ॥
ତମେ ସଂହାରୁ ଅନ୍ତକାଳେ । ତୋ ମାୟା ଲୀଳା ଯୋଗବଳେ ॥
ସୃଷ୍ଟି ପାଳନ ସଂହାରଣ । କ୍ରମରେ ସଂସାର କାରଣ ॥
ସ୍ୱଭାବେ ତୁ ଯେ ସର୍ବଦେହୀ । ତୁ ଭୁଞ୍ଜୁ ପ୍ରାଣୀଙ୍କି ଭୁଞ୍ଜାଇ ॥
ସେ ଦୋଷ ନ ଲାଗଇ ତୋରେ । ନଳିନୀଦଳ ଯେହ୍ନେ ନୀରେ ॥
ତୁ ପୂର୍ଣ୍ଣ ସମସ୍ତ ଠାବରେ । ଶରଣ ଗଲୁଁ ତୋ ପୟରେ ॥
ତୁ ନାଥ ସର୍ବତ୍ର ସମାନ । ନିଶ୍ଚିନ୍ତ ସୁଖ ତୋର ସ୍ଥାନ ॥
ଯେଣୁ ନ ଲାଗେ ଶୁଭାଶୁଭ । ତେଣୁ ତୁ ସଂସାରେ ଦୁର୍ଲଭ ॥ ୮
ବିବିଧ ତପ ବ୍ରତ ଦାନ । ଯୋଗ ସମାଧି ଆତ୍ମଜ୍ଞାନ ॥
ଏ ଆଦି ସକଳ ସାଧନ । ସାଧି ପବିତ୍ର ନୋହେ ଜନ ॥
ତୋହର ନାମ ଯଶ ଗୁଣ । ଯେ କରେ ଶ୍ରବଣ କୀର୍ତ୍ତନ ॥
ଶ୍ରଦ୍ଧା ଭକତି ଶୁଦ୍ଧଚିତ୍ତେ । ତୋ ରୂପ ଦେଖେ ହୃଦଗତେ ॥ ୯
ତୋର ଚରଣ ଭଗବାନ । ଆମ୍ଭର ଅଶୁଭ ନାଶନ ॥
ସର୍ବ ମୁନିଙ୍କ ମୋକ୍ଷଧ୍ୟାନ । କରେ ସମାନଭୂତି[1] ଦାନ ॥
ତୋର ଚରଣ ସୁଧା ପାନ । ନିରତେ କରେ ଯାର ମନ ॥
ବେଗେ ସେ ଭବୁ ଯାନ୍ତି ତରି । ବିପ୍ର ନ ତରେ କର୍ମ କରି ॥
ଭକ୍ତିରେ ପ୍ରୀତି ନାହିଁ ଯାର । ସେ କାହିଁ ଜାଣେ ତୋ ପୟର ॥୧୦
ବେଦ ଭକତେ କର୍ମ କରେ । ଇନ୍ଦ୍ରାଦି ଦେବରୂପେ ତୋରେ ॥
ଭଜନ୍ତି ବିପ୍ରେ ଯେ ପୟର । ଯଜ୍ଞରେ ଦେଇ ଘୃତଧାର ॥
ତୋ ମାୟା ଜାଣି ଆତ୍ମଯୋଗୀ । ଯେ ପାଦେ ସେବେ ସର୍ବ ତ୍ୟାଗି ॥
ସେ ପାଦେ ପଶିଲୁଁ ଶରଣ । ଆମ୍ଭ ଅଶୁଭ ପରିତ୍ରାଣ ॥୧୧

୧. ସମାନଭୂତି—ସାର୍ଷ୍ଟିମୁକ୍ତି (ବିଷ୍ଣୁଙ୍କ ସମ ଐଶ୍ୱର୍ଯ୍ୟ ଲାଭ) ।

ତୋ ହୃଦେ ଦେବକୀର ବଳା । ଭକ୍ତେ ଦିଅନ୍ତି ବନମାଳା ॥
ଲମ୍ବଇ ପର୍ଯ୍ୟୁଷିତ[୧] ହୋଇ । ଦେଖି କମଳା ନ ସହଇ ॥
ମଣଇ ସପତଣୀ ପ୍ରାୟେ । ଯେଣୁ ଶୋଭଇ ତୋର ଦେହେ ॥
ତଥାପି ଦେଖି ତୋ ବଦନ । ସପତ୍ନୀଭାବ ଛାଡ଼ି ମନ ॥
ନିବେଶି ତୋହର ପାଦରେ । କମଳମାଳେ ପୂଜା କରେ ॥
ତୋର ଅଭୟ ପଦ୍ମପାଦ । ହରଇ ବିଷୟ ବିଷାଦ ॥୧୨
ତୋହର ତ୍ରିବିକ୍ରମ ରୂପ । ଆମ୍ଭେ ଯେ ଦେଖିଲୁଁ ସ୍ୱରୂପ ॥
ତୋ ନାଭିକମଳୁଁ ପ୍ରତ୍ୟକ୍ଷେ । ଚରଣ ଗଲା ଅନ୍ତରୀକ୍ଷେ ॥
କେ କରିପାରେ ତାହା ହେତୁ । ଅଦ୍ଭୁତ ଯେହ୍ନେ ଧୂମକେତୁ ॥
ବ୍ରହ୍ମାଣ୍ଡେ ଚରଣ ବାଜିଲା । ଶବଦେ ପୃଥିବୀ କମ୍ପିଲା ॥
ବ୍ରହ୍ମାଣ୍ଡ ଫୁଟି ପାଦବଳେ । ଗଙ୍ଗା ପଡ଼ିଲା ଅନ୍ତରାଳେ ॥
ତିନି ଭୁବନେ ତେଜରାଶି । ଧ୍ୱଜ ପତାକା ପ୍ରାୟ ଦିଶି ॥
ଅସୁରକୁଳ ଭୟଙ୍କର । ଆମ୍ଭର ଦୁଃଖ-ଭୟହର ॥
ସୁଜନ ସୁଖ ଭୋଗ ଅର୍ଥି । ଖଳକୁ ବୃଜିନ[୨] ପ୍ରାପତ ॥
ସେ ପାଦପଦ୍ମେ ଭଗବାନ । ପବିତ୍ର କର ଆମ୍ଭ ମନ ॥
ଯେ ପାଦ ଭବସିନ୍ଧୁ ସେତୁ । ଅଶୁଭାଶୟ ଧୂମକେତୁ ॥
ଅଶେଷ ଲୋକ ଜ୍ଞାନଗୁରୁ । ଆମ୍ଭର ମଙ୍ଗଳ ବିସ୍ତାରୁ ॥୧୩
ଭୋ ନାଥ ତୋହର ମହିମା । କେ କହିପାରେ ଗୁଣସୀମା ॥
ନାସିକା ରନ୍ଧ୍ରେ ରଜ୍ଜୁ ଭେଦି । ଦୃଢ଼େ ବୃଷଭ ଯେହ୍ନେ ବାନ୍ଧି ॥
ସେ ପୁଣି ବନ୍ଦୀଶାଳେ ଥାନ୍ତି । ଅନ୍ୟୋନ୍ୟେ ହିଂସା ଆଚରନ୍ତି ॥
ବ୍ରହ୍ମାଦି ଦେବେ ସେହିମତେ । ଯନ୍ତ୍ରିତ ତୋହର ଆୟତ୍ତେ ॥
ତୁ କାଳରୂପୀ ଦାମୋଦର । ପ୍ରକୃତି ପୁରୁଷରୁ ପର ॥
ତେଣୁ ତୁ ପୁରୁଷ ପୁରାଣ । ତୋହର ଅଭୟ ଚରଣ ॥
ଅଭୟବର ଦୀକ୍ଷାଗୁରୁ । ଆମ୍ଭର ମଙ୍ଗଳ ବିସ୍ତାରୁ ॥୧୪

୧. ପର୍ଯ୍ୟୁଷିତ—ବାସି । ୨. ବୃଜିନ—କ୍ଳେଶ, ଦୁଃଖ ।

ସୃଷ୍ଟି ପାଳନ ସଂହାରଣ । ତୁ ନାଥ ଜଗତକାରଣ ॥
ପ୍ରଳୟେ କାଳରୂପ ଧରୁ । ପ୍ରକୃତି ପୁରୁଷ ସଂହାରୁ ॥
ସେ ବେନି ତୋର ତହୁଁ ଜାତ । ପ୍ରଥମେ କରନ୍ତି ଜଗତ ॥୧୫
ପ୍ରକୃତି ପୁରୁଷ ବିକାରେ । ବିଶ୍ୱ ଅଙ୍କୁର ଗର୍ଭେ ଧରେ ॥
ତହୁଁ ମହତ ହେମମୟ । ବ୍ରହ୍ମାଣ୍ଡ କରୁ ତୁ ଉଦୟ ॥
ପୃଥିବୀ ଆଦି ପଞ୍ଚଭୂତ । ମନ ଅହଙ୍କାର ଏ ସାତ ॥
ଏ ରୂପେ ସପ୍ତଆବରଣ । ବ୍ରହ୍ମାଣ୍ଡ କରୁ ତୁ ଭିଆଣ ॥୧୬
ତାର ଭିତରେ ଏ ସଂସାର । ରଚନା ଚତୁର୍ଦ୍ଦଶପୁର ॥
ସ୍ଥାବର ଜଙ୍ଗମାଦି ବର୍ଣ୍ଣ । ମଧ୍ୟେ ବିରାଜେ ତ୍ରିଭୁବନ ॥
ଭୋ ନାଥ ତୋର ମାୟାବଳେ । ତ୍ରିଗୁଣ ଘଟଣ ଶୟଳେ ॥
ଜୀବନ ରୂପ ତୁହି ଧରି । ସର୍ବ ବିଷୟ ଭୋଗ କରି ॥
ହେ ହୃଷୀକେଶ ତୋର ଦେହୀ । ବିଷୟ ବାଧା ନ ଲାଗଇ ॥୧୭
ଷୋଳସହସ୍ର ତୋ ରମଣୀ । ତୋ ମନ ନ ପାରିଲେ ଜିଣି ॥
ବିବିଧ କ୍ରୀଡ଼ା କାମଶରେ । କଟାକ୍ଷ ଭ୍ରୂଭଙ୍ଗୀ ବିକାରେ ॥
ଏଣୁ ଅଚ୍ୟୁତ ତୋର ନାମ । ନିର୍ଲେପ ନିତ୍ୟ ସୁଖଧାମ ॥୧୮
ତୋର ଅମୃତ କଥାମୟେ । ସଂସାରେ ନଦୀରୂପେ ବହେ ॥
ତୋ ପାଦନୀର ସୁରନଦୀ । ବହେ ବ୍ରହ୍ମାଣ୍ଡ ମଧ୍ୟେ ଭେଦି ॥
ବଳେ ତ୍ରିଲୋକ ପାପ ହରେ । ଯେ ମୁଖେ ଗଙ୍ଗା ନାମ ଧରେ ॥
ଏ ବେନି ନଦୀ* ମଧ୍ୟେ ସ୍ନାନ । ଯେ କରେ ଧନ୍ୟ ତା ଜୀବନ ॥
ନିଜ ଭୁବନେ ଥାଇ ପ୍ରାଣୀ । ଯେ ନିତ୍ୟେ ତୁମ୍ଭ କଥା ଶୁଣି ॥
ନିର୍ମଳ କରି ବୁଦ୍ଧି ମନ । ଯେ କରେ କଥାମୃତେ ସ୍ନାନ ॥
ଯେ ଅବା ପଶି ଗଙ୍ଗାଜଳେ । ସ୍ନାନ କରନ୍ତି ସୁଖଭୋଳେ ॥
ତୋଷେ କରନ୍ତି ଜଳ ପାନ । ତୁଣ୍ଡେ ଉଚ୍ଚାରି ତୋର ନାମ ॥
ଏମନ୍ତେ ବେନି ନଦୀ ମଧ୍ୟେ । ଯେ ସ୍ନାନ କରନ୍ତି ଆନନ୍ଦେ ॥
ଧରନ୍ତି ଦୁଃଖସୁଖେ ଦେହୀ । ତୋ ମାୟା ତାଙ୍କୁ ନ ଲାଗଇ ॥୧୯

* 'ବେନି ନଦୀ'—ଅର୍ଥାତ୍ କୃଷ୍ଣକଥାରୂପୀ ନଦୀ ଓ ଗଙ୍ଗାନଦୀ ।

ଏମନ୍ତେ ନାନାସ୍ତୁତି ଭଣି । ଦେବେ ନମିଲେ ଚକ୍ରପାଣି ॥
ଗଗନ ମଣ୍ଡଳରେ ଥାଇ । କପାଳେ ବେନି କର ଦେଇ ॥
ଭବ ସହିତେ ପ୍ରଜାପତି । ବୋଲନ୍ତି ଶୁଣ ଦାଶରଥି ॥୨୦

*ବ୍ରହ୍ମା ଉବାଚ*

ପୂର୍ବେ ମୋ ଆଦି ଦିଗପାଳେ । କହିଲୁଁ ପୃଥ୍ୱୀଭାରା ହରେ ॥
ଆମ୍ଭର ବୋଲ ତୁମ୍ଭେ ଧରି । ଦେବକୀ ଗର୍ଭେ ଅବତରି ॥
ବିନାଶି ଅନେକ ଅସୁର । ହରିଲ ଅବନୀର ଭାର ॥
ଦୁଷ୍ଟ ସଂହାରି ସାଧୁକୁଳେ । ଧର୍ମକୁ ସ୍ଥାପିଲ ନିଶ୍ଚଳେ ॥
ଧରଣୀ ସଙ୍କଟୁ ଉଦ୍ଧରି । ତୋ ଯଶ ସର୍ବଦିଗେ ପୂରି ॥୨୧,୨୨
ଯାଦବ ବଂଶେ ଦେହ ଧରି । ମର୍ତ୍ତ୍ୟେ ଅଦ୍ଭୁତ କର୍ମ କରି ॥
ସମ୍ଭବି ଭୁବନମଣ୍ଡଳେ । ଯେ ଅବା କଲ କ୍ଷିତି ତଳେ ॥
ସେ କଳିକଳୁଷ ନାଶନ । ଯେ ମୁଖେ କରିବ କୀର୍ତ୍ତନ ॥
ସେ ଜନମଧ୍ୟେ ପୁଣ୍ୟଦେହା । ତାକୁ ନ ଲାଗେ ବିଷ୍ଣୁମାୟା ॥୨୩,୨୪
ତୁ ଦେବ ବସୁଦେବ ଘରେ । ଜନ୍ମିଲୁ ଦେବକୀ ଉଦରେ ॥
ଶତୁଁ ଅଧିକ ପଞ୍ଚବିଂଶ । ତୁମ୍ଭର ପୂରିଲା ବୟସ ॥
ମନୁଷ୍ୟଭୋଗ ପୂର୍ଣ୍ଣ ହୋଇ । ଆଉ ତ ପ୍ରୟୋଜନ ନାହିଁ ॥
ଦେବଙ୍କ କାର୍ଯ୍ୟ ଶେଷ ହୋଇ । ନିଜ ଭୁବନେ ଚଳ ତୁହି ॥
ଯାଦବବଂଶ ମହୀତଳେ । ମରିବେ ବିପ୍ରଶାପ ବଳେ ॥
ହେ ଦେବଦେବ ଜଗନ୍ନାଥ । ହେ ହୃଷୀକେଶ ପରମାର୍ଥ ॥
ଗୋବିନ୍ଦ କୃଷ୍ଣ ଦାମୋଦର । ଖଣ୍ଡିଲ ଅବନୀର ଭାର ॥
ଦେବଙ୍କ ବାକ୍ୟ ଉପଦେଶେ । ଆଉ ତ ଭାରା ନାହିଁ ଶେଷେ ॥
ତୁ ନାଥ ଜ୍ଞାନ ଧ୍ୟାନ ଦୀକ୍ଷା । ଯେବେ ତୁମ୍ଭର ହେବ ଇଚ୍ଛା ॥
ଆମ୍ଭର ବାକ୍ୟ ଅନୁସରି । ଭୋ ନାଥ ଚଳ ନିଜ ପୁରୀ ॥
ତୁ ନାଥ ଜୀବନ ଆମ୍ଭର । ଆମ୍ଭେ ଯେ ତୋହର କିଙ୍କର ॥
ତୁମ୍ଭ ଗୋଚରେ ଧ୍ୟାନଦୀକ୍ଷା । ଶରଣ ଗଲୁଁ କର ରକ୍ଷା ॥୨୫-୨୭

ବ୍ରହ୍ମା ବଚନେ ଅବଧାନ । କହନ୍ତି ଦେବକୀନନ୍ଦନ ॥
ଗଭୀର ନାଦେ ଦାମୋଦର । ବୋଇଲେ ଶୁଣ ବେଦବର ॥(ଜ.)

*ଶ୍ରୀ ଭଗବାନୁବାଚ*

ତୁମ୍ଭ ବଚନେ ଅବତରି । ମଞ୍ଚେ ମନୁଷ୍ୟ ଦେହ ଧରି ॥
ଅବନୀଭାରା କଲି ନାଶ । କେବଳ ନୋହିଲା ଉଶ୍ୱାସ ॥
ଏ ଯଦୁକୁଳ ବାହୁବଳେ । ବ୍ରହ୍ମାଣ୍ଡ ଆଚ୍ଛାଦିବେ ହେଳେ ॥
ଯେସନେ ସମୁଦ୍ର ଉଲ୍ଲୋଳ । ଲଂଘିଲେ ନ ରହଇ କୂଳ ॥୨୮,୨୯
ଏହାଙ୍କୁ ସଂହାର ନ କରି । ଯେବେ ମୁଁ ଯିବି ନିଜ ପୁରୀ ॥
ତେବେ ଯାଦବବଳ ତ୍ରାସେ । ଲୋକେ ନ ଥିବେ ଦଶଦିଶେ ॥
ମୁଁ ଯେ ସଂହାରି ଦୁଷ୍ଟବଳ । ଧରଣୀ ନ କଲି କୁଶଳ ॥
ଏ କୁଳ ଦ୍ୱିଜଶାପେ ମାରି । ଧରଣୀ ସଙ୍କଟୁ ଉଦ୍ଧରି ॥
ତେବେ ମୁଁ ଯିବି ନିଜସ୍ଥାନ । ହେ ବ୍ରହ୍ମା ସତ୍ୟ ମୋ ବଚନ ॥୩୦,୩୧

*ଶ୍ରୀ ଶୁକ ଉବାଚ*

ଏମନ୍ତ କୃଷ୍ଣର ବଚନ । ଶୁଣି ସନ୍ତୋଷ ଦେବଗଣ ॥
ବ୍ରହ୍ମାଦି ସର୍ବ ଦେବଗଣେ । ନମିଲେ ଗୋବିନ୍ଦ ଚରଣେ ॥
କୃଷ୍ଣବଚନ ଶିରେ ଧରି । ଗଲେ ସେ ଯେ ଯାହାର ପୁରୀ ॥୩୨
ଏବେ ହୋ ଶୁଣ ମହୀପତି । ଅଦ୍ଭୁତ ଗୋବିନ୍ଦର ଗତି ॥
ଭୂମି ଗଗନ ଅଷ୍ଟଦିଶେ । ଘୋର ଅଦ୍ଭୁତ ଯଦୁବଂଶେ ॥
ଉତ୍ପାତ ଦିଶେ ନିରନ୍ତରେ । ଦ୍ୱାରକା ବାହ୍ୟ ଅଭ୍ୟନ୍ତରେ ॥
ଦେଖିଣ ପ୍ରଭୁ ଚକ୍ରପାଣି । କହନ୍ତି ବୁଧଜନ ଆଣି ॥୩୩

*ଶ୍ରୀ ଭଗବାନୁବାଚ*

ଦେଖ ଉତ୍ପାତ ଘୋରନାଦ । କି ଅବା ପଡ଼ିବ ପ୍ରମାଦ ॥
ବ୍ରାହ୍ମଣ ଶାପ କୋପାନଳ । ଦହିବ ନିଶ୍ଚେ ଯଦୁକୁଳ ॥
ସେ ବିପ୍ରଶାପ କ୍ଷୟ ଅର୍ଥେ । ଉପାୟ ନ ଦିଶଇ ଏଥେ ॥
ଏଣୁ ଦ୍ୱାରକାପୁରେ ବାସ । ଆମ୍ଭର ନୁହଇ ବିଶ୍ୱାସ ॥

ପ୍ରଭାସତୀର୍ଥେ ଚାଲ ଯିବା । ଯହିଁ ସକଳ ତୀର୍ଥସେବା ॥
ଦଣ୍ଡେହେଁ ବିଳମ୍ବ ନ କର । ଦେଖି ଉତ୍ପାତ ଭୟଙ୍କର ॥୩୪,୩୫
ପୁଣି ବୋଇଲେ ଚକ୍ରପାଣି । ଆମ୍ଭେ ପୁରାଣେ ଅଛୁ ଶୁଣି ॥
ଦକ୍ଷର ଶାପେ ଚନ୍ଦ୍ର ଅଙ୍ଗେ । ବାଧିଲା ରାଜଯକ୍ଷ୍ମା ରୋଗେ ॥
ସେ ପୁଣି ବ୍ରହ୍ମାବାକ୍ୟେ ଗଲା । ପ୍ରଭାସତୀର୍ଥେ ସ୍ନାନ କଲା ॥
ତକ୍ଷଣେ ହୋଇଲା ନୀରୁଜ[୧] । ଅଧିକେ ବିରାଜିଲା ତେଜ* ॥୩୬
ଆମ୍ଭେ ସେ ତୀର୍ଥେ କରି ସ୍ନାନ । ଦେବା ପିତୃଙ୍କୁ ଜଳଦାନ ॥
ବିପ୍ରେ ଭୁଞ୍ଜାଇ ମିଷ୍ଟଅନ୍ନ । ଦାନେ ତୋଷିବା ତାଙ୍କ ମନ ॥
ଅମୂଲ୍ୟ ଧନ ବିପ୍ରେ ଦେଇ । ବାକ୍ୟ କହିବା ଚାଟୁଆଇ ॥
ମନ ସନ୍ତୋଷେ ଧନ ଦେବା । ନିରତେ ଚରଣେ ସେବିବା ॥
ଧନ କାର୍ପଣ୍ୟ[୨] ସେବାଫଳେ । କିବା ଅସାଧ୍ୟ ମହୀତଳେ ॥
ବିପ୍ରଙ୍କ ମନ ତୋଷ କରି । ଆମ୍ଭେ ବା ବ୍ରହ୍ମଶାପୁଁ ତରି ॥
ଦାନେ ସକଳ ପାପ ହରି । ନାବେ ଯେସନେ ସିନ୍ଧୁ ତରି ॥୩୭,୩୮

*ଶ୍ରୀ ଶୁକ ଉବାଚ*

ଏମନ୍ତେ କୃଷ୍ଣବାକ୍ୟ ଶୁଣି । ସର୍ବ ଯାଦବେ ମନେ ଗୁଣି ॥
କୃଷ୍ଣର ବାକ୍ୟ ସତ୍ୟ କରି । ତୀର୍ଥଗମନ ଚିତ୍ତେ ଧରି ॥
ରଥ ଶକଟ ଗଜ ବାଜୀ । ଯେ ଯାହା ଅନୁମତେ ସାଜି ॥

---

୧. ନୀରୁଜ—ନୀରୋଗ, ରୋଗମୁକ୍ତ। ୨. କାର୍ପଣ୍ୟ—ବିନୟ।

* ଚନ୍ଦ୍ର ଦକ୍ଷକନ୍ୟା ସପ୍ତବିଂଶତି ନକ୍ଷତ୍ରଙ୍କର ପାଣିଗ୍ରହଣ କରିଥିଲେ; କିନ୍ତୁ ସେ ସମସ୍ତଙ୍କ ପ୍ରତି ସମବ୍ୟବହାର ନ କରି ରୋହିଣୀଙ୍କ ଠାରେ ଅତ୍ୟନ୍ତ ଆସକ୍ତ ହେବାରୁ ଅପର କନ୍ୟାମାନଙ୍କ ନିବେଦନ ଶୁଣି ଦକ୍ଷ ପ୍ରଜାପତି କ୍ରୋଧାନ୍ୱିତ ହୋଇ ତାଙ୍କୁ ଅଭିଶାପ ଦେଇଥିଲେ। ତା'ଫଳରେ ଚନ୍ଦ୍ର ଯକ୍ଷ୍ମା ରୋଗରେ ଆକ୍ରାନ୍ତ ଓ ପ୍ରଭାହୀନ ହେବାରୁ ପ୍ରଭାସ କ୍ଷେତ୍ରରେ ବହୁକାଳ ତପସ୍ୟା କରି ରୋଗମୁକ୍ତ ହେଲେ ଏବଂ ନିଜର ପୂର୍ବ ପ୍ରଭା ଲାଭ କଲେ। ତେଣୁ ଏହି କ୍ଷେତ୍ରର ନାମ 'ପ୍ରଭାସ' ହେଲା।

ଧନୁ ଖଡ଼ଗ ଆଦି କରି । ସକଳ ଅସ୍ତ୍ରଶସ୍ତ୍ର ଧରି ॥
ସଜ ହୋଇଲେ ତୋଷମନେ । ଗୋବିନ୍ଦ ତୀର୍ଥ ଅନୁଯାନେ ॥୩୯
ଉଦ୍ଧବ ଶୁଣି ତାହା ମନେ । ଜାଣିଲା କୃଷ୍ଣର ବଚନେ ॥
ଅଦ୍ଭୁତ ଭୟଙ୍କର ଗ୍ରହିଁ । ଚକିତ ଚିତ୍ତେ ବିଗ୍ରହଇ ॥
ବ୍ରାହ୍ମଣ ଶାପେ ଯଦୁବଂଶ । ଅବଶ୍ୟ ବେଗେ ଯିବ ନାଶ ॥
ମାୟାର ଯୋଗେ କୃଷ୍ଣରାମ । ନିଶ୍ଚୟ ଯିବେ ନିଜ ଧାମ ॥
ଉଦ୍ଧବ ଏମନ୍ତ ବିଗ୍ରହି । ବେନି ନୟନୁ ବହେ ବାରି ॥
କାନ୍ଦି କୃଷ୍ଣର ସନ୍ନିଧାନେ । ଗୁପତେ ଆତ୍ମବିଦ୍ୟମାନେ ॥
କୃଷ୍ଣ ଚରଣେ ଦେଇ ଶିର । ଉଦ୍ଧବ କହେ ଯୋଡ଼ି କର ॥୪୦,୪୧

*ଉଦ୍ଧବ ଉବାଚ*

ହେ ଦେବଦେବ ନିରଞ୍ଜନ । ହେ ପୁଣ୍ୟ ଶ୍ରବଣ କୀର୍ତ୍ତନ ॥
କୁଳ କି ସଂହାରିବୁ ତୁହି । ଏମନ୍ତ ପ୍ରାୟେ ମୁଁ ମଣଇଁ ॥
ବୋଲାଉ ତୁ ଯେ ଭଗବାନ । ନ କରୁ ବିପ୍ର ଶାପ ଆନ ॥
ତୁ କାଳରୂପୀ ମାୟାଧର । ଏ ରୂପ କରିବୁ ଅନ୍ତର ॥
ଏ ନରଲୋକ ଛାଡ଼ି ହରି । ନିଶ୍ଚୟ ଯିବୁ ନିଜ ପୁରୀ ॥୪୨
ତୋହର ଅଭୟ ଚରଣ । ପରମ ମଙ୍ଗଳ କାରଣ ॥
ସେ ପାଦେ ମୋର ମନ ଜଡ଼ି । ତିଳେହେଁ ନ ପାରଇ ଛାଡ଼ି ॥
ସେ ପାଦେ ପଶିଲି ଶରଣ । ମୋତେ ନ ଛାଡ଼ ନାରାୟଣ ॥
ତୁ ନାଥ ଶରଣସୋଦର । ତୋର ସଙ୍ଗତେ ମୋତେ କର ॥୪୩
ତୋର ଚରିତ ସୁଧାପାନ । ପରମ ମଙ୍ଗଳ କାରଣ ॥
ଯେ ପ୍ରାଣୀ କର୍ଣ୍ଣେ ପାନ କରେ । ସକଳ କର୍ମ ସେ ପାସୋରେ ॥
ମାର୍ଜନ ସୁଗନ୍ଧ ଲେପନେ । ଆସନ ଭୋଜନ ଶୟନେ ॥
କ୍ଷଣେ ନ ଛାଡୁ ପ୍ରଭୁ ମୋତେ । ଏବେ ମୁଁ ନ ଦେଖିଲେ ତୋତେ ॥
କେମନ୍ତେ ଧରିବି ଜୀବନ । ହୋଇବ ଦଶଦିଗ ଶୂନ୍ୟ ॥୪୪,୪୫
ତୋହର ଅଙ୍ଗ ଉପହାର । ଶରୀର ଭୂଷଣ ମୋହର ॥

ଗନ୍ଧ ବସନ ମାଲ୍ୟ ଯେତେ । ଭୁଞ୍ଜଇ ତୋର ଭୋଗ ଅନ୍ତେ ॥
ତୋର ନିର୍ମାଲ୍ୟ ନିତ୍ୟେ ଖାଇ । ତୋ ରୂପ ନୟନେ ଦେଖଇ ॥
ତୁ ଯେ ମୋହର ପ୍ରାଣବନ୍ଧୁ । ଉଦ୍ଧର ତୋର ମାୟାସିନ୍ଧୁ ॥୪୬
ଯେ ପ୍ରାଣୀ ଦିଗମ୍ବର ହୋଇ । ଭ୍ରମେ ସନ୍ୟାସୀ ରୂପ ବହି ॥
ଇନ୍ଦ୍ରିୟଗଣ ଦୃଢ଼େ ଛନ୍ଦି । ମନ ପବନ ହୃଦେ ରୁନ୍ଧି ॥
ବ୍ରହ୍ମ ଚିନ୍ତଇ ଅବିରତେ । ନିରହଙ୍କାର ଶୁଦ୍ଧଚିତ୍ତେ ॥
ତପ କଷଣ ସହେ ନିତ୍ୟ । ନିର୍ମଳ ମତି ଉର୍ଦ୍ଧ୍ୱରେତ ॥
ଅଷ୍ଟାଙ୍ଗଯୋଗ ଭାବେ ଚିନ୍ତି । ଲଭନ୍ତି ବ୍ରହ୍ମଜ୍ଞାନ ଗତି ॥୪୭
ତୋର ଅମୃତରସ ବାଣୀ । ନିରତେ ଶ୍ରବଣେ ଯେ ଶୁଣି ॥
ତୋର ସେବକ ଯାର ବନ୍ଧୁ । ହେଲେ ସେ ତରେ ଭବସିନ୍ଧୁ ॥୪୮
ତୋହର ସ୍ମରଣ କୀର୍ତ୍ତନ । ଅନ୍ୟୋନ୍ୟେ କହନ୍ତି ବଚନ ॥
ତୋହର ପାଦେ ଯାର ମନ । ସେ ପ୍ରାଣୀ ଭକତ ଉତ୍ତମ ॥୪୯

*ଶ୍ରୀ ଶୁକ ଉବାଚ*

ଏମନ୍ତେ ଉଦ୍ଧବ ବଚନ । ଜଣାନ୍ତେ କୃଷ୍ଣ ସନ୍ନିଧାନ ॥
ଉଦ୍ଧବେ କହନ୍ତି ଅଚ୍ୟୁତ । ଯେଣୁ ସେ ଏକାନ୍ତ ଭକତ ॥୫୦
ଶ୍ରୀ ଏକାଦଶେ ଭାଗବତ । ଶୁକ କହନ୍ତି ଜ୍ଞାନତତ୍ତ୍ୱ ॥
ଅମୃତ ରସମୟ ବାଣୀ । ଶୁଣି ତରିବେ ସାଧୁ ପ୍ରାଣୀ ॥
ସିଦ୍ଧ ସଙ୍ଗତି ମନୋରଥ । କହଇ ଦାସ ଜଗନ୍ନାଥ ॥

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଏକାଦଶସ୍କନ୍ଧେ ଦେବସ୍ତୁତିବର୍ଣ୍ଣନଂ ଉଦ୍ଧବବିଳାପଂ ଚ ନାମ ସପ୍ତମୋଽଧ୍ୟାୟଃ ।

❒❒❒

# ଅଷ୍ଟମ ଅଧ୍ୟାୟ*

ଅଷ୍ଟମେ ଅବଧୂତ କଥା । ଆଠଟି ଗୁରୁଙ୍କ ବ୍ୟବସ୍ଥା ॥

*ଶ୍ରୀ ଭଗବାନୁବାଚ*

ହସି ବୋଲନ୍ତି ବାସୁଦେବ । ଶୁଣ ହେ ଭକତ ଉଦ୍ଧବ ॥
ହେତୁ କାରଣ ତୁହି ଜାଣି । ଯେତେ କହିଲୁ ପରିମାଣି ॥
ବ୍ରହ୍ମା ଶଙ୍କର ଆଦି ଦେବେ । ମୋର ନିକଟେ ଆସି ଏବେ ॥
ଅନେକ ସ୍ତୁତି କଲେ ପାଶେ । ବୈକୁଣ୍ଠେ ମୋ ଗମନ ଆଶେ ॥ ୧
ମୁଁ ଏବେ ଦେବକାର୍ଯ୍ୟ ସାରି । ଅବନୀଭାର ପରିହରି ॥
ଏବେ ତ ପ୍ରୟୋଜନ ନାହିଁ । ନିଜ ଭୁବନେ ଯିବି ମୁହିଁ ॥
ବ୍ରହ୍ମାବଚନ ଇଷ୍ଟ ମୋର । ତେଣୁ ମନୁଷ୍ୟେ ଅବତାର ॥ ୨
ଏବେ ତୁ ଶୁଣ ମୋ ବିଶ୍ୱାସେ । ଆଜହୁଁ ସପତ ଦିବସେ ॥
ଏ ଯେତେ ମୋର ଯଦୁବଂଶ । ମିଥ୍ୟା କନ୍ଦଳେ ଯିବେ ନାଶ ॥
ସପତଦିନ ରାତ୍ରକାଳେ । ପ୍ରଚଣ୍ଡ ସମୁଦ୍ର ଉଲ୍ଲୋଳେ ॥
ଏ ଯଦୁପୁରୀ ସିନ୍ଧୁଜଳେ । ବୁଡ଼ି ପଡ଼ିବ ରସାତଳେ ॥
ମୋର ନିବାସ ମାତ୍ର ଥିବ । ଜଳେ ଦ୍ୱାରକା ନାଶ ଯିବ ॥ ୩
ମୁଁ ଯେବେ ଯିବି ନିଜ ପୁରୀ । ଭୂମି ଦିଶିବ ହତଶିରୀ ॥
କଳି କରିବ ଆକ୍ରମଣ । ହରିବ ସର୍ବଜନ୍ତୁ ମନ ॥ ୪
ଦଣ୍ଡେ ନ ରହ ମୋର ସଙ୍ଗେ । ଅରଣ୍ୟେ ପଶ ଯାଇ ବେଗେ ॥
ଏ ଘୋର କଳିଯୁଗ ଗତି । ଲୋକେ ହୋଇବେ ଦୁଷ୍ଟମତି ॥
ହିଂସା ବହିବେ ଏକେ ଏକେ । ସର୍ବେ ମଜ୍ଜିବେ ଦୁଃଖଶୋକେ ॥
ଅଗମ୍ୟେ କରିବେ ଗମନ । ନିନ୍ଦିବେ ନିଗମ ବଚନ ॥
ଏଣୁ ହୋଇବେ ଅଳ୍ପାୟୁଷ । ପାପେ ସକଳେ ଯିବେ ନାଶ ॥ ୫
ତୁ ଏବେ ଛାଡ଼ି ସୁତ ବିତ୍ତ । ଦାରା ସେବକେ ପ୍ରେମଚିତ୍ତ ॥

* ମୂଳ ସଂସ୍କୃତ ଅନୁସାରେ ସପ୍ତମ ଅଧ୍ୟାୟ ।

ସକଳ କର୍ମ ଦୂର କରି । ମୋହର ପାଦେ ଚିତ୍ତ ଧରି ॥
ପୃଥିବୀ କରି ପର୍ଯ୍ୟଟନେ । ଅସତ୍ୟ ଦେଖ ତ୍ରିଭୁବନେ ॥
ଦୃଷ୍ଟି ଶ୍ରବଣ ବାକ୍ୟ ମନେ । ଯେତେ ବିଗୃରୁ ଅନୁମାନେ ॥
ଏ ସର୍ବେ ମାୟାର ସଂଗ୍ରହ । ଏଣେ ତୁ ବିଶ୍ୱାସ ନ କର ॥୬,୭
ବିବିଧ ଅର୍ଥେ ପ୍ରାଣୀ ଭ୍ରମେ । ଅନ୍ଧ ଯେସନେ ଘୋର ତମେ ॥
ସଂସାରେ ଭେଦବୁଦ୍ଧି କରେ । ଦୋଷ ଗୁଣକୁ ସେ ବିଗୃରେ ॥
ଅକର୍ମ କର୍ମ ବୋଲି ମଣେ । ବିକର୍ମ ବୁଦ୍ଧି ପରିମାଣେ ॥
ଏଣୁ ମଣଇ ଗୁଣ ଦୋଷ । ଭେଦ ବେଭାରେ ବୁଦ୍ଧିଭ୍ରଂଶ ॥
ବେଦ ବଚନ ଏହିମତେ । ବିଧି ନିଷେଧ ବେନି ପଥେ ॥
ବିହିତ କର୍ମ ବୋଲି କର୍ମ । ନ କଲେ ତା ବୋଲି ଅକର୍ମ ॥
ନିଷିଦ୍ଧ ବିକର୍ମ ବୋଲାଇ । ଏ ଭେଦୁଁ ସଂସାରେ ପଡ଼ଇ ॥ ୮
ଏଣୁ ତୁ ସୁମନେ ବିଗୃର । ଚଞ୍ଚଳ ଚିତ୍ତ ସ୍ଥିର କର ॥
ସର୍ବ ଇନ୍ଦ୍ରିୟ ମନ ବୁଦ୍ଧି । ନିୟତକର୍ମେ ଦେଇ ବୁଦ୍ଧି ॥
ଆତ୍ମାକୁ ଦେଖ ସର୍ବମୟେ । ବିବେକ ସୁଜ୍ଞାନ ଉଦୟେ ॥
ସମାଧି ବସି ଯୋଗଧ୍ୟାନେ । ଆତ୍ମାକୁ ଦେଖ ଆତ୍ମଜ୍ଞାନେ ॥
ଏଣେ ସନ୍ତୋଷମନେ ଥାଅ । ଖଣ୍ଡିବୁ ସକଳ ସଂଶୟ ॥୯,୧୦
ଯାର ହୃଦରେ ଦୋଷଗୁଣ । ଭେଦ ନ କରେ ବିଗୃରଣ ॥
ସକଳ କର୍ମ ସେ କରଇ । ବିଧି ନିଷେଧ ତାର ନାହିଁ ॥
ବାଳକ ବାଳିକା ସଙ୍ଗତେ । ଅଜ୍ଞାନେ ଖେଳନ୍ତି ଯେମନ୍ତେ ॥
ବାଳ ସ୍ୱଭାବେ ଗୁଣ ବହି । ସଙ୍ଗ ଅସଙ୍ଗ ନ ଜାଣଇ ॥୧୧
ବିତର୍କି ଜ୍ଞାନୀ ଏହିମତେ । କର୍ମ କରଇ ଏ ଜଗତେ ॥
ସକଳ ଦେଖଇ ସମାନ । ଏଣୁ ନ କରେ ବସ୍ତୁଜ୍ଞାନ ॥
ତୁ ଏବେ ସର୍ବପ୍ରାଣୀ ହିତେ । ନିରତେ ରହି ଶାନ୍ତଚିତ୍ତେ ॥
ଜ୍ଞାନ ବିଜ୍ଞାନେ ମନ ଦେଇ । ନିଶ୍ଚଳେ ରଖ ମନ ତୁହି ॥
ସଂସାର ଦେଖ ମୋ ସ୍ୱରୂପେ । ଗଞ୍ଜି ନୋହିବୁ ଭବକୂପେ ॥୧୨

*ଶ୍ରୀ ଶୁକ ଉବାଚ*

ଏମନ୍ତେ କୃଷ୍ଣର ବଚନେ । ଶୁଣି ଉଦ୍ଧବ ଖେଦମନେ ॥
ପ୍ରଣାମ କରି କୃଷ୍ଣପାଦେ । କହଇ ଶୋକ ଗଦଗଦେ ॥୧୩

*ଉଦ୍ଧବ ଉବାଚ*

ହେ ମହାଯୋଗୀ ଯୋଗେଶ୍ୱର । ଦୁର୍ଲଭ ବଚନ ତୋହର ॥
ନ ପଶେ ମୋହର ହୃଦୟେ । ନଳିନୀଦଳେ ଜଳ ପ୍ରାୟେ ॥
ତୁମ୍ଭେ କହିଲ ତ୍ୟାଗ ଗୁଣ । ଯେ ଧର୍ମ ସନ୍ନ୍ୟାସ ଲକ୍ଷଣ ॥
କାମ ଜଡ଼ିତ ମୋର ମନେ । ବିଷମ ବିଷୟା ଚିନ୍ତନେ ॥
ତୋର ଭକତି ନାହିଁ ଚିତ୍ତେ । ମନକୁ ଜିଣିବି କେମନ୍ତେ ॥
ତୋର ସ୍ମରଣ ଯାର ଦୂର । କି ରୂପେ ତ୍ୟାଗ ତା ସଂସାର ॥୧୪,୧୫
ଯେ କିଛି ତୋହର ଚରଣେ । ମୁହିଁ ପୁଚ୍ଛଇ ଦାସପଣେ ॥
ମୁଁ ମୂଢ଼ ମାୟା ଜଡ଼ମତି । ଭୋ ନାଥ ଶୁଣ ଯଦୁପତି ॥
ମୁହିଁ ମୋହର ଏ ଶରୀର । ସକଳ ସଂସାର ମୋହର ॥
ମୋହେ ଜଡ଼ିତ ମୋର ଚିତ୍ତ । ଏଣୁ ମୁଁ କୈବଲ୍ୟ ବଞ୍ଚିତ ॥
ଅସତ୍ୟ ସୁତ ଦାରା ଧନ । ମୋ ମନ କରେ ନିତ୍ୟ ଧ୍ୟାନ ॥
ତୋ ମାୟା ସଙ୍କଟେ ମୁଁ ଜଡ଼ି । ଭବବନ୍ଧନେ ଅଛି ପଡ଼ି ॥
ଏ ମୋର ମାୟା ଜାଲ ପାଶ । କିଞ୍ଚିତେ ଛେଦ ପୀତବାସ ॥
ନିଶ୍ଚୟ କରି ନିଜ ଦାସ । କହ ତୋ ମାର୍ଗ ଉପଦେଶ ॥୧୬
ତୁ ଆତ୍ମା ସତ୍ୟ ନିତ୍ୟ ନିଧି । ଚଉଦ ଭୁବନେ ପ୍ରସିଦ୍ଧି ॥
ତୁ ବ୍ରହ୍ମଜ୍ଞାନ ଗୁରୁ ଦାତା । ତୋ ତହୁଁ ନାହିଁ ନା ବକତା ॥
ନାନା ପ୍ରପଞ୍ଚ ବେଦବାଦେ । କେ ଅଛି ସୁରସଭା ମଧ୍ୟେ ॥
ବ୍ରହ୍ମାଦି ଯେତେ ଦେହବନ୍ତ । ତୋହର ମାୟାରେ ମୋହିତ ॥
ବିଷୟ ଧ୍ୟାନ ଅବିରତ । ଏଣୁ ସେ ତୋ ମାର୍ଗେ ବଞ୍ଚିତ ॥
ସେ କେବେ ତତ୍ତ୍ୱ ଅବଧାରି । ତୋ ମାୟା ନ ପାରିଲେ ତରି ॥୧୭

ଅନନ୍ତ ମହିମା ତୋହର । ସର୍ବଜ୍ଞ ଜଗତ ଈଶ୍ୱର ॥
ଯେଣୁ ତୁ ଅଷ୍ଟନିଧିଧାରୀ । ତେଣୁ ତୁ ସର୍ବ ଅଧିକାରୀ ॥
ଅକୁଣ୍ଠ ବିକୁଣ୍ଠ ମହିମା । ବେଦ ନ ଜାଣେ ତୋର ସୀମା ॥
ତୁ ନରସଖା ନାରାୟଣ । ତୋ ପାଦେ ପଶିଲି ଶରଣ ॥
ତୋ ନାମ ଦୁରିତ ଦହନ । ତାପ ମୋ କର ବିମୋଚନ ॥୧୮
ଉଦ୍ଧବ ବାକ୍ୟେ ଯଦୁମଣି । ମନ ସଂଶୟ ତାର ଜାଣି ॥
ବୋଲନ୍ତି କମଳଲୋଚନ । ଉଦ୍ଧବ ଶୁଣ ମୋ ବଚନ ॥(ଛ.)

*ଶ୍ରୀ ଭଗବାନୁବାଚ*

ଯେ ପ୍ରାଣୀ ଲୋକତତ୍ତ୍ୱ ଜାଣେ । ମୋର ମହିମା ପରିମାଣେ ॥
ବିଷୟା ଭ୍ରମରୁ ସଂସାରେ । ଆତ୍ମାକୁ ଆପଣେ ଉଦ୍ଧରେ ॥୧୯
ଆତ୍ମାକୁ ବୁଝାଇ ଆପଣେ । ସୁମତି ଆତ୍ମା ଗୁରୁପଣେ ॥
ପ୍ରତ୍ୟକ୍ଷ କରେ ଆତ୍ମଜ୍ଞାନ । କି ଅବା କରେ ଅନୁମାନ ॥
ଜ୍ଞାନ ବୁଝଇ ଧୀରପଣେ । ଆତ୍ମା ସମାଧି ଅଭ୍ୟାସଣେ ॥
ଆତ୍ମା କୁଶଳେ ସର୍ବ ସିଦ୍ଧି । ତରଇ ସଂସାର ଜଳଧି ॥୨୦
ପଣ୍ଡିତ ସାଂଖ୍ୟଯୋଗ ମତେ । ଧୀର ବିବେକପଣେ ମୋତେ ॥
ଆତ୍ମାକୁ ଦେଖେ ସର୍ବଭୂତେ । ନିର୍ଲେପ ସର୍ବଶକ୍ତି ଯୁତେ ॥୨୧
ଏକ ଦୁଇ ବା ତିନିପଦ । କେ ଚ୍ୱରିପଦ କେ ଅପଦ ॥
କେ ବହୁପଦ ଆଦି ଯେତେ । ଏମନ୍ତେ ଦେହୀ ଛନ୍ତି ଯେତେ ॥
ତା ମଧ୍ୟେ ମନୁଷ୍ୟଶରୀର । ଜାଣ ଅତ୍ୟନ୍ତ ପ୍ରିୟ ମୋର ॥୨୨
ଯେଣୁ ବିବେକ ବଳେ ପୁଣି । ଏ ଦେହେ ମୋତେ ପରିମାଣି ॥
ଈଶ୍ୱର ଅଛି ସର୍ବଭୂତେ । ଏ ଅନୁମାନ କରେ ଚିତ୍ତେ ॥୨୩
ଏବେ ହୋ କହିବା ବିଶ୍ୱାସେ । ଯେ ପୁରାତନ ଇତିହାସେ ॥
ଯଦୁରାଜନ ଅବଧୂତ । ଏ ବେନି ଜନଙ୍କ ଚରିତ ॥୨୪
ବ୍ରାହ୍ମଣ ଅବଧୂତ ରୂପେ । ମିଳିଲେ ନୃପତି ସମୀପେ ॥
ସେ ସର୍ବଭୂତେ ଦୟାପର । ନିର୍ଭୟ ନିର୍ମଳ ଶରୀର ॥
ଦେଖି ତାହାଙ୍କ ଦିବ୍ୟଗତି । ବିଶ୍ୱାସେ ପୁଚ୍ଛଇ ନୃପତି ॥୨୫

*ଯଦୁ ଉବାଚ*

ଭୋ ମୁନି ନମେ ତୋ ଚରଣେ । ଏକାନ୍ତେ ଭ୍ରମୁ କି କାରଣେ ॥
ଏ ନରଲୋକେ ତୋ ଭ୍ରମଣ । ବାଳକ ପ୍ରାୟେ ଆଚରଣ ॥୨୬
ପ୍ରାଣୀଏ ଧର୍ମ ଅର୍ଥ କାମ । ନିମନ୍ତେ ହୋଇଣ ବିଭ୍ରମ ॥
କର୍ମ କରନ୍ତି ଏ ଜଗତେ । ଆୟୁଷ ଶ୍ରିୟ ଯଶ ଅର୍ଥେ ॥୨୭
ତୁ ତ ଚତୁର ବଳବନ୍ତ । ପଣ୍ଡିତକୁଳକୁ ମଣ୍ଡିତ ॥
ସୁନ୍ଦର ଅଳପ ଭାଷିତ । ତୋର ଚରିତ ବିପରୀତ ॥
ଦୃଷ୍ଟି ଶ୍ରବଣ ଦେହେ ବହି । ନ ଦେଖି ନ ଶୁଣୁ କିମ୍ପାଇଁ ॥
ନ କରୁ ନ ଇଚ୍ଛୁ କିଞ୍ଚିତ । ମତ୍ତ ପିଶାଚ ଜଡ଼ବତ ॥୨୮
ଏ ସର୍ବଲୋକ ଭବକୂପେ । ନିତ୍ୟେ ଦଗଧ ନାନା ତାପେ ॥
ଏହାଙ୍କ ମଧ୍ୟେ ତୁ ଯେ ଥାଉ । ସାଧୁ ସୁନ୍ଦର ଦେହ ବହୁ ॥
କିମ୍ପା ସଂସାର ତାପ ତୋତେ । ନ ବାଧେ ସନ୍ଦେହ ତ ମୋତେ ॥
ଯେସନେ ଗଙ୍ଗାଜଳେ ହସ୍ତୀ । ଅଙ୍ଗକୁ ନ ଲାଗେ ତପତି ॥
ସେହି ପ୍ରକାରେ ତୋ ଶରୀର । ମୋର ମନକୁ ଅଗୋଚର ॥୨୯
ବିଷୟଭୋଗ ତୋର ନାହିଁ । ଆନନ୍ଦ ହେଉ କାହିଁପାଇଁ ॥
କହ କେବଣ ପ୍ରୟୋଜନ । ଶୁଣି ସାନନ୍ଦ ହେଉ ମନ ॥୩୦

*ଶ୍ରୀ ଭଗବାନୁବାଚ*

ରାଜା ବଚନେ ଅବଧୂତ । ତକ୍ଷଣେ ହୋଇ ସ୍ତମ୍ଭୀଭୂତ ॥
ରାଜାର ମୁଖ ଗ୍ଚହିଁ ଧୀରେ । ବୋଲଇ ବଚନ ଗଭୀରେ ॥୩୧

*ଅବଧୂତ ଉବାଚ*

ଶୁଣ ହେ ଯଦୁ ନୃପବର । ଅନେକେ ଗୁରୁ ଛନ୍ତି ମୋର ॥
ଶୁଣିତେ ଯେବେ ତୋର ଇଚ୍ଛା । ଯାହାର ତହୁଁ ଯେବା ଦୀକ୍ଷା ॥
ଘେନି ମୁଁ ବୁଲଇ ସଂସାରେ । କହିବି ଶୁଣ ମନସ୍ଥିରେ ॥୩୨
ପୃଥିବୀ ପବନ ଅନଳ । ଆବର ଆକାଶ ମଣ୍ଡଳ ॥
ରବି ଶଶାଙ୍କ ଆପ ସିନ୍ଧୁ । ଭ୍ରମର ସର୍ବପୁଷ୍ପବନ୍ଧୁ ॥

କପୋତପକ୍ଷୀ ଗୁରୁ ମୋର । ପତଙ୍ଗ ସର୍ପ ଅଜଗର ॥
ମୀନ ପିଙ୍ଗଳା ବେଶ୍ୟାନାରୀ । କୁରର କୁମର କୁମାରୀ ॥
ହରିଣ ଉର୍ଣ୍ଣନାଭ କରୀ । ଶରକାରକ ମଧୁହାରୀ ॥
ଆବର କୀଟ ପେଶସ୍କାରୀ । ମୁଁ ଏତେ ଗୁରୁ ଅଛି କରି ॥୩୩,୩୪
ଚବିଶ ଗୁରୁ ମୋର ଏତେ । ଶୁଣ ରାଜନ ତୋଷ ଚିତ୍ତେ ॥
ଯାହାର ତହୁଁ ଯେବା ଦୀକ୍ଷା । ମୁହିଁ ପାଇଲି ଗୁରୁଶିକ୍ଷା ॥
ତାହା ମୁଁ ତୋହର ସମ୍ମୁଖେ । ଶୁଣ କହିବି ଏକେ ଏକେ ॥୩୫,୩୬
ଏ ଜୀବ ଆତ୍ମା ପରବଶେ । ଅଦୃଷ୍ଟ କାରଣ ବିଶ୍ୱାସେ ॥
ଦୁଃଖ ପୀଡ଼ିତ କର୍ମଫଳେ । ସଂସାରେ ଜନ୍ମି ଅବହେଳେ ॥
କର୍ମ ଆଦରି ସହି ଦୁଃଖ । କେବେହେଁ ନୋହିବ ବିମୁଖ ॥
ଦୁଃଖେ ନ ଛାଡ଼ି ନିଜ ପଥ । ଚଞ୍ଚଳ ନ କରିବ ଚିତ୍ତ ॥
ଏଣୁ ମୁଁ ଦୁଃଖେ ସୁଖ ସହି । ଏହା ଶିଖିଲି ଭୂମି ତହିଁ ॥
ଆହୁରି ତାର ଉପଦେଶ । ଶିଖିଲି ଶୁଣ ହେ ନରେଶ ॥
କର୍ମ କଷଣ ସହି ଧୀରେ । ବଞ୍ଚଇ ପର ଉପକାରେ ॥
ଧନ୍ୟ ଜୀବନ ଏ ଜଗତେ । ଯେ ପ୍ରାଣ ଧରେ ପରହିତେ ॥
ଧନ୍ୟ ଜୀବନ ଧନ୍ୟ ତାର । ଦୁର୍ଲଭ କର୍ମ ଏ ବେଭାର ॥
ମୁଁ ଏହା ବୃକ୍ଷଙ୍କର ସ୍ଥାନୁ । ଶିଖିଲି ପର୍ବତ ଗହନୁ ॥୩୭,୩୮
ବାହ୍ୟ ଅନ୍ତର ବାୟୁ ଦୁଇ । ପ୍ରାଣବାୟୁରୁ ଶିକ୍ଷା ଏହି ॥
ଆହାରମାତ୍ରେ ତାର ରକ୍ଷା । ରୂପ ରସାଦି ନାହିଁ ବାଞ୍ଛା ॥
କେବଳ ଦେହ ମାତ୍ର ଧରି । ଇନ୍ଦ୍ରିୟ ତର୍ପଣ[୧] ନ କରି ॥
ରକ୍ଷା ନ କଲେ ନିଜ ପ୍ରାଣ । ବିକଳଭାବ ଲଭେ ମନ ॥
ମନ ବିକଳେ ପ୍ରାଣ ନାଶ । ସୁବୁଦ୍ଧି ନୁହଇ ପ୍ରକାଶ ॥
ଏ ଘେନି ପ୍ରାଣକୁ ରଖିଛି । ଅଧିକ ବାଞ୍ଛା ନାହିଁ କିଛି ॥୩୯
ଜ୍ଞାନ ଉଦ୍ଦେଶେ ଶୁଦ୍ଧ ମନ । ନ କରି ମାୟାଜଡ଼େ ଛନ୍ନ ॥

୧. ତର୍ପଣ—ତୋଷଣ, ତୃପ୍ତି ।

ଯୋଗୀର ଧର୍ମ ଜାଣ ଏହି । ବିଷୟ ଭୋଗେ ଯେବେ ଥାଇ ॥
ନ ଘେନେ ତାର ଗୁଣଦୋଷ । ଇନ୍ଦ୍ରିୟ ଭୋଗ ସୁଖ ଲେଶ ॥୪୦
ଦେଖ ପବନ ଏ ଶରୀରେ । ବହଇ ଅନ୍ତର ବାହାରେ ॥
ସର୍ବତ୍ର ବହଇ ସଂସାରେ । ଅଦେହ ସର୍ବ ଗନ୍ଧ ହରେ ॥
ଏ ରୂପେ ସର୍ବଦେହେ ଥାଇ । ଉଦାସୀଜନ ପ୍ରାୟ ହୋଇ ॥
କାହାରି ସଙ୍ଗେ ସଙ୍ଗ ନୋହେ । ସମେ ବସଇ ସର୍ବଦେହେ ॥
ମୁଁ ଏହା ପବନୁଁ ବିଗ୍ରହି । ଶିଖିଲି ଗୁରୁଶିକ୍ଷା କରି ॥
ଏଣୁ ପବନ ପ୍ରାୟ ହୋଇ । ସଙ୍ଗତେ ଥାଇ ନ ମିଶଇ ॥୪୧
ଆକାଶ ପ୍ରାୟେ ସର୍ବଠାରେ । ବ୍ୟାପିଛି ଆତ୍ମା ନିର୍ବିକାରେ ॥
ଦେହରେ ଥାଇ ସଙ୍ଗ ନୋହେ । ଘଟ ଆକାଶ ପ୍ରାୟ ରହେ ॥
ମେଘ ଯେସନେ ଶୂନ୍ୟେ ଥାଇ । ଶରୀରେ ଆକାଶ ଢାଙ୍କଇ ॥
ଭୂମି ଲୋକଙ୍କୁ ଛାୟା ଦିଶେ । ସେ ଯେହ୍ନେ ଆକାଶେ ନ ମିଶେ ॥
ତେସନେ ଆତ୍ମା ଦେହ ଗୁଣେ । ନ ମିଶେ ଏହା ଚିନ୍ତି ମନେ ॥
ମୁଁ ଯେ ଆକାଶ ଗୁରୁ କରି । ଅବନୀ ମଧ୍ୟେ ଦେହ ଧରି ॥
ଆନନ୍ଦେ ଭ୍ରମଇଁ ସଂସାରେ । ସ୍ପରଶ ନ କରି କାହାରେ ॥
ଏଣୁ ଆକାଶ ଗୁରୁ ମୋର । ଏବେ ହୋ ଶୁଣ ନୃପବର ॥୪୨,୪୩
ଜଳ ଯେସନେ ସୁନିର୍ମଳ । ସ୍ୱଭାବେ ସ୍ନିଗ୍ଧ ସୁମଧୁର ॥
ମଧୁର ସୁରୁଚି ବଚନେ । ହରଷ କରି ସର୍ବଜନେ ॥
ତୀର୍ଥର ପ୍ରାୟେ ଭବବନେ । ଭ୍ରମଇଁ ଜନ ପରିତ୍ରାଣେ ॥
ତୀର୍ଥ ସ୍ପରଶେ ଲୋକବୃନ୍ଦ । ଯେସନେ ଲଭନ୍ତି ଆନନ୍ଦ ॥
ସ୍ନାହାନ ଦର୍ଶନ କୀର୍ତ୍ତନେ । ପବିତ୍ର ହୋନ୍ତି ପ୍ରାଣୀମାନେ ॥
ଏ ଅନୁଭବେ ମୋର ଶିକ୍ଷା । ଜଳୁଁ ଶିଖିଲି ଗୁରୁଦୀକ୍ଷା ॥୪୪
ତପେ ମୋହର କଳେବର । ସୁଦୀପ୍ତ ତେଜ ବଳୀୟାର ॥
କେବଳ ପାତ୍ର ମୋ ଉଦର । ଏଣୁ ମୁଁ ଲୋକେ ଭୟଙ୍କର ॥
ତେଣୁ ମୁଁ ଧ୍ୟାନଯୋଗ ବଳେ । ଭୋଜନ କରେ ସର୍ବଠାରେ ॥

ଅଗ୍ନି ଯେସନେ ସର୍ବ ଖାଇ । ବିଗ୍ରହେ ଗୁଣ ଦୋଷ ନାହିଁ ॥
କେବେ ପ୍ରକାଶେ ଅପ୍ରକାଶେ । ଭୋଜନ କରେ ସର୍ବ ବାସେ ॥
ଶ୍ରେୟ ଇଚ୍ଛନ୍ତା ଦାତାଙ୍କର । ପାପ ନାଶଇ ପୂର୍ବାପର ॥
ଆପଣା ମାୟାରେ ସୃଜନ । ଯେ ସତ ଅସତ ଲକ୍ଷଣ ॥
ତହିଁ ପ୍ରବେଶ ହୋଇ ତାର । ସ୍ୱରୂପ ପ୍ରକାଶେ ଈଶ୍ୱର ॥
ଅଗ୍ନି ଯେମନ୍ତ କାଷ୍ଠ ପାଇ । ତେମନ୍ତ ରୂପ ପ୍ରକାଶଇ ॥
ଏଣୁ ଅଗ୍ନିକୁ ଗୁରୁ କରି । ଭ୍ରମଇଁ ଲୋକେ ଦେହ ଧରି ॥୪୫-୪୭
ଜନ୍ମ ଯୌବନ ଜରା ମୃତ୍ୟୁ । ଶୁଭ ଅଶୁଭ ଦୁଃଖ ହେତୁ ॥
ଏ ସର୍ବଗୁଣ ବହେ ଦେହ । ଜୀବର ନୋହେ ପରିଗ୍ରହ[୧] ॥
ଚନ୍ଦ୍ରର କ୍ଷୟ ବୃଦ୍ଧି ଯେହ୍ନେ । କୃଷ୍ଣ ଶୁକ୍ଳ ପକ୍ଷମାନେ ॥
ଲୋକ ଲୋଚନେ ଭ୍ରାନ୍ତି ଦିଶେ । ଅକ୍ଷୟ ଏକକଳା ଶେଷେ ॥
ଜୀବର ଏମନ୍ତ ବେଭାର । ସ୍ୱଭାବେ ଅଜର ଅମର ॥
ଏ ଅନୁଭବେ ଚନ୍ଦ୍ର ଗୃହିଁ । ଭ୍ରମଇଁ ଗୁରୁଶିକ୍ଷା ପାଇ ॥୪୮
ଇନ୍ଦ୍ରିୟଗଣ ଏ ଶରୀରେ । ଭ୍ରମନ୍ତି ବିଷୟ ଗୋଚରେ ॥
ଯେଝା ବିଷୟ ଅନୁଦିନେ । ଭୋଗ କରନ୍ତି ନିଜ ସ୍ଥାନେ ॥
ଆତ୍ମାର ସଙ୍ଗ ନାହିଁ ତେଣେ । ଆଦିତ୍ୟ ଯେସନେ କିରଣେ ॥
ସକଳ ସ୍ଥାନୁ ରସ ହରେ । ନିର୍ଦ୍ଦୋଷ ନିର୍ଲେପ ବିଗ୍ରହେ ॥
କାଳରେ ସମସ୍ତ ତେଜଇ । ସଞ୍ଚିତ ଦାନେ କ୍ଷୋଭ ନୋହି ॥୪୯,୫୦
ଏ ଜୀବଆତ୍ମା ସର୍ବ ଦେହେ । ଇନ୍ଦ୍ରିୟ ରସେ ବଶ ନୋହେ ॥
ଯେମନ୍ତେ ରବିବିମ୍ବ ନୀରେ । ତେମନ୍ତ ସ୍ଥୂଳବୁଦ୍ଧି ନରେ ॥
ଆତ୍ମାର ଭେଦବୁଦ୍ଧି କରେ । ଉପାଧି ଗୁଣର ବିକାରେ ॥
ଏ ଭାବେ ଯେତେ ଜନ ଥାନ୍ତି । ତାହାଙ୍କୁ ବୋଲି ମୂଢ଼ମତି ॥
ଏ ଅନୁମାନେ ମୋ ବିଗ୍ରହ । ଏଣୁ ମୋ ଗୁରୁ ଦିବାକର ॥୫୧
ଅଧିକେ ସଂସାର ସଙ୍ଗତେ । ପୀରତି ନ କରିବ ଚିତ୍ତେ ॥
ଯେବେ କରିବ ସ୍ନେହ ଆଶ । କପୋତ ପ୍ରାୟ ଯିବ ନାଶ ॥୫୨

୧. ପରିଗ୍ରହ—ସଂସର୍ଗ ବା ସମ୍ବନ୍ଧ ।

ଶୁଣ ରାଜନ ସାବଧାନେ । କପୋତପକ୍ଷୀ ଘୋର ବନେ ॥
କପୋତୀ ସଙ୍ଗେ ସ୍ନେହଭରେ । ଅରଣ୍ୟେ ଗୃହବାସ କରେ ॥
କପୋତୀ ସଙ୍ଗେ ଭୋଗ ଆଶେ । ଦୃଢ଼େ ଯନ୍ତ୍ରିତ ସ୍ନେହପାଶେ ॥
ନିତ୍ୟେ କରନ୍ତି କ୍ରୀଡ଼ାରଙ୍ଗେ । ନିମିଷେ ନ ଛାଡ଼ନ୍ତି ସଙ୍ଗେ ॥
ଦୃଷ୍ଟିକି ଦୃଷ୍ଟି ଅଙ୍ଗେ ଅଙ୍ଗ । ବୁଦ୍ଧିକି ବୁଦ୍ଧି କରି ସଙ୍ଗ ॥
ସ୍ନେହ ବନ୍ଧନ ସଙ୍ଗମେଳେ । କାଳ ବଞ୍ଚନ୍ତି କୁତୂହଳେ ॥
ସଙ୍ଗ ବିଚ୍ଛେଦ ତିଳେମାତ୍ରେ । କେବେହେଁ ନ ଦେଖନ୍ତି ନେତ୍ରେ ॥
ଏକତ୍ର ଭୋଜନ ଶୟନେ । ଏକତ୍ର ବିହରନ୍ତି ବନେ ॥୫୩-୫୫
କପୋତୀ ଚିତ୍ତେ ଯା ବିଗ୍ରହେ । କପୋତ ଆଣେ ତତପରେ ॥
ସେବକ ପ୍ରାୟେ ଦିଏ ଆଣି । ଯାହା ମାଗଇ ତା ଘରଣୀ ॥୫୬
ଏମନ୍ତେ କେତେଦିନ ଗଲା । କପୋତୀ ଗର୍ଭ ଉପୁଜିଲା ॥
କେତେହେଁ ଦିନ ଗର୍ଭେ ଥାଇ । ଜନ୍ମ ହୋଇଲେ ଡିମ୍ବ ଦୁଇ ॥
ପକ୍ଷୀପକ୍ଷିଣୀ ପୁତ୍ର ଆଶେ । ଡିମ୍ବ ତାପନ୍ତି ସ୍ନେହ ବଶେ ॥
ହରିର ଶକ୍ତି ଅଗୋଚରେ । ତାପନ୍ତେ ସେ ଡିମ୍ବ ଭିତରେ ॥
କେତେହେଁ ଦିନ ତହିଁ ଗଲା । ଫୁଟି ବାଳକ ଉପୁଜିଲା ॥
ଅତି କୋମଳ ବେନି କାୟେ । ଦେଖି ସାନନ୍ଦ ବାପମାଏ ॥
ସମ୍ଭ୍ରମେ କପୋତ କପୋତୀ । ନିରତେ ବାଳକେ ପୋଷନ୍ତି ॥
ପୁତ୍ରଙ୍କ କୋମଳ ବଚନ । ଶୁଣନ୍ତେ ମୁଦ୍ରିତ ଲୋଚନ ॥
ପତଙ୍ଗ ଉଚିତ ଆହାରେ । ପାଳନ୍ତି ଅତି ସ୍ନେହଭରେ ॥
ଏମନ୍ତେ ବେନି ଶିଶୁ ପାଳି । ପକ୍ଷୀ ସ୍ୱଭାବେ ରୋମାବଳୀ ॥
ଉଠନ୍ତେ ବେନି ପୁତ୍ର ଦେହେ । ଦେଖି ସାନନ୍ଦ ବାପମାଏ ॥୫୭-୬୦
ପାଳନ୍ତି ଅତି ସ୍ନେହଭରେ । ବାଳକ କୋମଳ ଆହାରେ ॥
ବିଷ୍ଣୁର ମାୟା ମୋହେ ଯନ୍ତ୍ରି । ପାଳନ୍ତି କପୋତ କପୋତୀ ॥୬୧
ଆହାର ଅର୍ଥେ ଏକଦିନେ । ବନେ ପଶିଲେ ବେନିଜନେ ॥
ଖୋଜନ୍ତି କୋମଳ ଆହାର । ଏମନ୍ତେ ଶୁଣ ନୃପବର ॥୬୨

ପକ୍ଷୀବାଳକ ନିଜ ସ୍ଥାନେ । ବ୍ୟାଧ ମିଳିଲା ଘୋର ବନେ ॥
ବୃକ୍ଷୁଁ ଉତୁରି ବେନି ବାଳେ । ବନେ ଚରନ୍ତି ବୃକ୍ଷତଳେ ॥
ଶବର ଦେଖି ତାହା ବେଗେ । ଜାଲ ପାତିଲା ଗୃହିଦିଗେ ॥
ଉପରେ ବାନ୍ଧିଲା ଦଉଡ଼ି । ପକ୍ଷୀଙ୍କି ଆଣିଲା ଘଉଡ଼ି ॥
ଆହାର ଦେଇ ଜାଲତଳେ । ଅନ୍ତରେ ବସିଲା ନିଶ୍ଚଳେ ॥
ପକ୍ଷୀବାଳକ ଭୟ ପାଇ । ଜାଲେ ପଡ଼ିଲେ ବେଗେ ଯାଇ ॥
ଆହାର ଦେଖିଲେ ନୟନେ । ପଡ଼ିଲେ ଲୁବ୍ଧକ ବନ୍ଧନେ ॥୬୩
ତକ୍ଷଣେ କପୋତ କପୋତୀ । ଆସି ମିଳିଲେ ବୃକ୍ଷକତି ॥
ତୁଣ୍ଡେ ଆହାର ଦୃଢ଼େ ଧରି । ବୃକ୍ଷେ ଲୋଡ଼ନ୍ତି ଅନୁସରି ॥
ନ ଦେଖି ଗୃହିଁ ଦଶଦିଗେ । ପୁଣି ଦେଖିଲେ ଭୂମିଭାଗେ ॥
ବନ୍ଧନ ଜାଲ ମଧ୍ୟେ ଦୃଢ଼େ । ବେନି ବାଳକ ଧଡ଼ପଡ଼େ ॥
ଉଡ଼ନ୍ତି ପ୍ରାଣର ବିକଳେ । ନାଦ କରନ୍ତି କୋଳାହଳେ ॥୬୪,୬୫
ଦେଖି କପୋତୀ ଦୁଃଖଚିତ୍ତେ । ଭୂମିରେ ପଡ଼ି ମୋହଗତେ ॥
ବାଳକ ଦେଖି ଜାଲ ତଳେ । କାନ୍ଦଇ ଜୀବନ ବିକଳେ ॥
ବାଳକ ସ୍ନେହଭର ଆଶେ । ଡେଇଁ ପଡ଼ିଲା ଜାଲ ପାଶେ ॥୬୬
ପୁତ୍ରଙ୍କ ମୁଖେ ମୁଖ ଦେଇ । ଦେଖି କପୋତ ବିସ୍ମରଇ ॥
ପ୍ରାଣୁଁ ଅଧିକେ ମୋର ସୁତେ । ପଡ଼ିଲେ ଶବର ଆୟତ୍ତେ ॥
ପତ୍ନୀ ପଡ଼ିଲା ଜାଲ ମଧ୍ୟେ । ପ୍ରାଣ ଧରିବି କେଉଁ ସଧେ ॥
ପତ୍ନୀ ମୋହର ପ୍ରାଣସଖୀ । ସେ ମୋତେ କରିଗଲା ଏକା ॥
ତାହାର ଗୁଣ ଅଛି ଯେତେ । ଚିତ୍ତେ ମୁଁ ଧରିବି କେମନ୍ତେ ॥
ସେ ମୋର ଜୀବନ ଯୁବତୀ । ତା ବିନୁ କେବା ମୋର ଗତି ॥
ବିଧି ହୋଇଲା ବାମ ମୋର । ଆପଦେ ବୁଡ଼ିଲା ମୋ ଘର ॥
ଏ ଘୋର ବନେ ଗୃହୀପଣେ । ମୋ ଜନ୍ମ ଗଲା ଅକାରଣେ ॥
ଗୃହ ଆଶ୍ରମେ ମୋ ପୀରତି । କାମେ ମୋ ନ ପୂରିଲା ମତି ॥

ବିଧାତା ମୋର ବାମ ହୋଏ । ବନ୍ଧନେ ପଡ଼ିଲେ ମୋ ପୋଏ ॥
ଏ ପତିବ୍ରତା ଶିରୋମଣି । ଯେ ମୋର ପ୍ରାଣର ଘରଣୀ ॥
ଆହାର ଆଣି ଯେତେବେଳେ । ମୁହିଁ ଭୁଞ୍ଜଇ ବୃକ୍ଷଡାଳେ ॥
ତେବେ ସେ ଭୁଞ୍ଜେ ମୋ ଘରଣୀ । ମୋ ବିନୁ ନ ଭକ୍ଷଇ ପାଣି ॥
ସେ ମୋତେ ଥୋଇ ଶୂନ୍ୟଗୃହେ । ସ୍ୱର୍ଗେ ଚଳିଲା ପୁତ୍ରସ୍ନେହେ ॥
ସକଳ ସୁଖ ମୋର ଗଲା । ପୁତ୍ର ସଙ୍ଗତେ ପତ୍ନୀ ମଲା ॥୬୭-୬୯
ଏତେ କଷଣ ଗୃହେ ସହି । ମୋ ପ୍ରାଣ ଥିବା ନ ଯୋଗାଇ ॥
ଏବେ ମୁଁ ଏକା ଗୃହେ ଥାଇ । କେମନ୍ତେ ସମ୍ଭାଳିବି ଦେହି ॥
ଏମନ୍ତେ କରଇ ରୋଦନ । କ୍ଷଣ କ୍ଷଣକେ ଅଚେତନ ॥
ପଡ଼ଇ ପୁଣ ପୁଣ ତଳେ । ପୁଣି ବସଇ ବୃକ୍ଷଡାଳେ ॥
ଏମନ୍ତ କରଇ ବିଳାପ । କାନ୍ଦଇ ପାଇ ମନସ୍ତାପ ॥
ଜୀବନ ନ ପାରିଲା ଧରି । ଜାଲେ ପଡ଼ିଲା ହା ହା କରି ॥୭୦,୭୧
କପୋତ କପୋତୀ ବାଳକ । ଘେନିଣ ଚଳିଲା ଲୁବ୍ଧକ ॥
ପିଞ୍ଜରେ ଥୋଇଲା ଯତନେ । ମିଳିଲା ଯାଇ ନିଜ ସ୍ଥାନେ ॥
ଏମନ୍ତେ ଗଲା ନିଜ ପୁରେ । ଶୁଣ ରାଜନ ମନସ୍ଥିରେ ॥୭୨
ଏ ରୂପେ ସ୍ନେହ ଅବଲମ୍ବି । ସଂସାର ବନ୍ଧନେ କୁଟୁମ୍ବୀ ॥
ଦୁଃଖ ସହଇ ଏ ଶରୀରେ । ନିତ୍ୟେ କୁଟୁମ୍ବ ପୋଷିବାରେ ॥
ନିରତେ ଆକୁଳ ହୃଦୟ । ଏଣୁ ବୋଲାଇ ଦୁଃଖମୟ ॥
କପୋତ ପ୍ରାୟ ଏ ସଂସାରେ । ମଜ୍ଜଇ ଘୋର ଅନ୍ଧକାରେ ॥୭୩
ତୁ ଏବେ ବୁଝି ମୋ ବଚନ । ଭୋ ରାଜା ସ୍ଥିର କର ମନ ॥
ଦେଖ ମନୁଷ୍ୟ କଳେବର । କେବଳ ମୁକତିର ଦ୍ୱାର ॥
ଏ ଦେହ ପାଇ ମହୀତଳେ । ହେଲେ ତରନ୍ତି ଭବଜଳେ ॥
ଦୁର୍ଲ୍ଲଭ ପାଇ ଏ ଶରୀର । କୁଟୁମ୍ବେ ଦୃଢ଼ମତି ଯାର ॥
ଦିନ ବଞ୍ଚଇ ଦୁଃଖ ସୁଖେ । ଅନ୍ତେ ପଡ଼ଇ କୁମ୍ଭୀପାକେ ॥
ଏ ରୂପେ ବୁଝିଲି ସଂସାର । ଏଣୁ କପୋତ ଗୁରୁ ମୋର ॥

ଏବେ ତୁ ଶୁଣ ଏକଚିତ୍ତେ । ଭାବେ କହିଲି ମୁହିଁ ଯେତେ ॥
ଏ ଭାବେ ତୁଟଇ ସଂସାର । ବୋଲଇ ନିଗମ ବିଗ୍ରହ ॥୭୪
ଏହା ସଂସାର ଜନହିତେ । ଶ୍ରୀ ଏକାଦଶ ଭାଗବତେ ॥
କହଇ ଦାସ ଜଗନ୍ନାଥ । କୃଷ୍ଣ ଚରଣେ ଦେଇ ଚିତ୍ତ ॥

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଏକାଦଶସ୍କନ୍ଧେ ଶ୍ରୀକୃଷ୍ଣଉଦ୍ଧବସଂବାଦେ କପୋତାଖ୍ୟାନଂ ନାମ ଅଷ୍ଟମୋଽଧ୍ୟାୟଃ ।

□□□

# ନବମ ଅଧ୍ୟାୟ*

ନବମେ ଗୁରୁ ଅଜଗର । ଆଦିଙ୍କ ଶିକ୍ଷା ସମାଗ୍ରହ ॥

*ଅବଧୂତ ଉବାଚ*

ଆନନ୍ଦେ କହେ ଅବଧୂତ । ଶୁଣ ହେ ଯଦୁ ନୃପନାଥ ॥
ସକଳ ସ୍ଥାନେ ମୁହିଁ ଭ୍ରମେ । ମୁଁ ଥାଏ ଅଜଗର ଧର୍ମେ ॥
ସ୍ୱର୍ଗ ନରକ ବେନି ବାଣୀ । ମୁଁ ଏହା ଏକଧର୍ମେ ଜାଣି ॥
ଏଣୁ ମୋ ଦୁଃଖ ସୁଖ ଏକ । ସମେ ଦେଖଇ ସର୍ବଲୋକ ॥ ୧
ଆହାରେ ଭଲ ମନ୍ଦ ନାହିଁ । ଯେ ସ୍ଥାନେ ଯେମନ୍ତ ମିଳଇ ☫ ॥

---

* ମୂଳ ସଂସ୍କୃତ ଅନୁସାରେ ଅଷ୍ଟମ ଅଧ୍ୟାୟ ।

☫ 'ଆହାରେ ଭଲ ମନ୍ଦ ନାହିଁ......' ଇତ୍ୟାଦି ଉକ୍ତିକୁ କେହି କେହି ଜିହ୍ୱାଲାଳସା ଚରିତାର୍ଥେ ନିଜ ଇଚ୍ଛା ଅନୁରୂପ ସ୍ଥଳରେ ପ୍ରୟୋଗ କରି ମଦ୍ୟ ମାଂସାଦି ଅପବିତ୍ର ଦ୍ରବ୍ୟ ଭକ୍ଷଣରେ ଦୋଷ ନାହିଁ ବୋଲି କହିଥାନ୍ତି । ମାତ୍ର ଏଠାରେ ଏ ଉକ୍ତିର ଉଦ୍ଦେଶ୍ୟ ହେଲା—ଅଯାଚକ ବୃତ୍ତିରେ ଜୀବନଯାପନ କରିବା । ଆହାର ନିମନ୍ତେ କୌଣସି ପ୍ରଚେଷ୍ଟା ନ କରି ଏବଂ ସ୍ୱାଦ ଅସ୍ୱାଦ ନ ବାଛି ପ୍ରାରବ୍ଧ ଅନୁସାରେ ଯଥାଲବ୍ଧ ଆହାରରେ ସନ୍ତୁଷ୍ଟ ହେବା ହିଁ ଏଥିର ପ୍ରତିପାଦ୍ୟ ବିଷୟ ।

ସନ୍ତୋଷେ କରଇ ଆହାର । ଏଣେ ବିଗ୍ରର ନାହିଁ ମୋର ॥
ଅଳପ ବହୁତେ ସନ୍ତୋଷ । ନ ମିଳେ କରେ ଉପବାସ ॥
କର୍ମ କଷଣ ଦେହ ସହେ । ଅରଣ୍ୟେ ଅଜଗର ପ୍ରାୟେ ॥
ସମ ମଣଇ ଦୁଃଖ ସୁଖ । ଅନ୍ତରେ ନୁହଇ ବିମୁଖ ॥୨,୩
ଦେହ ଇନ୍ଦ୍ରିୟବଳ ଥାଇ । ଉଦ୍ୟମ କିଛି ନ କରଇ ॥
ଏ ଧର୍ମ ଅଜଗର ଗ୍ରହିଁ । ଶିଖିଲି ଗୁରୁଶିକ୍ଷା ପାଇ ॥ ୪
ଏଣୁ ପ୍ରସନ୍ନ ଚିତ୍ତ ମୋର । ସ୍ୱଭାବେ ନିର୍ମଳ ଶରୀର ॥
କେ ଜାଣିପାରେ ମୋ ଅନ୍ତର । ଗଭୀର ଯେସନେ ସାଗର ॥ ୫
ବରଷା ସମୟରେ ନଦୀ । ସମୂହେ ବହନ୍ତି ଆଚ୍ଛାଦି ॥
ସେ ଯେହ୍ନେ ମିଳନ୍ତେ ଜଳଧି । ତେଣେ ସେ ନୁହଁଇ ନା ବୃଦ୍ଧି ॥
ଗ୍ରୀଷମେ ନୋହେ ହାନି ତାର । ସର୍ବଦା ସମ ସେହୁ ନୀର ॥
ସେ ରୂପେ ଜାଣ ମୁହିଁ ମନେ । ହାନି ବୃଦ୍ଧି ଭାବ ନ ଘେନେ ॥
ତେଣୁ ମୁଁ ନାରାୟଣ ପର । ନାହିଁ ବିଷୟ ଆଶା ମୋର ॥
ଏହା ସମୁଦ୍ରୁଁ ଶିକ୍ଷା ପାଇ । ସାଧଇ ଶିଷ୍ୟଭାବ ବହି ॥ ୬
ବିଷ୍ଣୁର ମାୟା ମୋହକଳ୍ପ । କପଟେ ହୋଇ ସ୍ତିରୀରୂପ ॥
ଜଗମୋହିନୀ ଦେବମାୟା । ଘନେ ଯେସନେ ବିଦ୍ୟୁଚ୍ଛାୟା ॥
ତା ରୂପେ ନ କରିବ ସଙ୍ଗ । ଅନଳେ ଯେସନେ ପତଙ୍ଗ ॥
ସଂଯୋଗେ କରେ ପ୍ରାଣ ନାଶ । ଏଣୁ ନୋହିବ ତା ବିଶ୍ୱାସ ॥
ପତଙ୍ଗ ତହୁଁ ଏହା ଜାଣି । ଗୁରୁବଚନ ପରିମାଣି ॥
ସ୍ତିରୀ ସଙ୍ଗମ କରି ଦୂରେ । ନିଶ୍ଚିନ୍ତେ ଭ୍ରମଇଁ ସଂସାରେ ॥୭,୮
ଏବେ ହୋ ଶୁଣ ନୃପବର । ଗୁରୁ ମୋହର ମଧୁକର ॥
ଅଳପ ଅଳ୍ପ ଗ୍ରାସ କରି* । ଯାବତ ଦେହ ମାତ୍ର ଧରି ॥

---

* ସାଧୁସନ୍ନ୍ୟାସୀମାନେ ଗୃହସ୍ଥମାନଙ୍କ ଠାରୁ ମଧୁକର ପରି ଅଳ୍ପ ଅଳ୍ପ ଭିକ୍ଷା ଗ୍ରହଣ କରୁଥିବାରୁ ସେମାନଙ୍କର ଏତାଦୃଶ ବୃତ୍ତିକୁ 'ମାଧୁକରୀ ବୃତ୍ତି' କୁହାଯାଏ। ଏପରି ବୃତ୍ତି ଦ୍ୱାରା ଗୃହସ୍ଥମାନଙ୍କ ଉପରେ ଅଧିକ ଭାର ପଡ଼େ ନାହିଁ ଏବଂ ଭିକ୍ଷୁର କାହାରି ପ୍ରତି ଆସକ୍ତି ମଧ୍ୟ ହୁଏ ନାହିଁ। ଅନ୍ୟଥା ଗୋଟିଏ

ଆହୁରି ତାର ଉପଦେଶ । ପାଇ ମୋ ମନ ହେଲା ତୋଷ ॥
ସେ ସର୍ବ ପୁଷ୍ପେ ବସୁଥାଇ । କେବଳ ସାର ମାତ୍ର ଗ୍ରାହୀ ॥
ମୁହିଁ ସକଳ ଗ୍ରନ୍ଥମାନ । ବିଗ୍ରହ କରି ହାଦେ ପୁଣ ॥
ଯେ ସର୍ବସାର ଆମ୍ଭହିତେ । ସେ କଥା ଘେନୁଥାଏ ଚିତ୍ତେ ॥୯,୧୦
ଯେବା ମିଳଇ ଭିକ୍ଷାଅନ୍ନ । ରାତ୍ରରେ କରଇ ଭୋଜନ ॥
ଗତ ଆଗତକୁ ନ ପାଞ୍ଚେ । ପାଣି ଉଦରପାତ୍ରେ ସଞ୍ଚେ ॥
ଧନେ ମୋ ନାହିଁ ପ୍ରୟୋଜନ । ଏଣୁ ଦରିଦ୍ର ମୋ ଜୀବନ ॥
ଧନ ଅର୍ଜନେ ଯାର ଆଶ । ନିରତେ ସୁଖଦୁଃଖ ପ୍ରାସ ॥
ନ କରି ସୁଖଭୋଗ ଦାନ । ଧନ ସଞ୍ଚଇ ରାତ୍ରଦିନ ॥
ନିରତେ କରଇ ସଞ୍ଚୟ । ପାପୀ କୃପଣ ଦୁରାଶୟ ॥
ଆନେ ହରଇ ତାର ଧନେ । ମଧୁ ସଞ୍ଚଇ ମାଛି ଯେହ୍ନେ ॥
ନ ଦେଇ ନ ଖାଇ ସଞ୍ଚଇ । ତାହାର ମୁଖେ ଅଗ୍ନି ଦେଇ ॥
ମଧୁ ଭକ୍ଷଇ ନେଇ ଆନ । ତେଣୁ ସେ ଗୁରୁ ମୋ ରାଜନ ॥୧୧,୧୨
କାଷ୍ଠପିତୁଳି ସ୍ତିରୀ ରୂପେ । ଥୋଇବ ଯତିଙ୍କ ସମୀପେ ॥
ଯତିଏ ତାର ରୂପ ଗ୍ରହି । ଚରଣ ଅଗ୍ରେ ଯେବେ ଛୁଇଁ ॥
ମନ ମଜ୍ଜଇ ତାହାଙ୍କର । ଯେଣୁ ମନ୍ମଥ ସୁଖଘର ॥
ଜଳେ ପାଷାଣ ପ୍ରାୟେ ମଜ୍ଜେ । ଗଜବନ୍ଧନ ଯେହ୍ନେ ଗଜେ* ॥
ଏଣୁ କୁଞ୍ଜରଭାବ ଜାଣି । ଗୁରୁ ବଚନ ପରିମାଣି ॥

---

ମାତ୍ର ପଦ୍ମରେ ଆସକ୍ତ ଭ୍ରମର ରାତ୍ରି ଆଗମନ ହେତୁ ପଦ୍ମ ମଧ୍ୟରେ ଆବଦ୍ଧ ହୋଇଯିବା ପରି ଜିହ୍ୱାଲାଳସାବଶତଃ ଜଣେ ଗୃହସ୍ଥର ଅନ୍ନ ଗ୍ରହଣ କଲେ ଯତି ସାଂସର୍ଗିକ ମୋହରେ ପଡ଼ି ଭ୍ରଷ୍ଟ ହୋଇଯିବ ।

* ହାତୀ ଧରିବା ପାଇଁ ଲୋକେ ଏକ ବିଶାଳ ଗାତ ଖୋଳି ତା ଉପରେ କାଠିକୁଟା ଘୋଡ଼ାଇ ଦେଇଥାନ୍ତି ଏବଂ ତା ଉପରେ କାଗଜ ପ୍ରଭୃତିରେ ତିଆରି ମାଈ ହାତୀଟିଏ ଠିଆ କରାଇଦିଅନ୍ତି । ତାହାକୁ ଦେଖି ଅଣ୍ଡିରା ହାତୀ କାମାସକ୍ତ ହୋଇ ଆସି ଗାତରେ ପଡ଼ିଯାଏ ।

ସଙ୍ଗ ନ କରି ସ୍ତିରୀ ମେଳେ । ଏକା ଭ୍ରମଇ ମହୀତଳେ ॥
ଏଣୁ କାମିନୀ ସଙ୍ଗ ତେଜି । ଜ୍ଞାନେ ବୁଲଇ ଚକ୍ଷୁ ବୁଜି ॥୧୩,୧୪
ଶୁଣ ସୁଚିତ୍ତେ ନୃପବର । ମଧୁହାରୀ ସେ ଗୁରୁ ମୋର ॥
ମଧୁମକ୍ଷିକା ପୁଷ୍ପସାର । ନେଇ ରଖଇ ନିଜଘର ॥
ବିନା ଉଦ୍ୟମେ ମଧୁହାରୀ । ଭୁଞ୍ଜଇ ବଳେ ତାହା ହରି ॥
ଏ ରୂପେ ଗୃହୀ ଦୁଃଖ ପାଇ । ଅନ୍ନ ବ୍ୟଞ୍ଜନ ରଖେ ନେଇ ॥
ଅତିଥି ଆସି ଭୁଞ୍ଜେ ତାହା । ଏମନ୍ତେ ମୋ ଗୁରୁ ମଧୁହା ॥୧୫,୧୬
ଯେ ଥିବ ବନଚର ମତେ । ଚିତ୍ତ ନ ଦେବ ଗ୍ରାମ୍ୟଗୀତେ[୧] ॥
ନିରତେ ଜ୍ଞାନେ ଥିବ ମନ । ଯୋଗ ସଂଯୋଗେ ଅବଧାନ ॥
ଲୁବ୍ଧକ ଗୀତ ଶୁଣି କର୍ଣ୍ଣେ । ଯେସନେ ମୃଗ ମରେ ବନେ ॥
ଏଣୁ ନ ଶୁଣି ଗ୍ରାମ୍ୟଗୀତ । ବୁଲଇ ଜ୍ଞାନେ ଦେଇ ଚିତ୍ତ ॥୧୭
ସଙ୍ଗୀତ ବାଦ୍ୟ ନୃତ୍ୟରଙ୍ଗେ । ଅରଣ୍ୟେ ବେଶ୍ୟାଗଣ ସଙ୍ଗେ ॥
ଚିତ୍ତେ ତାହାଙ୍କ ଭାବ ଘେନି । କାନନେ ଋଷ୍ୟଶୃଙ୍ଗ ମୁନି ॥
ବନ୍ଦୀ ହୋଇଲେ କାମପାଶେ । ଶ୍ରବଣ ଇନ୍ଦ୍ରିୟ ଲାଳସେ ॥
ଏଣୁ ମୁଁ ମୃଗ ଗୁରୁ କରି । ଭ୍ରମଇ ଆଶା ଦୂର କରି ॥୧୮
ଜିହ୍ୱା ମଧୁର ରସ ପାଇ । ଲାଳସେ ଛାଡ଼ି ନ ପାରଇ ॥
ମୃତ୍ୟୁ ଲଭଇ ଲୋଭେ ତେଣେ । ମୀନ ବଡ଼ିଶୀ[୨] ଥୋପେ ଯେହ୍ନେ ॥୧୯
ଜିହ୍ୱାକୁ ବର୍ଜି ଇନ୍ଦ୍ରିଗଣ । ହେଲେ ତ ଜିଣିପାରେ ଜନ ॥
ଏ ବୋଲ ବୁଝିଣ ଯେ ପ୍ରାଣୀ । ଯେବେ ଜିହ୍ୱାକୁ ପାରେ ଜିଣି ॥
ତେବେ ଜିଣଇ ଇନ୍ଦ୍ରିଗଣ । ସେ ପ୍ରାଣୀ ନିଶ୍ଚେ ନାରାୟଣ ॥
ଏଣୁ ସେ ମୀନ ଗୁରୁ ମୋର । ଏବେ ହୋ ଶୁଣ ନୃପବର ॥୨୦,୨୧
ପୂର୍ବେ ଯେ ବିଦେହ ନଗରେ । ପିଙ୍ଗଳା ବେଶ୍ୟା ଥିଲା ଘରେ ॥
ତାହାର ଧର୍ମ ମୁଁ ଆଚରି । ବୁଲଇ ଗୁରୁଶିକ୍ଷା କରି ॥

---

୧. ଗ୍ରାମ୍ୟଗୀତ—ବିଷୟଭୋଗ ସମ୍ବନ୍ଧୀୟ ସଂଗୀତ ବା ଚର୍ଚ୍ଚା ।
୨. ବଡ଼ିଶୀ—ମାଛଧରା ବନିଶୀ ।

ଶୁଣ ନୃପତି ସାବଧାନେ । ପିଙ୍ଗଳା ବେଶ୍ୟା ଏକଦିନେ ॥
ଧନୀପୁରୁଷ-ସୁତ ମେଳେ । ସଙ୍କେତ କଲା କାମଭୋଳେ ॥
ସଲଜ୍ଜେ ଯାଇ ତାର ପାଶ । ବୋଲଇ ମୋର ଗୃହେ ଆସ ॥
ଅନ୍ୟ ପୁରୁଷେ କାର୍ଯ୍ୟ ନାହିଁ । ତୋ ସଙ୍ଗେ ବିହରିବି ମୁହିଁ ॥
ବହୁତ ଧନ ଦେବ ମୋତେ । ଏମନ୍ତ ଭାଳି ଲୋଭଚିତ୍ତେ ॥
ଧନେ ବ୍ୟାକୁଳ ତାର ଚିତ୍ତ । ଏମନ୍ତେ ରବି ହେଲା ଅସ୍ତ ॥
ସୁବେଶ କଲା ନିଜ ଦେହୀ । ବସ୍ତ୍ର ଭୂଷଣ ଗନ୍ଧ ଦେଇ ॥
ଅତି ସୁନ୍ଦର ତନୁ ବେଶେ । ଦ୍ୱାରେ ବସିଲା ତାର ଆଶେ ॥
ତିମିର ପ୍ରକାଶିଲା ନିଶି । ତାହାର ଦ୍ୱାରେ ଲୋକେ ଆସି ॥
ଅଳପ ଧନ ଦେଲେ ଆଣି । ସମ୍ମତ ନ କଲା ତରୁଣୀ ॥
ପଥେ ଯେ ଆତଯାତ ଜନେ । ତାହାଙ୍କୁ ନିରେଖି ନୟନେ ॥
ଘରୁ ବାହାରି ଦ୍ୱାରେ ମିଳି । ପଥକୁ ଗ୍ରହିଁଇ ନିରୋଳି ॥
ପୁଣି ଶୁଣଇ ବାକ୍ୟ ଯେଣେ । ଧନୀ ଅଇଲା ପ୍ରାୟ ମଣେ ॥
ରଜନୀ ଦଶଦଣ୍ଡ ଗଲା । ଏମନ୍ତେ ଚିନ୍ତଇ ପିଙ୍ଗଳା ॥
ନିଶ୍ଚୟେ ଧନବନ୍ତ କେହି । ପ୍ରବେଶ ହେବ ମୋର ତହିଁ ॥୨୨-୨୫
ଏମନ୍ତେ ବସି ନିଜ ଦ୍ୱାରେ । କ୍ଷଣ କ୍ଷଣକେ ପଶେ ଘରେ ॥
ଏରୂପେ ଧନର ଉଛାଟେ । ଉନ୍ନିଦ୍ରେ ବୁଲେ ଛଟପଟେ ॥
ପୁଣି ଭାଳଇ ଦୁଃଖମନେ । ଧନିକ ନଇଲା କେସନେ ॥
ସଙ୍କେତ କଲା ମୋର ସଙ୍ଗେ । ଧନେ ସୁରତି ସୁଖ ରଙ୍ଗେ ॥
ଏବେ ସେ ନଇଲା କିମ୍ପାଇଁ । କିବା କାରଣ ତାର ହୋଇ ॥
ଏମନ୍ତେ ମନ ତାକୁ ଦେଇ । ଭାଳଇ ନିଜ ଦ୍ୱାରେ ରହି ॥
ଅନ୍ତରେ କରଇ ବିଗ୍ରର । ପୁଣି ପଶଇ ନିଜ ଘର ॥
ଘରେ ବାହାରେ ପୁଣ ପୁଣ । ଅସ୍ଥିରେ କରଇ ଭ୍ରମଣ ॥
ରଜନୀ ଅର୍ଦ୍ଧ ଭୋଗ ଗଲା । ଧନୀକୁ ନ ଦେଖି ପିଙ୍ଗଳା ॥
ସୁବେଶ ତନୁ ଥିଲା ସାଜି । ନିରାଶେ ସର୍ବ ଗଲା ଭାଜି ॥

ନିଃଶ୍ୱାସ ଛାଡ଼ଇ ଉଚ୍ଚରେ । ଦୁଃଖେ ବସିଲା ନିଜ ଦ୍ୱାରେ ॥
ଦେଖି ତାହାର ପୂର୍ବଭାଗ୍ୟ । ଚିତ୍ତେ ଉପୁଜିଲା ବୈରାଗ୍ୟ ॥
ତେଣୁ ସେ କଲା ମନସ୍ଥିର । ଅନ୍ତରେ କରଇ ବିଗ୍ଭର ॥୨୬-୨୯

*ପିଙ୍ଗଳା ଉବାଚ*

ଦେଖ ମୋହର ମୋହଜାଲ । ଅଜ୍ଞାନେ ବଞ୍ଚିଲି ମୁଁ କାଳ ॥
ସର୍ବ ନାଶିଲି ଧନ ଲୋଭେ । ନାରୀ ସ୍ୱଭାବେ କାମଭାବେ ॥
ଅସାଧୁ ପୁରୁଷଙ୍କ ମେଳେ । କାନ୍ତର ଭାବେ କାମଭୋଳେ ॥
ରମିଲି ଧନେ ଦେଇ ମନ । ଧିକ ଏ ମୋହର ଜୀବନ ॥୩୦
ନିକଟେ ଅଛି ମୋର ଭର୍ତ୍ତା । ସର୍ବ ସମ୍ପଦ ସୁଖ-ଦାତା ॥
ଅନାଥ ନାଥ ଜନହିତା । ମୁକତି ଗତିର ବିଧାତା ॥
ଯେ ନିତ୍ୟ ପୁରୁଷ ରତନ । ତାହାଙ୍କ ଦୂରେ ଥୋଇ ମନ ॥
ରମିଲି କୁପୁରୁଷ ସଙ୍ଗେ । ଅଜ୍ଞାନ ମୋହ ରତିରଙ୍ଗେ ॥
ବୁଦ୍ଧି ମୋହର ଦୁଷ୍ଟ ଅତି । ବିପାକ[୧] ଫଳେ ହୀନଗତି ॥
ବଞ୍ଚିଲି ତୁଚ୍ଛଜନ ମେଳେ । ପୂର୍ବ ପାତକ କର୍ମଫଳେ ॥
ବୃଥା ତାପିତ ହେଲି ମୁହିଁ । ସ୍ତିରୀ ଲମ୍ପଟେ ଭାବ ବହି ॥
ଅର୍ଥ ତୃଷ୍ଣାରେ ହୋଇ ମତ୍ତ । ଏ ଦେହ କଲି ମୁଁ ବିଅର୍ଥ ॥୩୧,୩୨
ଅସ୍ଥି ପଞ୍ଜରା ଗ୍ରରିପାଶେ । ଛାଉଣି ନଖ ରୋମ କେଶେ ॥
ଶିରା ଶିକୁଳି ଗଣ୍ଠି ଯୋଖି । ଚର୍ମ ରୁଧିର ମାଂସ ଲେପି ॥
ଏ କାୟା ଘରେ ବାସ ମୋର । ନିରତେ ବହେ ନବଦ୍ୱାର ॥
ଏହା ମଧ୍ୟରେ ମଳମୂତ୍ର । ସମ୍ପୂର୍ଣ୍ଣେ କଫ ବାତ ପିତ୍ତ ॥
ଦୁର୍ଗନ୍ଧ କୃମି ଲାଳ ନାଡ଼ି । ଅଶେଷ ରୋଗେ ଛନ୍ତି ବେଢ଼ି ॥
ଏମନ୍ତ ଘରେ ମୋତେ ଥୋଇ । ଯେ ଗୁରୁ ଗଲା ଶିକ୍ଷା ଦେଇ ॥
ସେ ଗୁରୁ ବାକ୍ୟ ନ ପ୍ରମାଣି । ଏ ଘରେ ମୁହିଁ ଦୋଗ୍ରୁଣୀ ॥୩୩
ବିଦେହ ନଗରରେ ଥାଇ । ମୋ ପରି ମୂଢ଼ କେହି ନାହିଁ ॥

୧. ବିପାକ—ଦୁର୍ଭାଗ୍ୟ ।

ଆତ୍ମାକୁ ଦିଅନ୍ତି ଯେ ହରି । ତା ତହୁଁ ଆନ ଇଚ୍ଛା କରି ॥
ମୋ ପ୍ରାଣନାଥ ଅଛି ପାଖେ । ମୁହିଁ ନ ଦେଖଇ ପ୍ରତ୍ୟକ୍ଷେ ॥
ସୁହୃଦ ସର୍ବଜୀବ ଆତ୍ମା । ନିର୍ଲେପ ନିର୍ଗୁଣ ମହାତ୍ମା ॥
ପ୍ରିୟ ଆନନ୍ଦ ସୁଖଦାତା । ଘରେ ମୋ ଥାଉଁ ନିଜ ଭର୍ତ୍ତା ॥
ତୁଚ୍ଛ ପୁରୁଷ ସଙ୍ଗେ ରମି । ମୁହିଁ ହୋଇଲି ପଥଶ୍ରମୀ ॥
ନିଷ୍ଫଳ ମୋହର ଜୀବନ । ଅଜ୍ଞାନେ ଗଲା ଏତେ ଦିନ ॥
ଏ ଦେହେ ବସେ ନାରାୟଣ । ସେ ହରି ଛାଡ଼ି ମୂଢ଼ପଣ ॥
ଯେ ଦେହେ ଅଛି ନାନା ରୋଗ । ତା ସଙ୍ଗେ କଲି ରତିରଙ୍ଗ ॥୩୪,୩୫
ମର୍ତ୍ତ୍ୟମଣ୍ଡଳେ ଜନ୍ମ ହୋଇ । ଦେବତା ହୋଇଲେ ମରଇ ॥
ଯାବତ ଅଛି ମୋହପାଶ । ତାବତ ପିଣ୍ଡ ହୁଏ ନାଶ ॥
ଯାବତ ଗୋବିନ୍ଦ ଚରଣ । ଏ ଜୀବ ନ ପଶେ ଶରଣ ॥
ତାବତ ଆତ୍ମା ନୋହେ ସୁଖୀ । ନିରତେ ତାପତ୍ରୟେ ଦୁଃଖୀ ॥
ଏମନ୍ତ ମନେ ବିଗ୍ରିରିଲା । ଆନନ୍ଦେ ଶିରେ କର ଦେଲା ॥
ବୋଲଇ ଧନ୍ୟ ଆଜ ଦିନ । ମୋତେ ପ୍ରସନ୍ନ ଭଗବାନ ॥
ଧନ୍ୟ ମୋହର ପିତାମାତ । ଯେଣୁ ବୈରାଗ୍ୟଜ୍ଞାନ ଜାତ ॥୩୬-୩୮
କୃଷ୍ଣର ଅଭୟ ଚରଣ । ଆଜହୁଁ ପଶିଲି ଶରଣ ॥
ସକଳ ଆଶା ଦୂର କରି । ଭାବେ ସେବିବି ନରହରି ॥୩୯
ଏକାନ୍ତେ ଭ୍ରମି ବନୁ ବନ । ଭଜିବି ଅଭୟ ଚରଣ ॥
ଜଳ ପବନ ମୋ ଆହାର । ସନ୍ତୋଷେ ରଖିବି ଶରୀର ॥୪୦
ଜନ୍ତୁଏ ଭବକୂପେ ପଡ଼ି । କୃଷ୍ଣଭକତି ଦୂରେ ଏଡ଼ି ॥
ଜନ୍ମି ବଞ୍ଚିତ[୧] ଏ ଶରୀରେ । ପଡ଼ନ୍ତି ଦୁଃଖ ମହାଘୋରେ ॥
ବିଷୟ ଯାହାର ଲୋଚନ । ହରଇ ବୁଦ୍ଧି ଆତ୍ମା ମନ ॥
ଏ କାଳ କାଳସର୍ପ ରୂପେ । ଜନ୍ତୁଙ୍କୁ ଗ୍ରାସେ ଭବକୂପେ ॥
ଏହାଙ୍କୁ ପରିତ୍ରାଣ ଦାନ । ଗୋବିନ୍ଦ ବିନୁ ନାହିଁ ଆନ ॥
ନିଷ୍କାମ[୨] ଜନ୍ମେ ଯା ଶରୀରେ । ଆତ୍ମାକୁ ଆପଣେ ଉଦ୍ଧରେ ॥୪୧,୪୨

---

୧. ବଞ୍ଚିତ—ଠକିଯାଇ, ପ୍ରତାରିତ ହୋଇ। ୨. ନିଷ୍କାମ—ବୈରାଗ୍ୟ।

*ଅବଧୂତ ଉବାଚ*

ଏମନ୍ତ ମନେ ମନେ ଚିନ୍ତି । ରଜନୀ ହୁଅନ୍ତେ ପାହାନ୍ତି ॥
ନିଶ୍ଚଳ ଚିତ୍ତ ସମାଧାନେ । ପିଙ୍ଗଳା ଗଲା ଘୋର ବନେ ॥୪୩
ପରମ ସୁଖ ବଇରାଗ । ଆଶା ପରମ ଦୁଃଖ ଯୋଗ ॥
ଏଣୁ ସକଳ ଆଶା ତେଜି । ହରିଚରଣ ଦୃଢ଼େ ଭଜି ॥
ପିଙ୍ଗଳା ଭ୍ରମି ଘୋରବନେ । ପଶିଲା ଶ୍ରୀହରି ଚରଣେ ॥
ଏଣୁ ପିଙ୍ଗଳା ଗୁରୁ ମୋର । ଶୁଣ ହେ ଯଦୁ ନୃପବର ॥୪୪
ବୋଲଇ ବିପ୍ର ଜଗନ୍ନାଥ । ଯେତେ କହିଲେ ଅବଧୂତ ॥
ଶ୍ରୀ ଏକାଦଶ ଭାଗବତେ । ଗୀତେ କହିଲି ଜନହିତେ ॥
ଅଳପ ହୀନବୁଦ୍ଧି ମୋର । ଏଣୁ ଅଜ୍ଞାନ ମୁଁ ପାମର ॥
ନ ଜାଣେ ସମୁଦ୍ରର ଗତି । ହସ୍ତେ ମଛଇ ମୂଢ଼ମତି ॥
ସେବଇ ସୁଜନ ପୟର । ଏ ଦୋଷ କ୍ଷମା କର ମୋର ॥
ସୁଜନେ ମୋର ପ୍ରାଣବନ୍ଧୁ । ଏଣୁ ତରିବି ଭବସିନ୍ଧୁ ॥

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ଏକାଦଶସ୍କନ୍ଧେ ଯଦୁରାଜାବଧୂତସଂବାଦେ ପିଙ୍ଗଳୋପାଖ୍ୟାନଂ
ନାମ ନବମୋଽଧ୍ୟାୟଃ ।

□□□

# ଦଶମ ଅଧ୍ୟାୟ*

ଦଶମେ କୁରରାଦି ସପ୍ତ । ଗୁରୁଙ୍କ ଶିକ୍ଷା ଯେ ବର୍ଣ୍ଣିତ ॥

*ଅବଧୂତ ଉବାଚ*

ଶୁଣ ହେ ଯଦୁ ନୃପବର । ଯେ ଅବା ଅନୁଭବ ମୋର ॥
ଗୁରୁର ଶିକ୍ଷା ମୋର ଯେତେ । ସବୁ କହିବି ତୋ ଅଗ୍ରତେ ॥

---

* ମୂଳ ସଂସ୍କୃତ ଅନୁସାରେ ନବମ ଅଧ୍ୟାୟ ।

ଯେତେ ଏ ଦ୍ରବ୍ୟ ପରିଗ୍ରହ । ସର୍ବ ତୁ ଜାଣ ଦୁଃଖମୟ ॥
ଏ ଘେନି ଜ୍ଞାନୀ ଅକିଞ୍ଚନେ । ନିଶ୍ଚିନ୍ତେ ରହେ ସୁଖମନେ ॥ ୧
ପକ୍ଷୀଙ୍କ ମଧ୍ୟେ ବଳୀୟାର । ସ୍ୱଭାବେ ପ୍ରଚଣ୍ଡ କୁରର ॥
ନିତ୍ୟେ ମାରଇ ନାନା ପକ୍ଷୀ । ଜୀବନ ପୋଷେ ମାଂସ ଭକ୍ଷି ॥
ତାର ମହିମା ଜନେ ଶୁଣି । ବନ୍ଦୀ କରନ୍ତି ଘରେ ଆଣି ॥
ସେ ପୁଣି ନିତ୍ୟେ ପକ୍ଷୀ ମାରେ । ମାଂସ ଭକ୍ଷଇ ନେଇ ପରେ ॥
କେବଳ ଶ୍ରମ ମାତ୍ର ସାର । ନ ଭକ୍ଷେ ଉଚିତ ଆହାର ॥
ଏଣୁ ମୁଁ ତାର ଦୁଃଖ ଗ୍ରହି । ତା ତହୁଁ ଗୁରୁଶିକ୍ଷା ପାଇ ॥
ନ କରି ବସ୍ତୁ ପରିଗ୍ରହ । ଏକା ଭ୍ରମଇଁ ଶୂନ୍ୟଦେହ ॥ ୨
ନାହିଁ ମୋ ମାନ ଅପମାନ । ଗୃହ କଳତ୍ର ପୁତ୍ର ଧନ ॥
ଆତ୍ମାରେ ରମଇଁ ମୁଁ ନିତ୍ୟେ । ଭ୍ରମଇଁ ନିଶ୍ଚିନ୍ତେ ଜଗତେ ॥
ପରମାନନ୍ଦ ରସ ପାଇ । ନିରତେ ସଂସାରେ ଭ୍ରମଇଁ ॥
ବାଳକ ତହୁଁ ଏହା ଶିଖି । ନୁହଇ ନାନା ଦୁଃଖେ ଦୁଃଖୀ ॥
କେବଳ ଆହାର ବେଭାରେ । କ୍ରୀଡ଼ା କରଇ ସର୍ବଦ୍ୱାରେ ॥
କିଛି ହିଁ ଚିନ୍ତା ନାହିଁ ତାର । ଏଣୁ ବାଳକ ଗୁରୁ ମୋର ॥୩,୪
ଏବେ ହୋ ଶୁଣ ମନସ୍ଥିରେ । ପୂର୍ବେ ଯେ ଅବନ୍ତୀ ନଗରେ ॥
ସୁସାଧୁ ସୁନ୍ଦର ଶରୀରେ । କନ୍ୟାଏ ଥିଲା ବିପ୍ରଘରେ ॥
ସେ କନ୍ୟା ବିଭା ଅର୍ଥେ ବରି । ବିପ୍ରେ ମିଳିଲେ ପାଞ୍ଚ ଗ୍ରହି ॥
ସେ କନ୍ୟାପିତା ସଙ୍ଗମେଳେ । ବିବାହ ପ୍ରସ୍ତାବ ନିରୋଳେ ॥
ବିଗ୍ରହ କରି କନ୍ୟାମାତା । ନିକଟେ ବସାଇ ଦୁହିତା ॥
ତଣ୍ଡୁଳ ଅର୍ଥେ ଧାନ୍ୟ ଦେଇ । ବୋଲଇ କନ୍ୟା ମୁଖ ଗ୍ରହିଁ ॥
ବେଗେ ତୁ କୁଟ ରୋଳେ ଭରି । ତା ଶୁଣି ବ୍ରାହ୍ମଣ କୁମାରୀ ॥
ରୋଳେ ମୁଷଳ ଏକ କରି । କୁଟଇ ବେନି କରେ ଧରି ॥
ଭୁଜେ ତା ବଳୟ କଙ୍କଣ । କୁଟନ୍ତେ ବାଜେ ଝୁଣଝୁଣ ॥
ଶୁଣି କୁମାରୀ ଲଜ୍ଜା ପାଇ । ଅଧେ କଙ୍କଣ ହସ୍ତୁ ଫେଡ଼ଇ ॥୫-୭

ପୁଣି କୁଟନ୍ତେ ଧୀରେ ଧୀରେ । ହସ୍ତେ କଙ୍କଣ ନାଦ କରେ ॥
କୁମାରୀ ମନେ ବିଗ୍ରହଇ । ସଙ୍ଗ ଗହଳେ ଗୋଳ ହୋଇ ॥
ଏମନ୍ତ ବିଗ୍ରହିଣ ଥୋକେ । ପୁଣି ଫେଂଇଲା ଏକେ ଏକେ ॥
ବେନି କଙ୍କଣ ବେନି କରେ । କୁଟନ୍ତେ ଶବଦ ନ କରେ ॥
ଯହିଁ ଅନେକ ଲୋକ ମିଳି । ଅବଶ୍ୟ ଉପୁଜଇ କଳି ॥
ତେଣୁ କୁମାରୀ ଅନୁରାଗେ । ଗୁରୁ ବଚନ ଶିକ୍ଷାଭାଗେ ॥
ଏକାନ୍ତେ ଭ୍ରମୁଥାଇ ମୁହିଁ । କେବେହେଁ ସଙ୍ଗ ନ କରଇ ॥୮-୧୦
ଅଭ୍ୟାସେ ଜିଣି ମୁଁ ପବନ । ନିରୋଧି ଏ ଚଞ୍ଚଳ ମନ ॥
ବୈରାଗ୍ୟ ଯୋଗ ଅଭ୍ୟାସନେ । ବୁଲଇ ଆତ୍ମ ସଂଯମନେ ॥
ଏକାଗ୍ର କରି ଦୃଢ଼ ମନ । ହରିର ପାଦେ ନିବେଦନ ॥
ତେଣୁ ନିଶ୍ଚଳ ମୋର ଧ୍ୟାନ । ବଞ୍ଚଇ ଦୁଃଖସୁଖେ ଦିନ ॥
ସ୍ୱଭାବେ ରଜୋଗୁଣ ଛାଡ଼ି । ସତ୍ତ୍ୱ ସଂଯୋଗେ ତମ ଏଡ଼ି ॥
ସତ୍ତ୍ୱକୁ ଜିଣି ସତ୍ତ୍ୱଗୁଣେ । ନିର୍ବାଣ ପରମ କାରଣେ ॥
ନିଶ୍ଚଳେ ଥାଇ ଆତ୍ମଧ୍ୟାନେ । ବାହ୍ୟ ଅନ୍ତର ନ ପ୍ରମାଣେ ॥
ଯେସନେ ଶରକାରୀ[୧] ପଥେ । ଶର ବିନ୍ଧଇ ହେଠ ମାଥେ[୨] ॥
ତାର ନିକଟେ ରାଜା ଗଲା । ସେ ତାହା ଜାଣି ନ ପାରିଲା ॥
ଏଣୁ ତାହାର ତହୁଁ ଦେଖି । ମୁଁ ଏବେ ଗୁରୁଶିକ୍ଷା ଶିଖି ॥୧୧-୧୩
ଏକା ମୁଁ ଭ୍ରମଇ ସଂସାରେ । ମୋହର କାହିଁ ନାହିଁ ଘର ॥
ଏଣୁ ମୁଁ ସାବଧାନ ଚିତ୍ତ । ଅଲକ୍ଷ୍ୟ ଗତି ମୋର ନିତ୍ୟ ॥
ଅଳ୍ପ ଭାଷଣ ମୁନି ପ୍ରାୟେ । ମୁହିଁ ରହଇ ସ୍ଥିର ଦେହେ ॥
ବିଫଳ ଅନିତ୍ୟ ଦେହରେ । ଗୃହ ଆରମ୍ଭ ଦୁଃଖ ଘୋର ॥୧୪
ଏ ଘେନି ଗୃହାରମ୍ଭ ଛାଡ଼ି । ଦେହର ରକ୍ଷା ମାତ୍ର ଲୋଡ଼ି ॥
ଆତ୍ମା କାରଣେ ବ୍ୟର୍ଥ ଘର । କେବେହେଁ ନ କରି ତତ୍ପର ॥

---

୧. ଶରକାରୀ—ବାଣୁଆ, ତୀର ନିର୍ମାତା । ୨. ହେଠ ମାଥେ—ଅବନତ ମସ୍ତକରେ ଅର୍ଥାତ୍ ଏକ ଲୟରେ ।

ଶରୀର ରଖଇ ନିରୋଳେ । ସର୍ପ ଯେସନେ ନାନା ବିଳେ ॥
ଏଣୁ ଉରଗ ଗୁରୁ କରି । ଗୃହସ୍ଥ ଆଶ୍ରମ ନ କରି ॥
ଘର ନ କରି ଏକସ୍ଥାନେ । ବଞ୍ଚଇ ନାନାତୀର୍ଥେ ଦିନେ ॥୧୫
ଦେଖ ଏ ବିଷ୍ଣୁ ମାୟା କରି । ଜଗତ ସର୍ଜଇ ମୁରାରି ॥
ପୁଣି ସଂହାରେ କାଳରୂପେ । ନିରୋଳେ ରହେ ଆତ୍ମସୁଖେ ॥
ପ୍ରକୃତି ପୁରୁଷ ବେନିର । ସ୍ୱଭାବେ ବୋଲାଇ ଈଶ୍ୱର ॥
ଉପାଧି ବର୍ଜିତ ଈଶ୍ୱର । ଫେନ ବିନାଶେ ଯେହ୍ନେ ନୀର ॥
ସେ ହରି ସର୍ବଶକ୍ତି ଧରେ । ସୃଷ୍ଟି ଇଚ୍ଛଇ ଯେତେବେଳେ ॥
ସୃଜଇ ମାୟା ଯୋଗବଳେ । ହେ ନୃପନାଥ ଶୁଣ ଭଲେ ॥
ଏ ଗୁଣମୟୀ ବିଷ୍ଣୁମାୟା । ବେଦବେଦାନ୍ତେ କହେ ଯାହା ॥
ସେ ମାୟା ନାନା ମୂର୍ତ୍ତି ଧରି । ବ୍ରହ୍ମାଣ୍ଡ ମଧ୍ୟେ ଅଛି ପୂରି ॥
ସେ ମାୟାବଳେ ନାରାୟଣ । ଜଗତ କରେ ପୁଣ ପୁଣ ॥
ତା ମଧ୍ୟେ ଜୀବରୂପ ଧରି । ବିହରେ ନାନା କ୍ରୀଡ଼ା କରି ॥
ଯେସନେ କୀଟ ଊର୍ଣ୍ଣନାଭି[୧] । ନିଜ ବଦନୁ ସୂତ୍ର ଭାବି ॥
ଜାଲ ନିର୍ମାଇ ରାତ୍ରମୁଖେ[୨] । ମଧ୍ୟେ ବିହରେ ଆତ୍ମସୁଖେ ॥
ଏକାନ୍ତେ ରାତ୍ରେ କ୍ରୀଡ଼ା କରେ । ସୂର୍ଯ୍ୟ ଉଦୟେ ତା ସଂହରେ ॥
ଏ ରୂପେ ସୃଷ୍ଟିଲୀଳା କରି । ସଂସାରେ ଖେଳେ ନରହରି ॥୧୬-୨୧
ଏବେ ହୋ ଶୁଣ ନରପତି । ସଂସାରେ ଜୀବଆତ୍ମା ଗତି ॥
ଦେହ ବିୟୋଗ କାଳେ ଜନ୍ତୁ । ମନେ ଚିନ୍ତଇ ଯେତେ ହେତୁ ॥
ଏକାନ୍ତ ସ୍ନେହ ଦ୍ୱେଷ ଭୟେ । ନିଶ୍ଚଳ ଧ୍ୟାନ ଯହିଁ ରହେ ॥
ଜନ୍ମଇ ସେହି ରୂପ ଧରି । ଯେସନେ କୀଟ ପେଶସ୍କାରୀ[୩] ॥
କୀଟ ଆଣଇ ନାନାରୂପେ । ନିଜ ଭୁବନେ ନେଇ ସ୍ଥାପେ ॥
ସେ କୀଟ ପ୍ରାଣ ଯିବାବେଳେ । ତାହାକୁ ଦେଖିଥାଇ ଡୋଳେ ॥
ଭୟେ ଚିନ୍ତଇ ତାର ରୂପ । ଜନ୍ମଇ ଘେନି ସେ ସ୍ୱରୂପ ॥୨୨,୨୩

---

୧. ଊର୍ଣ୍ଣନାଭି—ବୁଢ଼ିଆଣୀ । ୨. ରାତ୍ରମୁଖେ—ସଂଧ୍ୟା କାଳରେ ।
୩. ପେଶସ୍କାରୀ—କୁମ୍ଭାରିଆ ନାମକ ଭ୍ରମରଜାତୀୟ କୀଟ ।

ମୋହର ମନ ସେହିମତେ । କୃଷ୍ଣ ଚରଣେ ଅବିରତେ ॥
ନିଶ୍ଚଳେ ସ୍ଥାପି ସାବଧାନେ । ବୁଲଇ ମହୀ ପର୍ଯ୍ୟଟନେ ॥
ଏମନ୍ତେ ଗୁରୁ ମୋର ଯେତେ । ତାହାଙ୍କ ଉପଦେଶ ମତେ ॥
ଶିଖିଣ ମନେ ମୁହିଁ ଧରି । ଭ୍ରମଇ ଅବନୀ ବିହରି* ॥
ହେହକୁ ଘେନି ଗୁରୁପଣେ । ଯାହା ଶିଖିଛି ଧରି ମନେ ॥୨୪

---

* ଅବଧୂତ ଦତ୍ତାତ୍ରେୟ ଯାହା ଯାହାଠାରୁ ଯେଉଁ ସବୁ ଶିକ୍ଷା ପାଇଲେ, ତାହା ନିମ୍ନରେ ସଂକ୍ଷେପରେ ଦିଆଗଲା—

(୧) ପୃଥିବୀଠାରୁ—ଦୁଃଖସୁଖ ସହନ କରିବା; ପର୍ବତ ଓ ବୃକ୍ଷଠାରୁ ପରୋପକାର ପାଇଁ ଜୀବନ ଧାରଣ କରିବା। (୨) ବାୟୁଠାରୁ—କେବଳ ପ୍ରାଣରକ୍ଷା ନିମିତ୍ତ ଆହାର ଗ୍ରହଣ କରିବା ଏବଂ ବିଷୟରେ ଲିପ୍ତ ନ ହେବା। (୩) ଆକାଶଠାରୁ—ଦେହଠାରୁ ଆତ୍ମାର ପାର୍ଥକ୍ୟ ଓ ନିର୍ଲିପ୍ତତା। (୪) ଜଳଠାରୁ—ସ୍ନିଗ୍ଧ ଓ ମଧୁର ବ୍ୟବହାର ତଥା ସମସ୍ତଙ୍କୁ ପବିତ୍ର କରିବା। (୫) ଅଗ୍ନିଠାରୁ—ତପତେଜରେ ଦେଦୀପ୍ୟମାନ ହେବା, ଆହାର ସଞ୍ଚୟ ନ କରିବା ଏବଂ ଯଥାଯୋଗ୍ୟ ବିଷୟ ସେବନ କରି ମଧ୍ୟ ତହିଁର ଦୋଷରେ ଦୂଷିତ ନ ହେବା। (୬) ଚନ୍ଦ୍ରଠାରୁ—ଶରୀରର ହ୍ରାସ-ବୃଦ୍ଧିରେ ଆତ୍ମାର ହ୍ରାସ-ବୃଦ୍ଧି ବା ବିକାଶ ହୁଏ ନାହିଁ ବୋଲି ଜ୍ଞାନ। (୭) ସୂର୍ଯ୍ୟଠାରୁ—ଆବଶ୍ୟକତା ଅନୁସାରେ ବିଷୟ ଗ୍ରହଣ କରି ପୁନଃ ସମୟାନୁସାରେ ତାହା ଦାନ କରିଦେବା। (୮) କପୋତଠାରୁ—କାହାରି ପ୍ରତି ଅତ୍ୟଧିକ ସ୍ନେହ ବା ଆସକ୍ତି ନ କରିବା। (୯) ଅଜଗରଠାରୁ—ପ୍ରାରବ୍ଧ ଅନୁସାରେ ପ୍ରାପ୍ତ ଆହାରରେ ସନ୍ତୁଷ୍ଟ ହେବା ଏବଂ ନ ମିଳିଲେ ମଧ୍ୟ ଆହାର ପାଇଁ ଉଦ୍ୟମ ନ କରିବା। (୧୦) ସମୁଦ୍ରଠାରୁ—ସର୍ବଦା ପ୍ରସନ୍ନ, ପ୍ରଶାନ୍ତ ଓ ଗମ୍ଭୀର ରହିବା; ବିକ୍ଷୁବ୍ଧ ନ ହେବା। (୧୧) ପତଙ୍ଗଠାରୁ—ନାରୀର ରୂପ ଓ ହାବଭାବ ପ୍ରତି ଦୃଷ୍ଟି ନ ଦେଇ ଇନ୍ଦ୍ରିୟଗଣଙ୍କୁ ସଂଯତ ରଖିବା। (୧୨) ଭ୍ରମର ବା ମଧୁମକ୍ଷିକାଠାରୁ—ନାନା ଶାସ୍ତ୍ରରୁ କେବଳ ସାର ସଂଗ୍ରହ କରିବା ତଥା ଅନ୍ନାଦି ସଂଗ୍ରହ ନ କରିବା। (୧୩) ହସ୍ତୀଠାରୁ—କାଷ୍ଠନିର୍ମିତ ନାରୀମୂର୍ତ୍ତିକୁ ମଧ୍ୟ ସ୍ପର୍ଶ ନ କରିବା। (୧୪) ମଧୁହରଣକାରୀଠାରୁ—ଧନ ସଞ୍ଚୟ ନ କରିବା। (୧୫) ହରିଣଠାରୁ—ବିଷୟ ସମ୍ବନ୍ଧୀୟ ସଂଗୀତ ନ ଶୁଣିବା। (୧୬) ମୀନଠାରୁ—ଜିହ୍ୱା ଲାଳସାକୁ

ଏ ଦେହ ଜନ୍ମ ମୃତ୍ୟୁ ହୁଇ । ବିଷ୍ଣୁମାୟାରେ ପ୍ରବର୍ତ୍ତଇ ॥
ଏ ଭାବ ବୁଝି ମୋର ମତି । ଏ ଦେହେ ନ କରେ ପୀରତି ॥
ଅନେକ ଜନ୍ମ କର୍ମଭାଗ୍ୟେ । ମୋ ଜ୍ଞାନ ବିବେକ ବୈରାଗ୍ୟେ ॥
ଉଦାସୀ ମତେ ଦେହେ ଥାଇ । ଗୁରୁଙ୍କ ଉପଦେଶ ଧ୍ୟାୟି ॥୨୫
ପୁତ୍ର କଳତ୍ର ପଶୁ ଦାସେ । ଏହାଙ୍କୁ ପୋଷି ଦେହ ଆଶେ ॥
ଦେହର ସଙ୍ଗେ ଏ ରହନ୍ତି । ମରଣେ କେହି ନ ଯାଆନ୍ତି ॥
ନିୟତକର୍ମ ସଙ୍ଗ କରି । ଅନ୍ଧ ଯେସନେ ଯଷ୍ଟି ଧରି ॥
ବୃକ୍ଷର ଧର୍ମ ପ୍ରାୟ ଦେହୀ । ଅବଶ୍ୟ ଜନ୍ମିଲେ ମରଇ ॥
ଏଣୁ ଅନିତ୍ୟ ଦେହେ ମୁହିଁ । କେବେହେଁ ବିଶ୍ୱାସ ନ ଯାଇ ॥୨୬
ଏ ଦେହ ଇନ୍ଦ୍ରିୟେ ଆବୋରି । ଭୁଞ୍ଜନ୍ତି ଜଣେ ଜଣେ ଧରି ॥
ଶ୍ମଶାନେ ମୃତପିଣ୍ଡ ଯେହ୍ନେ । ଶ୍ୱାନ ଶୃଗାଳଙ୍କ ବଦନେ ॥

---

ଦମନ କରିବା। (୧୭) ବେଶ୍ୟାଠାରୁ—ଧନାଦି ଆଶା ତ୍ୟାଗ କରିବା। (୧୮) କୁରର ପକ୍ଷୀଠାରୁ—ଦ୍ରବ୍ୟାଦି ସଂଗ୍ରହ ନ କରିବା। (୧୯) ବାଳକ-ଠାରୁ—ମାନ-ଅପମାନରୁ ଊର୍ଦ୍ଧ୍ୱରେ ରହିବା ଏବଂ ଗୃହ-ପରିବାର କଥା ଚିନ୍ତା ନ କରି ଆତ୍ମାନନ୍ଦରେ ମଗ୍ନ ରହିବା। (୨୦) କୁମାରୀ କନ୍ୟାଠାରୁ—ସଙ୍ଗମେଳରେ ନ ରହି ଏକାନ୍ତବାସ କରିବା। (୨୧) ଶର ନିର୍ମାତାଠାରୁ—ଆସନ ଓ ଶ୍ୱାସକୁ ଜିଣି ବୈରାଗ୍ୟ ଓ ଅଭ୍ୟାସ ଦ୍ୱାରା ମନକୁ ପରମାତ୍ମାଙ୍କ ଠାରେ ଏକାଗ୍ର କରିବା। (୨୨) ସର୍ପଠାରୁ—ଏକାକୀ ବିଚରଣ କରିବା, ନିବାସ ପାଇଁ ମଠ ଇତ୍ୟାଦି ନିର୍ମାଣ ନ କରିବା, ଗୁମ୍ଫା ପ୍ରଭୃତିରେ ରହିବା, ଏକ ସ୍ଥାନରେ ନ ରହିବା ଏବଂ ଅଳ୍ପ କଥା କହିବା। (୨୩) ଊର୍ଣ୍ଣନାଭ (ବୁଢ଼ିଆଣୀ) ଠାରୁ—ସର୍ବଶକ୍ତିମାନ ଭଗବାନ ଏ ଜଗତକୁ ସ୍ୱକୀୟ ମାୟା-ବଳରେ ନିଜଠାରୁ ସୃଷ୍ଟି କରି ପୁନଃ ଉପସଂହାର କରି ନିଅନ୍ତି। ଏକମାତ୍ର ସେ ହିଁ ଏ ଜଗତର ଆଧାର, କିନ୍ତୁ ତାଙ୍କର କେହି ଆଧାର ନାହିଁ—ଏ କଥା ବୁଝିବା। (୨୪) ପେଶସ୍କାରୀ (କୁମ୍ଭାରିଆ) କୀଟଠାରୁ—ସ୍ନେହ, ଦ୍ୱେଷ ଅଥବା ଭୟ ହେତୁ କାହାକୁ ଚିନ୍ତନ କଲେ ପ୍ରାଣୀ ସେହି ସ୍ୱରୂପକୁ ପ୍ରାପ୍ତ ହୁଏ। ଏଣୁ ମନୁଷ୍ୟ କେବଳ ଭଗବାନଙ୍କ ବ୍ୟତୀତ ଅନ୍ୟ କାହାରିକୁ ଚିନ୍ତନ କରିବା ଉଚିତ ନୁହେଁ।

ରସ ଲାଳସେ ଜିହ୍ୱା ଧରେ । ଆହାର ଅର୍ଥେ ଭ୍ରମ କରେ ॥
ନିଜ ସ୍ୱଭାବେ ଷଡ଼ରସେ । ଭ୍ରମଇ ନାନା ଦେଶେ ଦେଶେ ॥
ତୃଷାର ବେଳେ କେବେ ପୁଣି । ମାଗଇ ସୁଶୀତଳ ପାଣି ॥
ନ ପାଇ କରେ ବହୁ ତ୍ରାସ । ଏମନ୍ତେ ଆତ୍ମା[୧] ଯାଇ ନାଶ ॥
ଇନ୍ଦ୍ରି ଧରଇ ପୁଣ ବଳେ । ଭ୍ରମଇ ମଇଥୁନ ଫଳେ ॥
ଅମୃତ ପ୍ରାୟେ ଯୋନି ଦିଶେ । ଏଣୁ ଭ୍ରମଇ କାମ ଆଶେ ॥
ଶୀତ ତପତ ଚର୍ମ ଧରେ । ଅଗ୍ନି ପବନେ ଆଶ୍ରା କରେ ॥
କ୍ଷୁଧା ଅନଳେ ଧରେ ପେଟ । ଆତ୍ମାକୁ କରେ ଛଟପଟ ॥
ଯାବତ ନ ପୂରେ ଉଦର । ତାବତ ଜ୍ଞାନ କାହିଁ ଆଉ ॥
ଶ୍ରବଣ ଧରେ ପୁଣ ପୁଣି । ସ୍ତୁତି ନିନ୍ଦନ ବାକ୍ୟ ଶୁଣି ॥
ନାସିକା ଧରେ ଗନ୍ଧ ଆଶେ । ଏଣୁ ଭ୍ରମଇ ଶୁଚିବାସେ ॥
ଚକ୍ଷୁ ଧରଇ ରୂପ ଅର୍ଥେ । ଏଣୁ ଭ୍ରମଇ ନାନା ପଥେ ॥
ଅନ୍ତେ ଧରଇ କର୍ମରାଶି । ବେଷ୍ଟିତ ହୁଏ କାଳପାଶି ॥
ବହୁତ ସପତଣୀ ଯେହ୍ନେ । ସ୍ୱାମୀ ମାରନ୍ତି ଅପମାନେ ॥
ଜୀବର ଅଳପ ଶକତି । ଶତେ ଯୁବତୀ ଏକପତି ॥
କାମିନୀଗଣେ ବନ୍ଦୀ ହୋଇ । ସେ ଯେହ୍ନେ ଅଳପେ ମରଇ ॥
ଏଣୁ ଏ ସାଧାରଣ ଦେହେ । ଜ୍ଞାନୀଙ୍କ ବସ୍ତୁଜ୍ଞାନ ନୋହେ[୨] ॥
ଏ ଦେହ ପଡ଼େ ମାୟାଜଡ଼େ । ନିଜ ନିସ୍ତାରପଥ ହୁଡ଼େ ॥୨୭
ଯେତେ ଏ ସୃଷ୍ଟିରେ ରଚନା । କୀଟହୁଁ ବ୍ରହ୍ମାଦି କଳ୍ପନା ॥
ଆତ୍ମାକ୍ରୀଡ଼ନେ ନରହରି । ପୂର୍ବେ ଅନେକ ସୃଷ୍ଟି କରି ॥
ସଂସାରେ ଖେଳି ନାନାମତେ । ସନ୍ତୋଷ ନ ଲଭିଲା ଚିତ୍ତେ ॥
ତେଣୁ ମାନବ ସୃଷ୍ଟି କଲା । ଯହିଁ ବିଶ୍ରାମ ସର୍ବଲୀଳା ॥
ମନୁଷ୍ୟ ଦେହେ ଦିବ୍ୟଜ୍ଞାନ । ଦେଖି ସନ୍ତୋଷ ଭଗବାନ ॥୨୮

---

୧. ଆତ୍ମା—ଶରୀର । ୨. 'ଏଣୁ ଏ..........ବସ୍ତୁଜ୍ଞାନ ନୋହେ'—ଜ୍ଞାନୀଜନ ଏ ଜଡ଼ ଶରୀରକୁ ସତ୍ୟ ବା ନିତ୍ୟ ମଣନ୍ତି ନାହିଁ ।

ବ୍ରହ୍ମାଦି ସକଳ ଶରୀର । ସ୍ୱଭାବେ ଅସତ୍ୟ ସଂସାର ॥
ଭ୍ରମିଣ କୋଟି ଯୋନି ଜନ୍ମେ । ବିପାକ ଅବଶେଷ କର୍ମେ ॥
କେବଳ ଶୁଭକର୍ମ ଭାଗ୍ୟେ । ନିଶ୍ଚେ ଗୋବିନ୍ଦ ଅନୁରାଗେ ॥
ଦୁର୍ଲଭ ମନୁଷ୍ୟ ଶରୀରେ । ଜନ୍ମଇ ଅନିତ୍ୟ ସଂସାରେ ॥
ସେ ଦେହ ଲଭି ମହୀତଳେ । ଅନେକ ଶୁଭକର୍ମ ଫଳେ ॥
ଭାଗ୍ୟେ ଦୁର୍ଲଭ ଦେହ ପାଇ । ଯାହାର ଜ୍ଞାନ ପ୍ରକାଶଇ ॥
ଜଗତ ଦେଖେ ବିଷ୍ଣୁମୟେ । ସେ ନ ପଡ଼ଇ ମାୟାମୋହେ ॥
ମନୁଷ୍ୟ ମୁଣ୍ଡେ ମୃତ୍ୟୁ ବସେ । ଆତ୍ମାକୁ ଅନୁକ୍ଷଣେ ଗ୍ରାସେ ॥
ଯାବତ ମୃତ୍ୟୁ ଅଛି ଦୂରେ । ସୁନ୍ଦର ଯୁବା କଳେବରେ ॥
ସାଧିବ ସକଳ ଶକତି । ଯେଣେ ଜନ୍ମିବ ବିଷ୍ଣୁଭକ୍ତି ॥
ଏ ଜୀବ ବନ୍ଦୀ କର୍ମପାଶେ । ସାଧିବ ବନ୍ଧନ ଉଶ୍ୱାସେ ॥୨୯
ଏରୂପେ ହୃଦୟ ନିର୍ବେଦେ[୧] । ଆତ୍ମାକୁ ଈଶ୍ୱର ଅଭେଦେ ॥
ଦେଖଇ ଜ୍ଞାନଚକ୍ଷୁ ଦ୍ୱାରେ । ଦୁର୍ଲଭ ମନୁଷ୍ୟ ଶରୀରେ ॥
ସକଳ ସଙ୍ଗ ପରିହରି । ଏଣୁ ମୁଁ ଏତେ ଗୁରୁ କରି ॥
ସୁଦୂରେ ତେଜି ଅହଙ୍କାର । ଆନନ୍ଦେ ଭ୍ରମଇ ସଂସାର ॥୩୦,୩୧

*ଶ୍ରୀ ଭଗବାନୁବାଚ*

ଏମନ୍ତ କହି ଅବଧୂତ । ଶାନ୍ତ ଗଭୀର ଗୁଣଯୁତ ॥
ଶୁଣି ଆନନ୍ଦ ଯଦୁରାଜା । ତାର ଚରଣେ କଲେ ପୂଜା ॥
ସ୍ତୁତି କରନ୍ତି ସାବଧାନେ । ବ୍ରାହ୍ମଣ ଗଲା ଅନ୍ତର୍ଦ୍ଧାନେ ॥୩୨
ଶୁଣି ଅବଧୂତ ବଚନ । ରାଜା ପଶିଲା ଘୋରବନ ॥
ସକଳ ସଙ୍ଗ ଦୂରେ ତେଜି । ଧ୍ୟାନେ ଗୋବିନ୍ଦପାଦେ ଭଜି ॥
ଯୋଗେ ନିବେଶି କଳେବର । ଲଭିଲା ଗୋବିନ୍ଦ ପୟର ॥୩୩
ଉଦ୍ଧବ କୃଷ୍ଣର ସଂବାଦ । ଶୁଣନ୍ତେ ଖଣ୍ଡଇ ପ୍ରମାଦ ॥
ପରୀକ୍ଷେ ଶୁକମୁନି କହେ । ସୁଜନେ ଏଣେ କର ଲୟେ ॥

୧. ନିର୍ବେଦେ—ବୈରାଗ୍ୟ ଦ୍ୱାରା ।

ଏ ଚଉବିଂଶ ଗୁରୁବାଣୀ । ଉଦ୍ଧବେ କହେ ଚକ୍ରପାଣି ॥
ସେ କଥା ପରମ ଆନନ୍ଦେ । ସଂକ୍ଷେପେ ଏକାଦଶ ସ୍କନ୍ଦେ ॥
ପ୍ରାକୃତବନ୍ଧେ ଭାଗବତ । ପ୍ରକାଶି ସନ୍ଥଜନ ହିତ ॥
କହଇ ଦାସ ଜଗନ୍ନାଥ । କୃଷ୍ଣଚରଣେ ଦେଇ ଚିତ୍ତ ॥

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ଏକାଦଶସ୍କନ୍ଧେ ଯଦୁରାଜାବଧୂତସଂବାଦୋ
ନାମ ଦଶମୋଽଧ୍ୟାୟଃ ।

❒❒❒

## ଏକାଦଶ ଅଧ୍ୟାୟ*

ଦେହ ସମ୍ବନ୍ଧରୁ ସଂସାର । ଏକାଦଶରେ ଏ ବିସ୍ତାର ॥

*ଶ୍ରୀ ଭଗବାନୁବାଚ*

କହନ୍ତି ପ୍ରଭୁ ପଦ୍ମପାଣି । ଶୁଣ ଉଦ୍ଧବ ସାଧୁବାଣୀ ॥
ତୁ ଅଟୁ ଭକତ ପ୍ରଧାନ । ତୋତେ ପ୍ରସନ୍ନ ମୋର ମନ ॥
ମୁହିଁ କହିଲି ଧର୍ମ ଯେତେ । ଆଗମ ନିଗମ ଉକତେ ॥
ସେ ଧର୍ମ ଦୃଢ଼ କରି ମନେ । ସାଧନ କର ସାବଧାନେ ॥
ଯେ ବର୍ଣ୍ଣଧର୍ମ କୁଳଧର୍ମ । ଯେ ବିଧି ଆସ୍ରର ଆଶ୍ରମ ॥
କର୍ମ କରିବ କାମ ତେଜି । ସାତ୍ତ୍ୱିକେ ମୋର ପାଦେ ଭଜି ॥ ୧
ଜୀବ ଦେଖିବ ଶୁଦ୍ଧଚିତ୍ତେ । ମୋହ ଗହନ ଏ ଜଗତେ ॥
ଆରମ୍ଭମାନ ବିପର୍ଯ୍ୟୟେ । ସର୍ବ ବିକାର ମାୟାମୟେ ॥
ସ୍ୱପନେ ନାନା ଉପଭୋଗେ । ସେ ଯେହ୍ନେ ଆତ୍ମାର ସଂଯୋଗେ ॥
ମଣଇ ସତ୍ୟପ୍ରାୟ ତାହା । ଦୃଷ୍ଟି ଶ୍ରବଣେ ସର୍ବମାୟା ॥
ଯେତେ ଦେଖଇ ନାନାରଙ୍ଗେ । ବିଫଳ ହୋଏ ନିଦ୍ରାଭଙ୍ଗେ ॥୨,୩

* ମୂଳ ସଂସ୍କୃତାନୁସାରେ ଦଶମ ଅଧ୍ୟାୟ ।

ଏଣୁ ପ୍ରବୃତ୍ତି ଧର୍ମ ଏଡ଼ି । ନିବୃତ୍ତି ଧର୍ମେ ମନ ବଢ଼ି ॥
ସାଧୁ ସଙ୍ଗମେ ସେବା କରି । ଧର୍ମ ସାଧିବ ଶିକ୍ଷା କରି ॥
ଜାଣିଲେ ତତ୍ତ୍ୱ ଉପଦେଶ । ତେବେ କରିବ କର୍ମନ୍ୟାସ ॥
ଯେ ଅବା କର୍ମ କରକ୍ଷଣ । ମୋତେ କରିବ ସମର୍ପଣ ॥ ୪
ଯମ ନିୟମ ବେନି ପଥେ । ଯତ୍ନେ ସାଧିବ ଯଥୋଚିତେ ॥
ସେବିବ ସାଧୁ ସୁଜ୍ଞଜନ । ମୋର ଚରଣେ ଯାର ମନ ॥
ସୁତ କଳତ୍ର ଧନ ପ୍ରାଣ । ଯେ ମୋତେ କରେ ସମର୍ପଣ ॥
ଏମନ୍ତ ଗୁରୁ ସେବା କରି । ଚିତ୍ତେ ମୋହର ରୂପ ଧରି ॥ ୫
ତେଜିବ ମାନ ଅହଙ୍କାର । ମଦ ମତ୍ସର ଯେ ବିକାର ॥
ଦୃଢ଼ ସୁହୃଦ ଗୁରୁଠାଇଁ । ନିର୍ମମ ଅଳସ ନ ହୋଇ ॥
ଜ୍ଞାନ ଅଭ୍ୟାସି ଅବିରତ । ଚଞ୍ଚଳ ନ କରିବ ଚିତ୍ତ ॥ ୬
ସମତା ଦୃଷ୍ଟି ସତ୍ୟଭାଷା । ଏଣେ କରିବ ନିତ୍ୟେ ଆଶା ॥
ଦାରା ତନୟ ଗୃହ କ୍ଷେତ୍ର । ସ୍ୱଜନ ବାନ୍ଧବ ଯେ ମିତ୍ର ॥
ସମ୍ପଦ ବିପଦ ସଞ୍ଚୟେ । ଧରିବ ଉଦାସୀନ ଦେହେ ॥
ଆକାଶ ଯେହ୍ନେ ସର୍ବଶୂନ୍ୟ । ସେ ରୂପେ ହୋଇ ଉଦାସୀନ ॥
ବିମୁକ୍ତବନ୍ଧ ମହାଶୟ । ସର୍ବ ଦେଖିବ ମାୟାମୟ ॥
କେବେହେଁ ନୋହି ଅଭିମାନୀ । ଆତ୍ମା ପରଚେ ତତ୍ତ୍ୱଜ୍ଞାନୀ ॥
ଦେହକୁ ଦେଖୁଥିବ ଭିନ୍ନ । କାଷ୍ଠରେ ଯେହ୍ନେ ହୁତାଶନ ॥୭,୮
ଏରୂପେ ଆତ୍ମା ନିର୍ବିକାର । ଏ ଦେହଗୁଣରୁ ବାହାର ॥
ଦେହର ମଧ୍ୟେ ଯେଣୁ ଥାଇ । ତା ନାମ ଗୁଣକୁ ଭଜଇ ॥
କାଷ୍ଠ ସଂଯୋଗେ ଅଗ୍ନି ଯେହ୍ନେ । କାଷ୍ଠର ଆକାରକୁ ଘେନେ ॥
ଈଶ୍ୱର ମାୟାରେ ନିର୍ମାଣ । ଏ ସ୍ଥୂଳ ସୂକ୍ଷ୍ମ ଦେହମାନ ॥
ଜୀବର ସଂସାରଟି ଏହି । ସତ୍ୟ ପରାୟେ ପ୍ରତେ ହୋଇ ॥
ଗୁରୁ ବଚନେ ଏହା ଜାଣି । ଅବସ୍ତୁ ପ୍ରାୟ ସର୍ବ ମଣି ॥
ଜଗତ ଦେଖି ବିଷ୍ଣୁମୟ । ଛାଡ଼ିବ ସକଳ ସଂଶୟ ॥

ଗୁଣ କର୍ମ ଯେ ଅହଙ୍କାର । ଚିତ୍ତରୁ ହୋଇଯିବ ଦୂର ॥
ରହିବ ନିଜରୂପ ଘେନି । ଇନ୍ଧନ ବିନା ଯେହ୍ନେ ଅଗ୍ନି ॥୯-୧୩
କର୍ମ କରଣେ ଫଳ ପାଇ । ପ୍ରାଣୀ ତା ଅବଶ୍ୟ ଭୁଞ୍ଜଇ ॥
ସ୍ୱତନ୍ତ୍ର ନୋହେ ସର୍ବକାଳେ । ଦୁଃଖେ ଭ୍ରମଇ ଏ ଶଯ୍ୟଳେ ॥
ଜୀବର ଦେହେ ବନ୍ଧ ପାଶ । କେବେହେଁ ନାହିଁ ସୁଖ ଲେଶ ॥
ନିଗଡ଼ ବନ୍ଧନ ପର୍ଯ୍ୟରେ । ବନ୍ଦୀ ଯେସନେ ବନ୍ଦୀଘରେ ॥
କାଳ ବଞ୍ଚଇ ଦୁଃଖ ସହି । ମୂର୍ଖ ପଣ୍ଡିତ ଭେଦ ନାହିଁ ॥
ଦାରୁଣ ଦୁଃଖ ସୁଖ ମଣେ । ସୁଖକୁ ଦୁଃଖ ପ୍ରାୟେ ଗଣେ ॥
ଏମନ୍ତେ ବୃଥା ଅହଙ୍କାରେ । ଜୀବ ଭ୍ରମଇ ନିରନ୍ତରେ ॥୧୪-୧୮
ସେ ଯେବେ ଦୁଃଖ ସୁଖ ବୁଝେ । ସମ୍ମୁଖେ ମୃତ୍ୟୁ ସଙ୍ଗେ ଯୁଝେ ॥
ବୁଦ୍ଧି ବିବେକ ଜ୍ଞାନ ବଳେ । ମରଣ ଜିଣଇ କେ ହେଲେ ॥୧୯
କର୍ମେ ପ୍ରାଣୀର ସୁଖ ନାହିଁ । କେବଳ ଅନର୍ଥଟି ସେହି ॥
ଏହା ନ ବୁଝି ମୂଢ଼ଜନେ । ତପ କରନ୍ତି ଫଳକାମେ ॥
କାହାରି ପୂର୍ବପୁଣ୍ୟ ଫଳେ । ଯଦ୍ୟପି ଅର୍ଥ କାମ ମିଳେ ॥
ତେବେହେଁ ଦୁଃଖ ନୋହେ ଶେଷ । ଭୁଞ୍ଜନ୍ତେ ଲଭେ ବହୁ କ୍ଳେଶ ॥
ଯାହାକୁ ବାନ୍ଧି ନେଇ ପଥେ । ଶ୍ମଶାନେ ଶିରଚ୍ଛେଦ ଅର୍ଥେ ॥
ତାହାର ଯେତେ କାମ ଅର୍ଥ । ତୋଷଣେ ନୁହନ୍ତି ସମର୍ଥ ॥୨୦
ସଂସାରେ ଦେଖି ଶୁଣି ଯେତେ । ବିଘ୍ନରେ ଦୁଃଖେ ଏ ସମସ୍ତେ ॥
ମାନ ମତ୍ସର ଗର୍ବ ଲୋଭ । ବିନାଶ ଅପଚଯ୍ୟଭାବ ॥
ଏ ସର୍ବ ଦୁଃଖର କାରଣ । ଉଦ୍ଧବ ଏହା ପରିମାଣ ॥
କର୍ମର ଫଳ ନାନାଗତି । ଶୁଣ ତୁ ଏବେ ଦେଇ ମତି ॥୨୧,୨୨
ଏ ଲୋକେ କରି ବ୍ରତ ଦାନ । ଯଜ୍ଞେ ଦେବତା ଆରାଧନ ॥
ସେ ପୁଣ୍ୟବଳେ ସ୍ୱର୍ଗ ଯାଇ । ଭୁଞ୍ଜଇ ଦିବ୍ୟ ଦେହ ବହି ॥
ନାନା ପ୍ରକାର ସୁଖ ଯେତେ । ଭୋଗ କରଇ ଦେବମତେ ॥
କର୍ମ ନିର୍ମିତ ପୁଣ୍ୟରଥେ । ଫଳ ଭୁଞ୍ଜଇ ସ୍ୱର୍ଗପଥେ ॥

ଦିବ୍ୟ ଯୁବତୀଗଣ ସଙ୍ଗେ । ବିମାନେ ରମେ ନାନାରଙ୍ଗେ ॥
ଗନ୍ଧର୍ବ କିନ୍ନର ଯୁବତୀ । ରଥ ପାରୁଶେ ପନ୍ତି ପନ୍ତି ॥
କ୍ଷୁଦ୍ର କିଙ୍କିଣୀ ନାଦ ଧୀରେ । ଲଳିତ ମଙ୍ଗଳ ମଧୁରେ ॥
ବିବିଧ ନୃତ୍ୟଗୀତ ଗାନ । କରି ତୋଷନ୍ତି ତାର ମନ ॥
ଯାବତ କର୍ମଫଳ ପୂରେ । ତାବତ ସ୍ୱର୍ଗଭୋଗ କରେ ॥
ପୁଣି ପଡ଼ଇ କର୍ମକ୍ଷୟେ । ସଂସାରେ ବିଷ୍ଣୁମାୟାମୋହେ ॥
ଏଣୁ ଅର୍ଜିତ କର୍ମପାକେ । ଜୀବ ଭ୍ରମଇ ଦୁଃଖସୁଖେ ॥୨୩-୨୬
ଅସାଧୁ ସଙ୍ଗେ ଯେତେ ଭାବ । ଉଦ୍ଧବେ କହନ୍ତି ମାଧବ ॥
ସୁକର୍ମେ ସାଧୁସଙ୍ଗ ପାଇ । କୁକର୍ମେ ଅସାଧୁ ମିଳଇ ॥
ପୂର୍ବ ବିପାକ କର୍ମଫଳେ । ଯେବେ ଅସାଧୁ ସଙ୍ଗ ମିଳେ ॥
ଅଧର୍ମ ବଢ଼େ ଦିନୁଦିନେ । ନିରତେ କୁସଙ୍ଗ ମିଳନେ ॥
ସ୍ତିରୀ ଲମ୍ପଟ କାମଯୁତ । କୃପଣ ପାଷଣ୍ଡ କୁତ୍ସିତ ॥
ପରପୀଡ଼ନ ଭୂତହିଂସା । ସୁଖ ଗହଳେ କରେ ଆଶା ॥
ଯଜ୍ଞ କରଇ ବିଧିହୀନେ । ପଶୁ ମାରଣ ଅବିଧାନେ ॥
କଳ୍ପିତ ପିତୃଯଜ୍ଞ ଛଳେ । ପଶୁଙ୍କୁ ବଧ କରେ ବଳେ ॥
ପୂଜଇ ଭୂତ ପ୍ରେତଗଣେ । ଆତ୍ମାର ହିଂସା ନ ପ୍ରମାଣେ ॥
ଜୀବମାରଣ କର୍ମ ଫଳେ । ନରକେ ପଡ଼େ ଅନ୍ତକାଳେ ॥୨୭,୨୮
ମାୟାଯନ୍ତ୍ରିତ ନାନାଯୋନି । ଭ୍ରମଇ ଜୀବ ଆତ୍ମା ଘେନି ॥
ସ୍ଥାବର ଆଦି ଗ୍ରହି ଦେହେ । ପଶୁ ପତଙ୍ଗ କୀଟ ହୋଏ ॥
ଶ୍ୱାନ ଶୃଗାଳ ବାଜୀ ଗଜେ । ଏରୂପେ ନାନା ଯୋନି ଭଜେ ॥
ଅଶେଷ କୋଟି ଯୋନି ଭ୍ରମି । ଅର୍ଜିତ କର୍ମେ ପଥଶ୍ରମୀ ॥
ଏମନ୍ତେ ଦୁଃଖ ଅବଶେଷେ । କିଞ୍ଚିତ ଧର୍ମର ସକାଶେ ॥
ଦୁର୍ଲଭ ମନୁଷ୍ୟ ଶରୀରେ । ଜନ୍ମ ଲଭଇ ମର୍ତ୍ତ୍ୟପୁରେ ॥
ଭାଗ୍ୟେ ଦୁର୍ଲଭ ଦେହ ଧରି । ପୁଣି ଭ୍ରମଇ କର୍ମ କରି ॥
କର୍ମଟି ନାନା ଦୁଃଖ ଦେଇ । କିଞ୍ଚିତ ସୁଖ ନାହିଁ ତହିଁ ॥
କର୍ମ କରନ୍ତେ ପାଇ ଦେହ । ଏଣୁଟି କର୍ମ ଦୁଃଖମୟ ॥୨୯

କୁବେର ବରୁଣ ଅନଳ । ଏ ଆଦି ଦଶ ଦିଗପାଳ ॥
ଦେଖ ଏ କଳ୍ପ ଅଧିକାରୀ । ସ୍ୱଭାବେ ମୋର ଅଂଶଧାରୀ ॥
ବ୍ରହ୍ମା ମୋହର ଅଂଶ ବହି । ସକଳ ସୃଷ୍ଟି ସେ କରଇ ॥
ମୋହର ତହୁଁ ସମ୍ଭବନ୍ତି । ନିକଟେ ଭୟେ ନ ରହନ୍ତି ॥୩୦
ଗୁଣ ସକାଶେ କର୍ମ ସୃଜେ । ଏଣୁ ବିଷୟ ଜୀବ ଭୁଞ୍ଜେ ॥
ଏଣୁ ଏ ଜୀବ କର୍ମମଧ୍ୟେ । ଅକର୍ମେ ଦଣ୍ଡେହେଁ ନ ରହେ ॥୩୧
ଯାବତ ବିଷୟରେ ରତି । ଗୁଣେ ବିଷମ ଭାବେ ଥାନ୍ତି ॥
ତାବତ ନାନାବିଧ ରୂପେ । ଜୀବ ଭ୍ରମଇ ମୋହକଳ୍ପେ ॥
ଯାବତ ନାନାଭାବେ ଛନ୍ନ । ତାବତ ଜୀବ ପରାଧୀନ ॥
ଯାବତ ପରାଧୀନ ହୋଇ । ଈଶ୍ୱର ତହୁଁ ଭୟ ପାଇ ॥
ଶୋକ ମୋହରେ ହୋଇ ଯୁତ । ସଂସାରେ ଭ୍ରମଇ ତାବତ ॥
ମାୟାର ବଳେ କ୍ଷୋଭ ପାନ୍ତି । ନାନା ପ୍ରକାରେ ମୋତେ ଚିନ୍ତି ॥
ଅନେକ ଭ୍ରମି ଶ୍ରମେ ଫୁଟେ । କେବେହେଁ ମାୟା ତା ନ ତୁଟେ ॥୩୨-୩୪
ଏମନ୍ତେ ଗୋବିନ୍ଦର ବାଣୀ । ଉଦ୍ଧବ ବୋଲେ ତାହା ଶୁଣି ॥
ପ୍ରଣାମ କରି କୃଷ୍ଣପାଦେ । ବୋଲେ ଆନନ୍ଦ ଗଦଗଦେ ॥(ଜ.)

*ଉଦ୍ଧବ ଉବାଚ*

ଶୁଣ ହେ ପ୍ରଭୁ ଦାମୋଦର । ତ୍ରିଗୁଣେ ଜାତ ଏ ଶରୀର ॥
ଜୀବ ଯେ ଅଛି ଦେହ ମଧ୍ୟେ । ନିର୍ଲେପ ପରମ ଆନନ୍ଦେ ॥
ଗୁଣେ ବନ୍ଧନ ନାହିଁ ତାର । ସ୍ୱଭାବେ ନିତ୍ୟ ନିରାକାର ॥
ତାର ବନ୍ଧନ ତିନି ଗୁଣେ । ତୁ ନାଥ ବୋଲୁ କି କାରଣେ ॥
କେମନ୍ତେ ହୋଏ ତା ବନ୍ଧନ । କହ ହେ ଶ୍ରୀମଧୁସୂଦନ ॥୩୫
କି ଭାବେ ଥାଇ ଅନ୍ତର୍ଗତେ । ସଂସାରେ ବିହରେ କେମନ୍ତେ ॥
କେତେ ଲକ୍ଷଣେ ତାହା ଜାଣି । କେମନ୍ତେ ଭୁଞ୍ଜେ ଅନ୍ନପାଣି ॥
କି ରୂପେ ପ୍ରଚରଇ ଜନେ । ଆସନେ ଶୟନେ ଗମନେ ॥
ତୁ ନାଥ ମୋର ପ୍ରାଣପତି । ଭକ୍ତବତ୍ସଳ ଦାଶରଥି ॥

ଅଚ୍ୟୁତ ଅନନ୍ତ ମୁରାରି । ବଳେ କେ ପାରେ ତୋତେ ଧରି ॥
ସଂସାରେ ବନ୍ଧ ମୋକ୍ଷ ଦୁଇ । କେମନ୍ତେ କଲ୍ପେ ତାର ଦେହୀ ॥
ଏକ ଅନେକ ଅବା କେତେ । କହ ଗୋବିନ୍ଦ ଶୁଦ୍ଧଚିତ୍ତେ ॥
ମୋହର ଚିତ୍ତେ ଭ୍ରମ ଯେତେ । କହିଲି ତୋହର ଅଗ୍ରତେ ॥
ମୋ ଘରେ ଜ୍ଞାନଦୀପ ଜାଳି । ଅଜ୍ଞାନ ଖଣ୍ଡ ବନମାଳୀ ॥୩୬,୩୭
ବୋଲଇ ବିପ୍ର ଜଗନ୍ନାଥ । କୃଷ୍ଣଚରଣେ ଦେଇ ଚିତ୍ତ ॥
ଉଦ୍ଧବ ପଚ୍ଚାରିଲେ ଯେତେ । ଶ୍ରୀଏକାଦଶ ଭାଗବତେ ॥
ସୁଜନେ ଶୁଣ ଦେଇ ଚିତ୍ତ । ମୁଁ ତୁମ୍ଭ ଭୃତ୍ୟଙ୍କର ଭୃତ୍ୟ ॥

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ଏକାଦଶସ୍କନ୍ଧେ ଭଗବଦୁଦ୍ଧବସଂବାଦେ
ନାମ ଏକାଦଶୋଽଧ୍ୟାୟଃ ।

❑❑❑

## ଦ୍ୱାଦଶ ଅଧ୍ୟାୟ*

ବନ୍ଧ ଜୀବ ଯେ ଜୀବନ୍ମୁକ୍ତ । ସାଧୁ ଆବର ଯେ ଭକତ ॥
ଏମାନଙ୍କର ଯେ ଲକ୍ଷଣ । ଦ୍ୱାଦଶ ଅଧ୍ୟାୟେ ବର୍ଣ୍ଣନ ॥

ଶୁଣିଣ ଉଦ୍ଧବ ବଚନ । କହନ୍ତି ଶ୍ରୀମଧୁସୂଦନ ॥(ଜ.)

*ଶ୍ରୀ ଭଗବାନୁବାଚ*

ତୁ ଯାହା କରୁ ହୋ ପ୍ରଶନ । ଜୀବ ଆତ୍ମାର ତତ୍ତ୍ୱଜ୍ଞାନ ॥
ଜୀବର ବନ୍ଧ ମୋକ୍ଷ ବେନି । ବିପ୍ରରୁ ଯେତେ ଶାସ୍ତ୍ର ଘେନି ॥
କେହି ନ ପାନ୍ତି ତାର ଅନ୍ତ । ଏଣୁ ସେ ବୋଲାଇ ଅନନ୍ତ ॥
ତ୍ରିଗୁଣେ ବନ୍ଧ ମୋକ୍ଷ ହୋଇ । ଯେଣୁ ସେ ଗୁଣ ମାୟାମୟୀ ॥
ବାସ୍ତବେ ସେହି ବନ୍ଧ ମୋକ୍ଷ । ଜୀବକୁ ନ ଲାଗେ ପ୍ରତ୍ୟକ୍ଷ ॥ ୧

* ମୂଳ ସଂସ୍କୃତ ଅନୁସାରେ ଏକାଦଶ ଅଧ୍ୟାୟ ।

ଜନ୍ମ ମରଣ ଶୋକ ମୋହ । ସୁଖ ଦୁଃଖ ଆଦି ସଂଶୟ ॥
କେବଳ ମାୟାଭ୍ରମ ଏହି । ଏ ଯେ ଜୀବକୁ ଲାଗେ ନାହିଁ ॥
ସ୍ୱପ୍ନେ ଦେଖଇ ପ୍ରାଣୀ ଯାହା । ନିଦ୍ରା ଛାଡ଼ିଲେ ଯେହ୍ନେ ମାୟା ॥ ୨
ବିଦ୍ୟା ଅବିଦ୍ୟା ମୋର ଦେହ । ବନ୍ଧ ମୋକ୍ଷହିଁ ମାୟାମୟ ॥
ଏ ବେନି ମଧ୍ୟେ ମୋର ଅଂଶ । ଜୀବର ସ୍ୱରୂପେ ପ୍ରକାଶ ॥
ଅବିଦ୍ୟାବଳେ ବନ୍ଦୀ ହୋଇ । ହୀନ କୁମତି ଭାବ ବହି ॥
ତେଣୁ ଭ୍ରମଇ ମାୟାଭ୍ରମେ । କର୍ମ ଅର୍ଜିତ ପଥଶ୍ରମେ ॥
ମଜ୍ଜଇ ମାୟା ଅହଙ୍କାରେ । ନିଜ ମହିମା ନ ସୁମରେ ॥
ସ୍ୱଭାବେ ଏ ନିତ୍ୟ ମୁକତ । ଯଦ୍ୟପି ଜୀବ ବିଦ୍ୟାଯୁକ୍ତ ॥
ଆତ୍ମାକୁ ଆତ୍ମା ଯେବେ ସ୍ମରେ । ପରମ ଆନନ୍ଦେ ବିହରେ ॥
ଏବେ ତୁ ଶୁଣ ହେ ଉଦ୍ଧବ । ଜୀବ ପରମ ବେନି ଭାବ ॥
ଯେଣୁ ସେ ବେନି ସଙ୍ଗ ହୋଏ । ବଦ୍ଧ ବିମୁକ୍ତ ଭାବ ବହେ ॥୩-୫
ଏକଇ ବୃକ୍ଷେ ହଂସ ଦୁଇ । ବସନ୍ତି ପ୍ରିୟଭାବ ବହି ॥
ସ୍ୱଭାବେ ବେନି ସଖା ହୋନ୍ତି । ଏକ ଆରକେ ନ ଛାଡ଼ନ୍ତି ॥
ସମାନ ଶକ୍ତି ସେ ବହନ୍ତି । ବଦ୍ଧ ବିମୁକ୍ତ ବେନି ଗତି ॥
ସେ ବୃକ୍ଷେ ଯେତେ ଫଳ ଫଳେ । ଏକ ଭୁଞ୍ଜଇ ତାହା ବଳେ ॥
ଏକ ବଞ୍ଚଇ ଉପବାସେ । ନିର୍ଲେପ ନିରଞ୍ଜନ ଅଂଶେ ॥ ୬
ନିତ୍ୟ ଆନନ୍ଦ ପରିପୂର୍ଣ୍ଣ । ସକଳ ଦେଖଇ ସମାନ ॥
ସେହୁ ନ ଜାଣେ ନିଜ ପର । ଯେଣୁ ନିର୍ମଳ ଜ୍ଞାନ ତାର ॥
ଯେ ହଂସ ବୃକ୍ଷଫଳ ଖାଇ । ଲୋଭେ ବନ୍ଧନ ତାର ଦେହୀ ॥
ଅଜ୍ଞାନେ ନ ଜାଣଇ କିଛି । ଏମନ୍ତେ ବେନି ଆତ୍ମା ଲକ୍ଷି ॥
ପରମ ପରମଆନନ୍ଦୀ । ଅବିଦ୍ୟା ସଙ୍ଗେ ଜୀବ ବନ୍ଦୀ ॥ ୭
ପ୍ରତ୍ୟକ୍ଷେ ଦେହେ ସେ ବସଇ । ନ ଥିଲା ପ୍ରାୟ ଲକ୍ଷ୍ୟ ହୋଇ ॥
ଏ ଭାବେ ଥାନ୍ତି ଯେତେ ପ୍ରାଣୀ । ପଣ୍ଡିତ ବୋଲି ତାଙ୍କୁ ଗଣି ॥
ଦେହେ ନ ଥାଇ ଥିଲା ପ୍ରାୟେ । ଯେ ମଣେ ସେ ବଞ୍ଚିତକାୟେ ॥
ସ୍ୱପ୍ନ ଜାଗ୍ରତେ ଯେହ୍ନେ ମିଛ । କୁମତି ମଣେ ତା ପ୍ରତ୍ୟକ୍ଷ ॥ ୮

ଏଣୁ ବିଷୟ ଇନ୍ଦ୍ରିଗଣେ । ଭୁଞ୍ଜନ୍ତି ବିଧି ଆଚରଣେ ॥
ଜୀବ ସେ ଉଦାସୀନ ରୂପେ । ବସଇ ତାହାଙ୍କ ସମୀପେ ॥
ଏଣୁ ପରମ ନାମ ତାର । ନିର୍ଲେପ ନିତ୍ୟ ନିରାକାର ॥
ଯେ ଭାବେ ଅହଙ୍କାର ମିଶେ । ଇନ୍ଦ୍ରି ବିଷୟରସେ ରସେ ॥ ୯
କୁମତି ଅଦୃଷ୍ଟ ଅଧୀନ । କର୍ମର ଫଳେ ସେ ବନ୍ଧନ ॥
ଏଣୁ ସେ ଗୁଣ କର୍ମମୟେ । ପ୍ରକାଶେ କର୍ତ୍ତା ଭୋକ୍ତା ପ୍ରାୟେ ॥୧୦
ଏଣୁ ପରମଆତ୍ମା ପ୍ରାୟେ । ଉଦାସୀମତେ ସର୍ବ ଠାଏ ॥
କେବେହେଁ ନ କରିବ ସଙ୍ଗ । ସମୁଦ୍ରେ ଯେସନେ ତରଙ୍ଗ ॥
ସର୍ବ ବିଷୟ ପରବଶ । କେବେହେଁ ନୋହିବ ବିଶ୍ୱାସ ॥
ଆସନ ଶୟନ ମାର୍ଜନେ । ଭୋଜନ ପାନେ ଅବଧାନେ ॥
ଶ୍ରବଣ ଗମନ ସ୍ପର୍ଶନେ । ପ୍ରପଞ୍ଚ ରୂପ ଦରଶନେ ॥
ଏ ସର୍ବ ଭାବେ ଉଦାସୀନ । ଯେ ରହେ ସେହୁ ମହାଜନ ॥୧୧
ଯେହ୍ନେ ଆକାଶ ସବୁଠାରେ । ଅଛି ସେ ନ ଲାଗି କାହିଁରେ ॥
ସୂର୍ଯ୍ୟର ପ୍ରତିବିମ୍ବ ଜଳେ । ଅଛି ସେ ନ ଲାଗି ନିଶ୍ଚଳେ ॥
ସକଳ ସ୍ଥାନେ ସଞ୍ଚରଇ । ପବନ କାହିଁ ନ ଲାଗଇ ॥
ତେସନେ ସର୍ବ ବିଷୟରେ । ଇନ୍ଦ୍ରିଗଣଙ୍କୁ ନିରନ୍ତରେ ॥
ଭୁଞ୍ଜାଇ ସାକ୍ଷୀ ରୂପେ ଥାଏ । ଅଜ୍ଞାନୀ ପ୍ରାୟେ ବନ୍ଧ ନୋହେ ॥
ସ୍ୱପ୍ନ ଜାଗ୍ରତ ପ୍ରାୟ ହୋଇ । ତାର ସଂସାର ନିବର୍ତ୍ତଇ ॥
ନିରଭିମାନ ଗୃହେ ଦେହେ । କରି ଭ୍ରମଇ ସର୍ବ ଠାଏ ॥୧୨,୧୩
ସଙ୍କଳ୍ପ ନ ଭାବଇ ମନେ । ଗୃହ ଶରୀର ଅଭିମାନେ ॥
କେ କରେ ହିଂସା ଅହଙ୍କାର । କେ ପୁଣ କରେ ନମସ୍କାର ॥
କେ ଅବା କରେ ନିନ୍ଦା ସ୍ତୁତି । ଏଣେ ନ କରି ଭେଦମତି ॥
ଅଦୃଷ୍ଟ ମାନି ଅବଧାନ । ଚିତ୍ତରେ ଧରି ଦିବ୍ୟଜ୍ଞାନ ॥
ସମେ ଦେଖଇ ସର୍ବ ଅଂଶ । ଭେଦ ନ କରି ଗୁଣ ଦୋଷ ॥୧୪,୧୫
ଚିତ୍ତ ନିରୋଧି ଏ ଶରୀରେ । ଯେ କିଛି ନ ବୋଲେ ନ କରେ ॥

ଅସାଧୁ ସାଧୁ ଭେଦ ନାହିଁ । ସ୍ତୁତି ନିନ୍ଦନ ନ କରଇ ॥
ତାହାଙ୍କୁ ବୋଲିବା ପଣ୍ଡିତ । ସେ ଆତ୍ମାରାମେ ଜଡ଼ମତ ॥
ସଂସାର ମଧ୍ୟେ ସେ ଆନନ୍ଦ । ଦେଖଇ ପ୍ରାଣୀ ଭଲ ମନ୍ଦ ॥
ହୃଦରେ ତାହା ନ ଧରଇ । ଯେଣୁ ସେ ନିଜ ଭାବେ ଥାଇ ॥୧୬,୧୭
ଯେ ସର୍ବଶାସ୍ତ୍ରେ ସୁପଣ୍ଡିତ । ଜାଣଇ ସର୍ବ ଧର୍ମତତ୍ତ୍ୱ ॥
ସେ ଯେବେ ଏତେ ଗୁଣ ଘେନି । ପରମାନନ୍ଦଙ୍କୁ ନ ଚିହ୍ନି ॥
ସକଳ ଶାସ୍ତ୍ର ବ୍ୟର୍ଥ ତାର । କେବଳ ଶ୍ରମ ମାତ୍ର ସାର ॥
କୁଧେନୁ ବାନ୍ଧି ଗୃହେ ଯେହ୍ନେ । ନିରାଶ ହୋନ୍ତି କ୍ଷୀରପାନେ ॥୧୮
ଦୁଷ୍ଟ ଭାରିଯା ଶୋଭା ଦେଖି । ଯେ ଗୃହେ କାମଲୋଭେ ରଖି ॥
ସକଳ ଧର୍ମ ତାର ନାଶ । ନରକେ କରେ ଗୃହବାସ ॥
ଯାର ଶରୀର ପରାଧୀନ । କୁପୁତ୍ର କରେ ଯେ ରକ୍ଷଣ ॥
ମୋ ନାମ ନ ଶୁଣି ଯା ମୁଖେ । ଯେ ଲୋଭେ ଗୃହେ ଧନ ରଖେ ॥
ପାତ୍ରେ ନ କରେ ସମର୍ପଣ । କୁମତି କୁତ୍ସିତ କୃପଣ ॥
ଦୁଃଖୀରୁ ଦୁଃଖୀ ସେ ବୋଲାଇ । ଉଭୟ ଲୋକେ ସୁଖ ନାହିଁ ॥୧୯
ମୋର ନିର୍ମଳ ଯଶ ନାମ । ଯେ ଅବା ଅଛି ଗୁଣଗ୍ରାମ ॥
ମୋ କଥା ଯା ମୁଖେ ନ ଶୁଣି । ବ୍ୟର୍ଥ ଜୀବନ ପରିମାଣି ॥
ଯେବା ପଣ୍ଡିତ ଇହଲୋକେ । ମୋ ନାମ ନିତ୍ୟ ଗୁଣେ ମୁଖେ ॥
ମୁଁ ସର୍ବଭୂତେ ଅଛି ପୂରି । ଏ ଭାବେ ମନ ମୋରେ ଧରି ॥
ତତ୍ତ୍ୱ ବିଗ୍ରହି ତୁଟେ ଭ୍ରାନ୍ତି । ଭବ ସାଗରୁ ତରିଯାନ୍ତି ॥
ବୋଲନ୍ତି ଜଗତ ଜୀବନେ । ଏ ଯୋଗ ଗତି ତତ୍ତ୍ୱଜ୍ଞାନ ॥
ଏହା ଯେ ନ ଧରିବେ ଚିତ୍ତେ । ସଂସାରୁ ତରିବେ କେମନ୍ତେ ॥୨୦,୨୧
ତୁ ଯେବେ ମନ ମୋର ଦେହେ । ଧରି ନ ପାରୁ ମାୟାମୋହେ ॥
ତେବେ ସକଳ କର୍ମ ମୋତେ । ସମର୍ପି ରହ ଦୃଢ଼ଚିତ୍ତେ ॥୨୨
ସକଳ କର୍ମ ଏ ଜଗତେ । ଭାବେ କହିଲି ମୁହିଁ ତୋତେ ॥
ମୋହର ଜନ୍ମ କର୍ମ ନାମ । ଶୁଭ ପବିତ୍ର ପୁଣ୍ୟଧାମ ॥

ଆବର ଗୁଣ ଅଛି ଯେତେ । ଉଦ୍ଧବ ଶୁଣ ଏକଚିତ୍ତେ ॥
ସ୍ମରଣ କୀର୍ତ୍ତନ ଶ୍ରବଣ । ଯେ ମୋର ଧର୍ମ ଆଚରଣ ॥
ସର୍ବ ସମର୍ପି ମୋର ପାଦେ । ସଂସାରୁ ତର ଅପ୍ରମାଦେ ॥୨୩,୨୪
ଏରୂପେ ଉପାସନା କର । ନିଶ୍ଚେ ଲଭିବୁ ମୋ ପୟର ॥
ସାଧୁଙ୍କ ସଙ୍ଗ କର ନିତି । ଲଭିବୁ ନିର୍ମଳ ଭକତି ॥
ଭକତି କରି ଶୁଦ୍ଧଚିତ୍ତେ । ଜ୍ଞାନ ଲଭିବୁ ତୁ ସାକ୍ଷାତେ ॥
ଜ୍ଞାନେ ସଂସାରୁ ହେବୁ ପାର । ଶୁଣି ଉଦ୍ଧବ ଯୋଡ଼ି କର ॥୨୫
ବୋଲଇ କୃଷ୍ଣ ମୁଖ ଗ୍ଚହିଁ । ଭୋ ନାଥ କର ମୋତେ ତ୍ରାହି ॥
ମୁଁ ତୋର ଚରଣେ ଶରଣ । କହ ତୋ ଭକତି ଲକ୍ଷଣ ॥
କି ରୂପେ ଭକତଙ୍କୁ ଜାଣି । ଭକତି କି ରୂପେ ପ୍ରମାଣି ॥
ତୁ ପରିପୂର୍ଣ୍ଣ ବ୍ରହ୍ମସାର । ସ୍ୱଭାବେ ପ୍ରକୃତିରୁ ପର ॥
ଭକତ କରେ ତୋତେ ବଶ । ତାର ରକ୍ଷଣେ ତୋ ପ୍ରକାଶ ॥
ଭକତ ହିତେ ତୋର ତନୁ । ଏଣୁ ଭକତ ବାକ୍ୟ ମାନୁ ॥
ଅନାଦି ପ୍ରଭୁ ଭଗବାନ । ପ୍ରଣତଜନର ପାଳନ ॥
ତୁ ପରିପୂର୍ଣ୍ଣ ବ୍ରହ୍ମରାଶି । ତୁ ଏ ସଂସାର ମଧ୍ୟେ ପଶି ॥
ସକଳ ତୋହର ଭିଆଣ । ଏଣୁ ତୁ ପରମ କାରଣ ॥
ଭକତି ଲକ୍ଷଣ ଯେମନ୍ତେ । ଜାଣିବି କହ ଦୟାଚିତ୍ତେ ॥
ଭକ୍ତ ଲକ୍ଷଣ ମୋତେ କହ । ଯେଣେ ଖଣ୍ଡିବ ମାୟାମୋହ ॥୨୬-୨୮

*ଶ୍ରୀ ଭଗବାନୁବାଚ*

ସାଧୁଙ୍କ ତିରିଶ ଲକ୍ଷଣ । ଉଦ୍ଧବ ସାବଧାନେ ଶୁଣ ॥
ସମଦରଶୀ ସତ୍ୟସାର । ଶୁଦ୍ଧ ବିବେକ ମତି ଯାର ॥
ଦ୍ରୋହ ବର୍ଜିତ ଶାନ୍ତିପର । ତ୍ୟାଗ ସ୍ୱଭାବ ମହାଧୀର ॥
କୃପାଳୁ ସର୍ବଲୋକ ହିତ । ଶୁଚି ଦରିଦ୍ର ଦୃଢ଼ବ୍ରତ ॥
ଅଳ୍ପଭୋଜନ ଧର୍ମେ ସ୍ଥିର । ମୃଦୁ ପ୍ରସନ୍ନ ଧୃତିଶୀଳ ॥

ସୁକଲ୍ୟ[୧] ଅମାନୀ[୨] ମାନଦ[୩] । କବି[୪] ମଇତ୍ର ଶୁଦ୍ଧବୋଧ ॥
ଜିତ ଷଡ଼୍‌ଗୁଣ[୫] ଅପ୍ରମାଦୀ । ଗଭୀରଚିତ୍ତ ଧୀରବୁଦ୍ଧି ॥
ଏ ଆଦି ସପ୍ତବିଂଶ ଗୁଣ । ବିଶେଷେ ମୋହର ଶରଣ ॥
ଏତେ ଲକ୍ଷଣ ଲକ୍ଷି ଯହିଁ । ନିଶ୍ଚୟ ବୈଷ୍ଣବଟି ସେହି ॥୨୯-୩୧
ମୁଁ ବେଦରୂପେ ଅଛି ଭଣି । ଧର୍ମ ଅଧର୍ମ ପରିମାଣି ॥
ତହିଁରେ ଦୋଷ ଗୁଣ ଯେତେ । ନିଶ୍ଚୟ କରି ଶାସ୍ତ୍ରମତେ ॥
ସକଳ ଧର୍ମ ତେଜି ଚିତ୍ତେ । ଯେ ମୋତେ ଭଜେ ଦୃଢ଼ମତେ ॥
ସେ ପ୍ରାଣୀ ଭକତ ଉତ୍ତମ । କହିଲେ ପୁରୁଷ ଉତ୍ତମ ॥
ଜାଣି ନ ଜାଣି ମୋ ମହିମା । ଭଜନ୍ତି ଭକତ ଉତ୍ତମା ॥୩୨,୩୩
ବିଗ୍ରହି ସର୍ବଧର୍ମ ତେଜି । ମୋତେ ଏକାନ୍ତଭାବେ ଭଜି ॥
ମୋର ମଧୁରରୂପ ଦେଖି । ସକଳ ସୁନ୍ଦର ଉପେକ୍ଷି ॥
ବେଗେ କରିବ ଦରଶନ । ସ୍ପର୍ଶନ ଅର୍ଚ୍ଚନ ବନ୍ଦନ ॥
ନାନା ପ୍ରକାରେ ସେବା ଯେତେ । ଭାବେ କରିବ ଶୁଦ୍ଧଚିତ୍ତେ ॥୩୪
ମୋର ଅମୃତ କଥାସାର । ଶ୍ରବଣେ ଶ୍ରଦ୍ଧା ନିତ୍ୟ ଯାର ॥
ମୋ ରୂପ ଧ୍ୟାନେ ଦୃଢ଼ମତି । ସକଳ ମୋତେ ସମର୍ପନ୍ତି ॥
ସେବକ ଭାବେ ଆତ୍ମା ମନ । ମୋ ପାଦେ କରେ ନିବେଦନ ॥୩୫
ମୋ ଜନ୍ମ କର୍ମର କଥନ । ମୋର ଉତ୍ସବେ ହୃଷ୍ଟମନ ॥
ନାନା ସୁବାଦ୍ୟ ନୃତ୍ୟଗୀତେ । କୀର୍ତ୍ତନ କରି ମୋ ଅଗ୍ରତେ ॥
ଗୋଷ୍ଠୀ କରିବ ବହୁ ମିଳି । ମୋ ଘରେ ଦେଇ ଦୀପାବଳୀ ॥
ଆନନ୍ଦେ କରି ମହୋତ୍ସବ । ଦିବସ ରଜନୀ ବଞ୍ଚିବ ॥୩୬
ମୋହର ଯାତ୍ରା ପର୍ବାପର୍ବେ । ବିଧିବିଧାନ ଯଥାପୂର୍ବେ ॥

---

୧. ସୁକଲ୍ୟ—ଅନ୍ୟକୁ ବୁଝାଇବାରେ ଦକ୍ଷ । ୨. ଅମାନୀ—ଯେ ସମ୍ମାନ ଗ୍ରହେଁ ନାହିଁ । ୩. ମାନଦ—ଯେ ଅନ୍ୟକୁ ସମ୍ମାନ ଦିଏ । ୪. କବି—ଭଗବତ୍‌ତତ୍ତ୍ୱ ବିଷୟକ ଜ୍ଞାନସମ୍ପନ୍ନ । ୫. ଜିତ ଷଡ଼୍‌ଗୁଣ—କ୍ଷୁଧା, ତୃଷାଦି ଷଡ଼ଗୁଣ ବିଜୟୀ ।

ଯେବା ବୈଦିକ ଦୀକ୍ଷାମାନ । କରିବ ମନ୍ତ୍ର ତନ୍ତ୍ର ଧ୍ୟାନ ॥
ବୈଷ୍ଣବ ଲକ୍ଷଣ ମୋ ବ୍ରତ । ସେ ରୂପେ ଥିବ ଦୃଢ଼ଚିତ୍ତ ॥୩୭
ଗୃହେ ସ୍ଥାପିବ ରୂପ ମୋର । ଅତି ବିଚିତ୍ର ମନୋହର ॥
ଆପଣା ହସ୍ତେ ନିର୍ମାଣିବ । ନୋହିଲେ ପରେ କରାଇବ ॥
ନାନା କୁସୁମବନ ରୋପି । ସୁସ୍ୱାଦୁ ଫଳବୃକ୍ଷ ସ୍ଥାପି ॥୩୮
ମାର୍ଜନୀ ଧରି ନିଜ କର । ମାର୍ଜନା କରିବ ମୋ ପୁର ॥
ଗୋମୟେ ଲିପିବ ମୋ ଘର । ନାନା ମଣ୍ଡଳେ ମନୋହର ॥
ସେବକ ପରି ଗୃହେ ଦାଣ୍ଡେ । ଲେଖିବ ନାନା ଚୂର୍ଣ୍ଣପିଣ୍ଡେ ॥
ମୋର ମନ୍ଦିର ମନୋହର । କରିବ ବିଚିତ୍ର ସଂସ୍କାର ॥
ଏ ଆଦି ପୁଣ୍ୟକର୍ମ ଯେତେ । ସାଧିବ ଗୃହାରମ୍ଭ ମତେ ॥୩୯
ମାନ କୈତବ[୧] କୂଟ ଦମ୍ଭ । ଚିତ୍ତେ ନ କରିବ ଆରମ୍ଭ ॥
ମୋ ପ୍ରୀତିଅର୍ଥେ କର୍ମ କରି । ମୋର ଚରଣ ଚିତ୍ତେ ଧରି ॥
ଯେ ପୁଣ୍ୟ ଆପଣେ କରିବ । କେବେହେଁ ପରେ ନ କହିବ ॥
ଯେ ଦୀପ ମୋତେ ସମର୍ପିବ । ତା ଆନ କାର୍ଯ୍ୟେ ନ ଜାଳିବ ॥
ପୁଣି ଯା ଅନ୍ୟେ ଭୋଗ ଦେବ । ତା ମୋତେ କେବେହେଁ ନ ଦେବ ॥
ଯେ ଦ୍ରବ୍ୟ ମୋତେ ସମର୍ପିବ । ପୁଣି ଗ୍ରହଣ ନ କରିବ* ॥
ମୋ ଦ୍ରବ୍ୟେ ଅଧିକାର ଯେତେ । କେବେହେଁ ନ କଳ୍ପିବ ଚିତ୍ତେ ॥୪୦

---

୧. କୈତବ—କପଟ ।

* କୌଣସି ଦ୍ରବ୍ୟ କାହାକୁ ଥରେ ସମର୍ପିତ କରିଦେବା ପରେ ଆସକ୍ତି ହେତୁ ତାହାକୁ ପୁନଃ ଗ୍ରହଣ କରିବା ବା ନିଜର ବୋଲି ଭାବିବା ଅବିଧେୟ; କାରଣ ଏହା ପରସ୍ୱ ହରଣ ଅଟେ । ଏ ଦୃଷ୍ଟିରୁ ଭଗବାନଙ୍କୁ ନିବେଦିତ ଦ୍ରବ୍ୟକୁ ପୁନଃ ଗ୍ରହଣ କରିବା, ଏପରିକି ତାଙ୍କୁ ଅର୍ପିତ ପ୍ରଦୀପ ଆଲୋକରେ ବହି ପଢ଼ିବା ମଧ୍ୟ ଦୋଷାବହ । କିନ୍ତୁ ପତ୍ର, ପୁଷ୍ପ, ନୈବେଦ୍ୟ ଆଦିକୁ ଭଗବାନଙ୍କ ପ୍ରସାଦ ଭାବରେ ଶ୍ରଦ୍ଧା ଭକ୍ତିର ସହ ଗ୍ରହଣ କରିବାରେ ଦୋଷ ନାହିଁ, ବରଂ ଏହାଦ୍ୱାରା ପୁଣ୍ୟାର୍ଜନ ହୋଇଥାଏ । କୁହାଯାଇଛି—"ଷଡ଼୍‌ଭିର୍ମାସୋପବାସୈସ୍ତୁ ଯତ୍‌ଫଳଂ ପରିକୀର୍ତ୍ତିତମ୍ । ବିଷ୍ଣୋର୍ନୈବେଦ୍ୟସିକ୍ଥେନ

ଆତ୍ମାର ପ୍ରିୟବସ୍ତୁ ଯେତେ । ଉତ୍ତମ ବସ୍ତୁ ଯା ଜଗତେ ॥
ଯେବା ମିଳିବ ଅକସ୍ମାତେ । ଆନନ୍ଦେ ସମର୍ପିବ ମୋତେ ॥
ମୋର ପ୍ରସନ୍ନେ ତାର ଫଳ । ହୋଇବ ଅନନ୍ତ ନିଶ୍ଚଳ ॥୪୧
ମୋତେ ପୂଜିବ ଯେତେ ସ୍ଥାନେ । ଉଦ୍ଧବ ଶୁଣ ସାବଧାନେ ॥
ଗୋରୁ ବ୍ରାହ୍ମଣ ପୁଣ ରବି । ଗଗନ ପବନ ପୃଥିବୀ ॥
ଜଳ ବୈଷ୍ଣବ ଆଉ ଅଗ୍ନି । ଆତ୍ମା ସହିତ ସର୍ବପ୍ରାଣୀ ॥
ଉଦ୍ଧବ ପୂଜା ସ୍ଥାନ ମୋର । ଏ ରୂପେ ଅଟନ୍ତି ଏଗାର ॥୪୨
ଯାହାକୁ ଯେମନ୍ତେ ପୂଜିବ । କହିବା ଶୁଣ ହେ ଉଦ୍ଧବ ॥
ଶୀତଳ ଜଳ ତୃଣ ଦାନେ । ଗୋରୁଙ୍କୁ ପୂଜିବ ଗୋସ୍ଥାନେ ॥
ଅତିଥିମତେ ନାନାଦ୍ରବ୍ୟେ । ବିପ୍ରେ ପୂଜିବ ବିଷ୍ଣୁଭାବେ ॥
ପବିତ୍ର ଦ୍ରବ୍ୟେ ପୁଷ୍ପ ଅର୍ଘ୍ୟେ । ରବି ପୂଜିବ ବେଦମାର୍ଗେ ॥୪୩
ଆକାଶବର୍ଣ୍ଣ ହୃଦେ ଧରି । ଧ୍ୟାନେ ପୂଜିବ ନରହରି ॥
ପ୍ରାଣ ପବନ ସମାଧାନେ । ଉଦ୍ଧବ ପୂଜିବ ପବନେ ॥
ଭୂମି ପୂଜିବ ମନ୍ତ୍ରତନ୍ତ୍ରେ । ସଂସ୍କାର ବିଧି ବେଦମତେ ॥
ଜଳେ ପୂଜିବ ମୋତେ ଭାବେ । ବିବିଧ ଜଳମୟ ଦ୍ରବ୍ୟେ ॥
ବୈଷ୍ଣବ ଆଣି ନିଜ ସ୍ଥାନେ । ଅନ୍ନଭୋଜନ ଜଳପାନେ ॥
ଅଭିଗମନ ଅନୁଯାନେ । ପୂଜିବ ଇଷ୍ଟ ବନ୍ଧୁ ଯେହ୍ନେ ॥
ଆରମ୍ଭି ସଂସ୍କାର ଅନଳେ । ଘୃତ ଇନ୍ଧନ ଚରୁ ତିଳେ ॥
ଅଗ୍ନି ପୂଜିବ ମୋର ଧ୍ୟାନେ । ନିର୍ମଳ ନିଶ୍ଚଳ ଭୁବନେ ॥
ଆତ୍ମାକୁ ଆତ୍ମାରୂପେ ଧ୍ୟାୟି । ପୂଜିବ ନାନା ଭୋଗ ଦେଇ ॥
ସକଳ ଭୂତେ ମୁଁ ବସଇ । ଅନ୍ତରେ ଅନ୍ତର୍ଯାମୀ ହୋଇ ॥

---

ପୁଣ୍ୟଂ ତଦ୍‌ଭୁଞ୍ଜତାଂ କଳୌ ॥'' ଭଗବାନଙ୍କ ପ୍ରସାଦ ନିର୍ମାଲ୍ୟ ପ୍ରଭୃତି ସେବନ କରୁଥିବା ବ୍ୟକ୍ତି ଭଗବତ୍‌ସ୍ୱରୂପ ହୋଇଯାଏ—''ହୃଦି ରୂପଂ ମୁଖେ ନାମ ନୈବେଦ୍ୟମୁଦରେ ହରେଃ । ପାଦୋଦକଂ ଚ ନିର୍ମାଲ୍ୟଂ ମସ୍ତକେ ଯସ୍ୟ ସୋଽଚ୍ୟୁତଃ ॥'' (ଶ୍ରୀଧରସ୍ୱାମୀଙ୍କ 'ଭାବାର୍ଥଦୀପିକା' ଟୀକାନୁସାରେ) ।

ଏଣୁ ଅନନ୍ତ ରୂପେ ମୋତେ । ଧ୍ୟାନେ ପୂଜିବ ସର୍ବଭୂତେ ॥
ଏ ବିଧିମତେ ନାନାଠାବେ । ମୋତେ ପୂଜିବ ପ୍ରିୟଭାବେ ॥୪୪,୪୫
ଯେତେ କହିଲି ପୂଜାସ୍ଥାନେ । ମୋତେ ପୂଜିବ ଏ ବିଧାନେ ॥
ନୀଳଜୀମୂତ କଳେବର । ରାଜୀବଲୋଚନ ସୁନ୍ଦର ॥
ଶଙ୍ଖ ନଳିନ ଚକ୍ର ଗଦା । ଚତୁରଭୁଜେ ଶୋହେ ସଦା ॥
ସୁଗନ୍ଧ ବନମାଳା କଣ୍ଠେ । ରତ୍ନମେଖଳା କଟିତଟେ ॥
ଶ୍ରବଣେ ମକରକୁଣ୍ଡଳ । ଯେସନେ ଆକାଶମଣ୍ଡଳ ॥
ରବି ଶଶାଙ୍କ ବିରାଜଇ । ଏମନ୍ତ ଧ୍ୟାନେ ମନ ଦେଇ ॥
ଏ ବିଧିମତେ ପୂଜା କରି । ମୋ ରୂପ ମନେ ଅବଧାରି ॥
ମୋ ଭାବେ ଥିବ ନିରନ୍ତରେ । ଶୁଣ ଉଦ୍ଧବ କହୁଁ ତୋରେ ॥୪୬
ତୀର୍ଥଗମନ ଯଜ୍ଞଦାନ । କୂପ ତଡ଼ାଗ ଦେବସ୍ଥାନ ॥
ଏ ଆଦି କର୍ମ କରି ଯେତେ । ମୋ ପାଦେ ସମର୍ପିବ ନିତ୍ୟେ ॥
ଏ ରୂପେ ପୂଜି ମୋ ଚରଣେ । ଲଭି ଭକତି ଦୃଢ଼ମନେ ॥୪୭
ନିରତେ ଥିବ ସାଧୁ ସଙ୍ଗେ । ନିର୍ମଳ ଭକ୍ତି ଯୋଗ ମାର୍ଗେ ॥
ଏ ଭାବେ ପ୍ରାଣୀ ମୋତେ ପାଇ । ଏ ବିନୁ ଅନ୍ୟ ଗତି ନାହିଁ ॥୪୮
ଯେଣୁ ତୁ ମୋର ନିଜ ଦାସ । ତେଣୁ କହିଲି ଉପଦେଶ ॥
ଆଉ କହିବି ମୁହିଁ ତୋତେ । ଶୁଣ ଉଦ୍ଧବ ଏକଚିତ୍ତେ ॥୪୯
ବୋଲଇ ଦାସ ଜଗନ୍ନାଥ । ସୁଜନେ ଚିନ୍ତ ଭାଗବତ ॥
କୃଷ୍ଣବଚନ ଏକାଦଶେ । ଯେ ଅବା ଉଦ୍ଧବେ ପ୍ରକାଶେ ॥
ସୁଜନେ ଶୁଣି କର୍ଣ୍ଣପୁଟେ । ତରିବ ସଂସାରୁ ନିକଟେ ॥

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ଏକାଦଶସ୍କନ୍ଧେ ଦ୍ୱାଦଶୋଽଧ୍ୟାୟଃ ।

❐❐❐

# ତ୍ରୟୋଦଶ ଅଧ୍ୟାୟ*

ସାଧୁସଙ୍ଗର ଯେବା ଗୁଣ । ଆବର କର୍ମ ଅନୁଷ୍ଠାନ ॥
ପୁଣି ତା ତ୍ୟାଗର ବିଧାନ । ତ୍ରୟୋଦଶରେ ଏ ବର୍ଣ୍ଣନ ॥

*ଶ୍ରୀ ଭଗବାନୁବାଚ*

କହନ୍ତି କୃଷ୍ଣ ତୋଷଚିତ୍ତେ । ଶୁଣ ଉଦ୍ଧବ କହୁଁ ତୋତେ ॥
ଯେ ଧର୍ମ ସାଂଖ୍ୟ କର୍ମଯୋଗେ । ମୁହିଁ କହିଲି ବ୍ରହ୍ମଭାଗେ ॥
ବେଦପଠନ ତପ ତ୍ୟାଗ । ପୁଣ୍ୟ ସମୂହ ବଇରାଗ୍ୟ ॥
କୂପ ତଡ଼ାଗ ନିରିମାଣ । ଏ ଆଦି ପୁଣ୍ୟକର୍ମମାନ ॥
ବିବିଧ ବ୍ରତ ମହାଦାନ । ଯମ ନିୟମ ଦେବାର୍ଚ୍ଚନ ॥
ଧନ ସଞ୍ଚିଣ ଯଜ୍ଞ କରେ । ତୀର୍ଥଗମନ ନିରନ୍ତରେ ॥
ନାନା ଉପାୟେ ପଥ ହେରି । ମୋତେ ନ ପାରେ ବଶ କରି ॥
ଏ ଜୀବ ସାଧୁସଙ୍ଗ ବିନୁ । ଲଭି ନ ପାରେ ମୋର ତନୁ ॥
ସର୍ବ କୁସଙ୍ଗ ଦୋଷ ହରେ । ଯେ ନିତ୍ୟେ ସାଧୁସଙ୍ଗ କରେ ॥୧,୨
ଯେ ଅବା ପତିତ ପାମର । ସତ୍ସଙ୍ଗେ ତରେ ଭବଘୋର ॥
ଦୈତ୍ୟ ଦାନବ ଖଗ ମୃଗ । ଗନ୍ଧର୍ବ ଅପସରା ନାଗ ॥
ସିଦ୍ଧ ଚାରଣ ବିଦ୍ୟାଧର । ଯକ୍ଷ ଗୁହ୍ୟକ ଯେ କିନ୍ନର ॥
ସ୍ତ୍ରୀ ଶୂଦ୍ର ପତିତ ଚାଣ୍ଡାଳେ । ତରିଲେ ସାଧୁସଙ୍ଗ ମେଳେ ॥
ସ୍ୱଭାବେ ରଜ ତମେ ଥାନ୍ତି । ସାଧୁସଙ୍ଗମେ ମୋତେ ପାନ୍ତି ॥୩,୪
ଉଦ୍ଧବ କହୁଁ ତୋ ଅଗ୍ରତେ । ସତ୍ସଙ୍ଗେ ତରିଗଲେ ଯେତେ ॥
ପୂର୍ବେ ଯେ ବୃଷପର୍ବା ବଳି । ତରିଲେ ସାଧୁସଙ୍ଗେ ମିଳି ॥
ବାଣ ମୟ ଯେ ବିଭୀଷଣ । ସୁଗ୍ରୀ ଜାମ୍ବବ ହନୁମାନ ॥
ଗଜ ଜଟାୟୁ ତୁଳାଧାର । ପ୍ରହ୍ଲାଦ ବୃତ୍ର ଯେ ଅସୁର ॥

* ମୂଳ ସଂସ୍କୃତ ଅନୁସାରେ ଦ୍ୱାଦଶ ଅଧ୍ୟାୟ ।

ଲୁବ୍ଧକ କଂସର କୁବୁଜୀ । ସତ୍ସଙ୍ଗେ ମୋର ପାଦେ ଭଜି ॥
ଯଜ୍ଞକାମିନୀ ବ୍ରଜନାରୀ । ଏ ସାଧୁସଙ୍ଗେ ଗଲେ ତରି ॥୫,୬
ସ୍ୱଭାବେ ସ୍ତିରୀଜନ୍ମ ହୋନ୍ତି । ବେଦ ପୁରାଣ ନ ଜାଣନ୍ତି ॥
ମହାନ୍ତ ନ କରନ୍ତି ସେବା । ସେ ନ ପୂଜନ୍ତି ଯଜ୍ଞଦେବା ॥
କେବଳ ସାଧୁସଙ୍ଗ ଫଳେ । ମୋତେ ପାଇଲେ ଅନ୍ତକାଳେ ॥ ୭
ଜାରପୁରୁଷ ଭାବେ ମୋତେ । ନିତ୍ୟେ ଭାବିଲେ ଅନ୍ତର୍ଗତେ ॥
ଏଣୁ ତରିଲେ ବ୍ରଜନାରୀ । ଆନନ୍ଦେ କହିଲେ ମୁରାରି ॥
ବୃକ୍ଷ ସୁରଭି ନାଗ ମୃଗ । ସାଧୁସଙ୍ଗମେ ମୋକ୍ଷ ଯୋଗ ॥
ଭକତିବଳେ ସାଧୁମେଳେ । ମୋତେ ପାଇଲେ ଅନ୍ତକାଳେ ॥ ୮
ଯୋଗୀନ୍ଦ୍ରଗଣେ ମୁନିଗଣେ । ଧ୍ୟାନେ ଚିନ୍ତନ୍ତି ମୋ ଚରଣେ ॥
ନ ପାଇ ସାଂଖ୍ୟଯୋଗେ ଫୁଟି । ବିବିଧ ବ୍ରତ ଦାନ କୋଟି ॥
ଏ ଆଦି ଚିତ୍ତ ବଇରାଗ୍ୟେ । ସନ୍ନ୍ୟାସ ଭାବେ ସର୍ବତ୍ୟାଗେ ॥
ଉପାୟ କରି ନାନାମତେ । ସେ ମୋତେ ଲଭିବେ କେମନ୍ତେ ॥
ଯେ ସାଧୁସଙ୍ଗକୁ କରଇ । ସେ ତରେ ଭକ୍ତିଭାବ ପାଇ ॥ ୯
ଉଦ୍ଧବ ସାଧୁସଙ୍ଗ କରି । ମାୟା ତରିଲେ ଗୋପନାରୀ ॥
ଅକ୍ରୂର ଯେତେବେଳେ ମୋତେ । ମଥୁରା ଘେନିଗଲା ରଥେ ॥
ରାମ ସଙ୍ଗତେ ମୋତେ ଦେଖି । ସକଳ ସଂସାର ଉପେକ୍ଷି ॥
ମୋର ବିଯୋଗେ ବ୍ରଜନାରୀ । ଶୋକ ସାଗରେ ଜ୍ଞାନହାରି ॥
ମୋର ଚରଣେ ଅନୁରାଗେ । ଚିତ୍ତ ବୁଡ଼ାଇ ପ୍ରେମଭାବେ ॥
ଧରି ନ ପାରି ହୃଦ ମନ । ଶୂନ୍ୟ ଦେଖିଲେ ତ୍ରିଭୁବନ ॥୧୦
ରାସ ଉତ୍ସବେ ମୋର ସଙ୍ଗେ । ଯେତେ ରଜନୀ ବନଭାଗେ ॥
ବଞ୍ଚିଲେ ଗୋପର ତରୁଣୀ । ତିଳାର୍ଦ୍ଧେ ପ୍ରାୟେ ତାହା ମଣି ॥
ଏକ ରଜନୀ ମୋ ବିଯୋଗେ । ମଣିଲେ କୋଟି କଳ୍ପଯୁଗେ ॥୧୧
ମୋ ବିନୁ ନ ଜାଣନ୍ତି ଆନ । ମୋ ପାଦେ ତନୁ ମନ ପ୍ରାଣ ॥
ନିବେଦି ଆତ୍ମା ପାସୋରିଲେ । ରାତ୍ର ଦିବସ ନ ଜାଣିଲେ ॥

ନ ଜାଣି ଇହ ପର ସ୍ଥାନ । ଦେଖନ୍ତି ତ୍ରିଭୁବନ ଶୂନ୍ୟ ॥
ସେ ଯେହ୍ନେ କରନ୍ତି ମୋ ସେବା । ତହିଁକି ଉପଲକ୍ଷ୍ୟ ଦେବା ॥
ଯେହ୍ନେ ଗହନ ଘୋରବନେ । ସମାଧି ବସି ଯୋଗୀଜନେ ॥
ଦେହ ସଂସାର ପାସୋରନ୍ତି । ନିର୍ମଳଜ୍ଞାନେ ଦେଇ ମତି ॥
ଦେଖ ଏ ଯେତେ ନଦନଦୀ । ପ୍ରବାହେ ମିଳନ୍ତି ଜଳଧି ॥
ଲବଣଜଳେ ସେ ମିଶନ୍ତି । ସ୍ୱନାମ ରୂପ ପାସୋରନ୍ତି ॥
ଗୋପକାମିନୀ ସେହିମତେ । ମନ ବଚନ ଦେଇ ମୋତେ ॥
ଦେହ ସଂସାର ପାସୋରିଲେ । ଜନ୍ମ ମରଣୁଁ ନିସ୍ତରିଲେ ॥୧୨
ଜାରପୁରୁଷଭାବ ମୋହେ । ମୋତେ ନ ଜାଣନ୍ତି ନିଶ୍ଚୟେ ॥
ପରମବ୍ରହ୍ମ ମୁଁ ସ୍ୱଭାବେ । ଅନ୍ତେ ପଶିଲେ ମୋର ଠାବେ ॥
ଏଣୁ ଏ ସାଧୁଙ୍କ ସଙ୍ଗମ । ତାରଇ ସ୍ଥାବର ଜଙ୍ଗମ ॥୧୩
ଏ ବୋଲ ବୁଝି ତୁ ଉଦ୍ଧବ । ମୋର ଚରଣେ କର ଭାବ ॥
ବିଧି ନିଷେଧ ଆଦି କର୍ମ । ଛାଡ଼ି ସକଳ ଲୋକଧର୍ମ ॥
ପ୍ରବୃତ୍ତି ନିବୃତ୍ତି ଏ ବେନି । ଦୃଷ୍ଟି ଶ୍ରବଣେ ଅନୁମାନି ॥
ସକଳ ଛାଡ଼ି ଜ୍ଞାନବଳେ । ଭଜ ତୁ ମୋ ପାଦକମଳେ ॥
ମୁହିଁ ସେ ମହାମହେଶ୍ୱର । ସକଳଆତ୍ମା ମୋ ଗୋଚର ॥
ତୁ ଏକଭାବେ ଯେବେ ଭାବୁ । ଏ ଘୋର ସଂସାରୁ ତରିବୁ ॥
ଶରଣ ପଶ ମୋର ପାଦେ । ନ ଡର ବିଷୟା ବିଷାଦେ ॥
ଯେ ମୋର ଚରଣ ଚିନ୍ତଇ । ସଂସାରେ ତାର ଭୟ ନାହିଁ ॥୧୪,୧୫
ଏମନ୍ତ ଗୋବିନ୍ଦର ବାଣୀ । ଉଦ୍ଧବ ଭୟ କଲା ଶୁଣି ॥
କୃଷ୍ଣ ଚରଣ ତଳେ ପଡ଼ି । ବୋଲଇ ବେନି କର ଯୋଡ଼ି ॥(ଜ.)

*ଉଦ୍ଧବ ଉବାଚ*

ଭୋ ନାଥ ତୋହର ବଚନ । ଶୁଣି ସଂଶୟ ମୋର ମନ ॥
ତୁ ମୋତେ କଥା ଅନୁସାରେ । ବୋଇଲୁ କର୍ମ ତେଜିବାରେ ॥
ପୁଣି ବୋଇଲୁ ଭଜ ମୋତେ । ଏଣୁ ମୁଁ ଭ୍ରାନ୍ତି କଲି ଚିତ୍ତେ ॥

କି କର୍ମ କଲେ ନରହରି । ପ୍ରାଣୀ ସଂସାରୁ ଯାନ୍ତି ତରି ॥
କି କର୍ମ ତେଜି ଭବୁଁ ପାର । କହ ହେ କମଳାର ବର ॥
ଏ ବେନି ସଂଶୟ ମୋ ଖେଦ । ଜ୍ଞାନ ଖଡ଼ଗେ ନାଥ ଛେଦ ॥୧୬
ଉଦ୍ଧବ ବାକ୍ୟେ ଯଦୁପତି । କହନ୍ତି ଜୀବଆତ୍ମା ଗତି ॥(ଜ.)

*ଶ୍ରୀ ଭଗବାନୁବାଚ*

ଶୁଣ ହେ ଭକତ ନିପୁଣ । ଏ ଜୀବ ସ୍ୱଭାବେ ନିର୍ଗୁଣ ॥
ଈଶ୍ୱର ନିରଞ୍ଜନ ଏହି । ମାୟା ଶୟଳେ ଦେହ ବହି ॥
ଯେଣୁ ଅବିଦ୍ୟାବନ୍ଧ ତାର । ଏ ଘେନି କର୍ମେ ଅଧିକାର ॥
ବିଧି ନିଷେଧ ଏଣୁ କରି । ସୁକର୍ମ କୁକର୍ମ ବିଗ୍ରହି ॥
ଏଣୁ କେବଳ ମୋକ୍ଷ ଲାଭେ । କର୍ମ କରିବ ଶୁଦ୍ଧଭାବେ ॥
ଏମନ୍ତେ ସାଧି ଶୁଦ୍ଧକର୍ମ । ଲଭେ ଭକତି ତୁଟେ ଭ୍ରମ ॥
ଭକତି ଉପୁଜିବ ଯେବେ । ଛାଡ଼ିବ ସର୍ବକର୍ମ ତେବେ ॥
ଏ ଭାବେ ଥିଲେ ହେ ଉଦ୍ଧବ । କର୍ମ ଲକ୍ଷିତ ଶୁଭାଶୁଭ ॥
ଜୀବର ନୁହଇ ବନ୍ଧନ । କହିଲେ ଶ୍ରୀ ମଧୁସୂଦନ ॥
ଏବେ ତୁ ଶୁଣ ମୋ ବିଗ୍ରହ । ଜୀବ ଆତ୍ମାର ମୋକ୍ଷଦ୍ୱାର ॥
ଏ ଜୀବଆତ୍ମା ମହେଶ୍ୱର । ସୂକ୍ଷ୍ମ ନିର୍ମଳ ନିରାକାର ॥
ପୁରାଣ ପୁରୁଷ ଏ ଆଦି । ଦେହେ ପ୍ରକାଶେ ଚକ୍ର ଭେଦି ॥
ପ୍ରଥମ ଚକ୍ରେ[୧] ସୂକ୍ଷ୍ମରୂପ । ଦ୍ୱିତୀୟେ[୨] ପ୍ରକାଶେ ଅଳପ ॥
ତହୁଁ ଅଧିକ ମଣିପୁରେ । ପ୍ରକାଶେ ଅନାହତ ଦ୍ୱାରେ ॥
ମୃଣାଳସୂତ୍ର ମାର୍ଗେ ଜ୍ୟୋତି । ଧ୍ୟାନ ଅଭ୍ୟାସେ ଯାହା ଚିନ୍ତି ॥
ଚକ୍ରପବନ ମହାବଳୀ । ମନ ପବନ ସଙ୍ଗେ ତୋଳି ॥
ବିଶୁଦ୍ଧଚକ୍ର ରନ୍ଧ୍ରଦେଶେ । ଆସନ ଦୃଢ଼ବନ୍ଧ ପାଶେ ॥

---

୧. ପ୍ରଥମ ଚକ୍ର—ମୂଳାଧାର ଚକ୍ର । ୨. ଦ୍ୱିତୀୟ (ଚକ୍ର)—ସ୍ୱାଧିଷ୍ଠାନ ଚକ୍ର ।

ପ୍ରାଣକୁ ବ୍ରହ୍ମରନ୍ଧ୍ରେ ଥୋଇ । ନିଶ୍ଚଳ ଧ୍ୟାନେ ମନ ଦେଇ ॥
ତେବେ ତୁ ଦେଖିବୁ ସାକ୍ଷାତେ । ଆତ୍ମାର ରୂପ ଦୃଷ୍ଟିମାତ୍ରେ ॥୧୭
ଅଗ୍ନି ଯେସନେ ଥାଏ ଶୂନ୍ୟେ । କେବଳ ଉଷ୍ମ ଅନୁମାନେ ॥
ଲୌହ ପାଷାଣ ଘରଷଣେ । ସଂଯୋଗେ ଉଠେ ଅଗ୍ନିକଣ ॥
ଯତ୍ନେ ସମିଧ ଦେଲେ ତହିଁ । ସ୍ୱଭାବେ ଶିଖା ପ୍ରକାଶଇ ॥
ପୁଣି ପାଇଲେ ଘୃତଧାର । ଜଳଇ ଅତି ବଳୀୟାର ॥
ଏ ରୂପେ ଆତ୍ମା ସୂକ୍ଷ୍ମବାଣୀ । ବେଦବଚନ ପରିମାଣି ॥
ଏ ଷଡ଼ଚକ୍ର ଭେଦି ସ୍ଫୁରେ । ଶବଦ ଦ୍ୱାଦଶ ପ୍ରକାରେ ॥
ଏ ଅନାହତ ପୁରେ ସ୍ଥିତି । ଜୀବ ଆତ୍ମାର ତତ୍ତ୍ୱ ଗତି ॥୧୮
ଏ ଜୀବ ସୃଷ୍ଟି ପ୍ରକରଣେ । ଯେ ଏକାଦଶ ଇନ୍ଦ୍ରିଗଣେ ॥
କେ ଜ୍ଞାନମାର୍ଗରେ ସଞ୍ଚରେ । କେ କର୍ମପଥରେ ପ୍ରଚରେ ॥
ମନ ସଙ୍କଳ୍ପେ ବୁଦ୍ଧି ଚିନ୍ତି । ଯେ ଅଭିମାନେ ଅହଂକୃତି ॥
ରଜ ତାମସ ସତ୍ତ୍ୱଗୁଣ । ମାୟାର ବିକାର ଏ ପୁଣ ॥
ଉଦ୍ଧବେ କହିଲେ ଶ୍ରୀପତି । ଜାଣ ତୁ ଏହିରୂପେ ଚିନ୍ତି ॥୧୯
ସେ ନିତ୍ୟ ସନାତନ ହରି । ଅନନ୍ତ ଶକ୍ତି ଅଛି ଧରି ॥
ପ୍ରଥମେ ଏକରୂପ ତାର । ଅନାଦି ଅବ୍ୟକ୍ତ ଈଶ୍ୱର ॥
ସେ ନିଜ ଶକ୍ତିଭାବ ବଳେ । ଅଶେଷ ରୂପ ଏ ଶରୀରେ ॥
ପ୍ରକାଶ କରି ନିଜ ଶକ୍ତି । ମାୟା ସଂଯୋଗେ ନାନାମୂର୍ତ୍ତି ॥
ସେ ଯେବେ ରଜୋଗୁଣେ ମିଶେ । ତା ତହୁଁ ସଂସାର ପ୍ରକାଶେ ॥
ସୃଷ୍ଟି ପାଳଇ ସତ୍ତ୍ୱେ ମିଶି । ତାମସ ଯୋଗେ ତାହା ନାଶି ॥
ଈଶ୍ୱର ମାୟାଲୀଳା କରି । ଖେଳଇ ଜଗତ ଆବୋରି ॥
ସେ ଏକରୂପ ଭଗବାନ । ତା ତହୁଁ ସୃଷ୍ଟି ନୋହେ ଭିନ୍ନ ॥୨୦
ସୂତ୍ରେ ପାଷାଣ[୧] ଗୁନ୍ଥି ଯେହ୍ନେ । ସୂତ୍ରେ ବସନ ଅନୁମାନେ ॥
ଏ ରୂପେ ଜଗତ ଗ୍ରନ୍ଥନ । ଅନ୍ତର ବାହ୍ୟେ ଭଗବାନ ॥୨୧

୧. ପାଷାଣ—ରତ୍ନ ମାଳିଦାନା ।

ଅନାଦି ଅରୂପ ପ୍ରତ୍ୟକ୍ଷ । ସଂସାର ରୂପ କଳ୍ପବୃକ୍ଷ ॥
କର୍ମ ଏହାର ମୂଳବୀଜ । ରସ ସଂଯୋଗେ ମହାତେଜ ॥
ବଢ଼ଇ ଫଳ ପୁଷ୍ପ ଘେନି । ବିଭୋଗ ଅପବର୍ଗ ବେନି ॥
ପୁଣ୍ୟ ପାତକ ରଜବୀର୍ଯ୍ୟେ । ବୃକ୍ଷ ଅଙ୍କୁରି ଉଠେ ତେଜେ ॥
ଅନନ୍ତ ବାସନାର ମୂଳେ । ଏ ବୃକ୍ଷ ସ୍ଥାପନା ନିଶ୍ଚଳେ ॥
ଏ ତିନି ନାଳ ତିନିଗୁଣେ । ବୃକ୍ଷର ନିର୍ମାଣ କାରଣେ ॥
ଏ ପଞ୍ଚସ୍କନ୍ଧ ପଞ୍ଚଭୂତେ । ପଞ୍ଚବିଷୟ ରସଯୁତେ ॥
ଶାଖା ସମୂହ ଇନ୍ଦ୍ରିଗଣେ । ଏ ନିତ୍ୟେ ଥାନ୍ତି ମାୟାବଣେ ॥
ଉପରେ ବେନି ପକ୍ଷୀ ନିତ୍ୟେ । ବସନ୍ତି ରକ୍ଷା ଭୋଗ ଅର୍ଥେ ॥
କହିଲି ବେନି ପକ୍ଷୀ ଯେହି । ଜୀବ ପରମ ନାମ ସେହି ॥
ବାତ ପିତ୍ତ ଯେ କଫ ଘେନି । ବୃକ୍ଷର ବଲ୍‌କଳ ଏ ତିନି ॥
ଯେ ସୁଖ ଦୁଃଖ ବେନି ଫଳେ । ପକ୍ଷୀଏ ଭୁଞ୍ଜଇ ତା ବଳେ ॥
ଲତା ବେଷ୍ଟିତେ ତରୁ କ୍ଷୀଣ । କଳ୍ପେ ପର୍ଯ୍ୟନ୍ତେ ତା ଜୀବନ ॥
ଯାବତ ଚନ୍ଦ୍ର ସୂର୍ଯ୍ୟ ଦିଶେ । ତାବତ ଏ ବୃକ୍ଷ ପ୍ରକାଶେ ॥୨୨
ଏକଇ ପକ୍ଷୀ ତାର ଫଳ । ଭୁଞ୍ଜଇ ନିତ୍ୟେ ମହାବଳ ॥
ସେ ଫଳ ଖାଇ ମତ୍ତଭୋଳେ । ନିରତେ ପଶେ ନାନାଘରେ ॥
ଯେ ଆର ପକ୍ଷୀ ଥାଇ ଭୋକେ । ସେ ସାକ୍ଷୀରୂପେ ସର୍ବ ଦେଖେ ॥
ବୃକ୍ଷର ଫଳ ଯେ ଭୁଞ୍ଜଇ । କିରାତ ଜାଲେ ସେ ପଡ଼ଇ ॥
ଏକଇ ବ୍ରହ୍ମ ନାନାରୂପେ । ଭ୍ରମଇ ମାୟାମୟ କଳ୍ପେ ॥
ସେ ଯେବେ ଜାଣେ ବେଦସାର । ସଂସାରେ ଭ୍ରମ କାହିଁ ତାର* ॥୨୩
ଏହା ତୁ ବୁଝି ହେ ଉଦ୍ଧବ । ଉତ୍ତମ ଗୁରୁପାଦେ ସେବ ॥

* ମୂଳ ସଂସ୍କୃତ ଶ୍ଳୋକାନୁସାରେ ସଂସାରବୃକ୍ଷରେ ଗୋଟିଏ ସୁଖଫଳ ଓ ଗୋଟିଏ ଦୁଃଖଫଳ ଫଳେ । ଦୁଃଖଫଳକୁ ଗୃଧ୍ରତୁଲ୍ୟ ବିଷୟାସକ୍ତମାନେ ଖାଆନ୍ତି । କିନ୍ତୁ ସୁଖଫଳକୁ ହଂସତୁଲ୍ୟ ବିବେକବାନ୍ ବିଷୟବିରାଗୀ ସନ୍ନ୍ୟାସୀମାନେ ଖାଆନ୍ତି । ଏହି ବୈରାଗୀମାନେ ଗ୍ରାମ୍ୟସୁଖ ଛାଡ଼ି ମୋକ୍ଷସୁଖ ଭୁଞ୍ଜନ୍ତି ।

ଭକ୍ତି କୁଠାରେ ଦୁର୍ବାସନା । ଛେଦ ତୁ ଗୁରୁବାକ୍ୟେ ସିନା ॥
ଆମ୍ଭାକୁ ଜାଣି ସାବଧାନେ । ଗୁରୁବଚନ ଅନୁମାନେ ॥
ସାଧନକର୍ମ ଛାଡ଼ି ଚିତ୍ତେ । ଭଜ ତୁ ମୋର ପାଦଗତେ ॥୨୪
କହଇ ବିପ୍ର ଜଗନ୍ନାଥ । ଶ୍ରୀ ଏକାଦଶେ ଭାଗବତ ॥
ଜୀବର ଗତି ଅନୁଭବ । ଉଦ୍ଧବେ କହିଲେ ମାଧବ ॥
ଏ ବ୍ରହ୍ମ-ପ୍ରେମ-ତରଙ୍ଗିଣୀ । ସୁଜନେ ତର ଏହା ଶୁଣି ॥

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଏକାଦଶସ୍କନ୍ଧେ ଭଗବଦୁଦ୍ଧବସଂବାଦେ ସାଧୁସଙ୍ଗଫଳାଦିବର୍ଣ୍ଣନଂ ନାମ ତ୍ରୟୋଦଶୋଽଧ୍ୟାୟଃ ।

❒❒❒

## ଚତୁର୍ଦ୍ଦଶ ଅଧ୍ୟାୟ*

ବଢ଼ଇ ଯେବେ ସତ୍ତ୍ୱଗୁଣ । ତହୁଁ ଉଦୟ ହୁଏ ଜ୍ଞାନ ॥
ଏ କଥା ହଂସ ଇତିହାସେ । ବର୍ଣ୍ଣିତ ଅଧ୍ୟା ଚତୁର୍ଦ୍ଦଶେ ॥

*ଶ୍ରୀ ଭଗବାନୁବାଚ*

କହନ୍ତି ପ୍ରଭୁ ଦାମୋଦର । ଶୁଣ ଉଦ୍ଧବ ଜ୍ଞାନସାର ॥
ମୁଁ ଯେ ବୋଇଲି ମୋତେ ଭଜ । ସଂସାରେ ସର୍ବକର୍ମ ତେଜ ॥
ତାର ପ୍ରସ୍ତାବ ଏବେ ଶୁଣ । ଯେଣେ ଜିଣିବୁ ତିନିଗୁଣ ॥
ତମ ସାତ୍ତ୍ୱିକ ରଜୋଗୁଣ । ଏ ଭାବେ ପ୍ରକୃତି ପ୍ରମାଣ ॥
ଈଶ୍ୱର ନିତ୍ୟ ନିରଞ୍ଜନ । ନିର୍ଗୁଣ ସତ୍ୟ ସନାତନ ॥
ଏଣେ ତାହାର ନାହିଁ ଭେଦ[୧] । ଶୁଣ କହିବା ତତ୍ତ୍ୱବୋଧ ॥
ଭକତି ଲକ୍ଷଣ ଶୟଳେ । ସାଧିବ ଯେଉଁ ଗୁଣବଳେ ॥

୧. ଭେଦ—ସମ୍ବନ୍ଧ ।

* ମୂଳ ସଂସ୍କୃତ ଅନୁସାରେ ତ୍ରୟୋଦଶ ଅଧ୍ୟାୟ ।

ସତ୍ତ୍ୱକୁ କରି ତୀକ୍ଷ୍ଣବାଣ । ଜିଣିବ ରଜ ତମ ଗୁଣ ॥
ନିର୍ମଳ ଚିତ୍ତ ହୃଦେ ଧରି । ଯେବେ ସୁଜନେ ସେବା କରି ॥
ଏ ଭାବେ ଜିଣି ସତ୍ତ୍ୱଗୁଣ । କ୍ରମେ ନାଶିବ ତିନିଗୁଣ ॥
ତେବେ ଅଧର୍ମ କ୍ଷୟ ଯାଇ । ସାତ୍ତ୍ୱିକେ ଧର୍ମ ପ୍ରକାଶଇ ॥୧-୩
ଜନ୍ମ ଉଦକ କାଳ କର୍ମ । ଆଗମଶାସ୍ତ୍ର ପ୍ରଜାଜନ ॥
ନିଶ୍ଚଳ ଧ୍ୟାନ ମନ୍ତ୍ର ଦେଶ । ସଂସ୍କାର ଘେନି ଏ ଯେ ଦଶ ॥ ୪
ଏ ଆଦି ଯେତେ ବସ୍ତୁ ଜାତ । ଜାଣ ତୁ ତ୍ରିଗୁଣେ ଜଡ଼ିତ ॥
ସାତ୍ତ୍ୱିକଭାବେ ତାହା ସାଧି । ସାଧୁ ପଣ୍ଡିତ ଶୁଦ୍ଧବୁଦ୍ଧି ॥
ରଜ ତାମସ ଗୁଣ ଦୁଇ । ଗୁରୁବଚନେ ଦୂରେ ଥୋଇ ॥
ତେବେ ସାତ୍ତ୍ୱିକମୟ ଜ୍ଞାନ । ନିକଟେ ହୋଏ ଉତପନ୍ନ ॥
କେବଳ ପରମାର୍ଥ ଶାସ୍ତ୍ର । ଅଭ୍ୟାସ କରୁଥିବ ନିତ୍ୟ ॥
ତର୍କ ପାଷଣ୍ଡ ଶାସ୍ତ୍ର ଯେତେ । ଅଭ୍ୟାସ ନ କରିବ ଚିତ୍ତେ ॥
ସୁଗନ୍ଧ ସୁଶୀତଳ ବାରି । ସୁଦୂରେ ସ୍ନାନ ପରିହରି ॥
ସାତ୍ତ୍ୱିକମୟ ତୀର୍ଥ ଜଳେ । ସ୍ନାନ କରିବ ସାଧୁମେଳେ ॥
ନିରତେ ଥାଇ ଶୁଦ୍ଧଚିତ୍ତେ । ତମ ରାଜସ ଜନ ଯେତେ ॥
ତାହାଙ୍କୁ ନ କରିବ ସଙ୍ଗ । ସମୁଦ୍ରେ ଯେସନେ ତରଙ୍ଗ ॥
ପବନ ବଳେ ଜନ୍ମ ହୋଇ । ନିର୍ମଳ ରୂପ ନ ଦିଶଇ ॥
ଏଣୁ ଅସାଧୁ ସଙ୍ଗ ତେଜି । ନିତ୍ୟେ ସାଧୁଙ୍କ ସଙ୍ଗ ଭଜି ॥
ଯେ ପ୍ରାଣୀ ଦ୍ୟୂତକ୍ରୀଡ଼ା ରତ । ଅସାଧୁ ସଙ୍ଗ ଅବିରତ ॥
କେବେହେଁ ନ କରିବ ମେଳ । ନିଶ୍ଚିନ୍ତେ ରହିବ ନିରୋଳ ॥ ୫
ସାତ୍ତ୍ୱିକମୟ ପୁଣ୍ୟଦେଶେ । ନିବାସ କରିବ ବିଶ୍ୱାସେ ॥
ପୁଣ୍ୟ କରିବ ପୁଣ୍ୟକାଳେ । କାମନା ନ କରିବ ଫଳେ ॥
ସାତ୍ତ୍ୱିକ ବିନା କର୍ମ ଯେତେ । କେବେହେଁ ନ କଳ୍ପିବ ଚିତ୍ତେ ॥
ସାତ୍ତ୍ୱିକ କର୍ମମାତ୍ର କରି । ରଜ ତାମସ ପରିହରି ॥
ଅପରେ ଯେତେ କାମ୍ୟକର୍ମ । ତେଣେ ନୋହିବ ମତିଭ୍ରମ ॥

ବୈଷ୍ଣବଦୀକ୍ଷା ଶିବମତ । କରିବ ହୋଇ ଶୁଦ୍ଧଚିତ୍ତ ॥
ଶାକ୍ତିକ ଆଦି କ୍ଷୁଦ୍ରଦୀକ୍ଷା । କେବେହେଁ ନ କରିବ ଶିକ୍ଷା ॥
ସାତ୍ତ୍ୱିକେ ବିଷ୍ଣୁଧ୍ୟାନ କରି । ଗୃହ ସଂସାର ନ ସୁମରି ॥
ବିଷ୍ଣୁର ମନ୍ତ୍ର ଉପଦେଶେ । ସାତ୍ତ୍ୱିକଜନର ବିଶ୍ୱାସେ ॥
କେବଳ ସାତ୍ତ୍ୱିକ ସଂସ୍କାରେ । ଚିତ୍ତ ସାଧିବ ନିରନ୍ତରେ ॥
ଶରୀର କର୍ମମାତ୍ର ଯେତେ । ବାହ୍ୟେ କରିବ ଲୋକମତେ ॥
ଏ ଦଶବିଧି ବସ୍ତୁଜାତ । ଜାଣ ତୁ ତ୍ରିଗୁଣେ ଜଡ଼ିତ ॥
ଏଣୁ ପଣ୍ଡିତ ଜନ ଯେତେ । କର୍ମ ସାଧିବ ସତ୍ତ୍ୱମତେ ॥
ଯାବତ ନାହିଁ ଆତ୍ମଜ୍ଞାନ । ତାବତ କର୍ମେ ଥିବ ମନ ॥
ସାତ୍ତ୍ୱିକ ସେବା ତତପରେ । ସତ୍ତ୍ୱ ବଢ଼ଇ ନିରନ୍ତରେ ॥
ତେଣେ ବିଶୁଦ୍ଧ ହୋଏ ମନ । ନିର୍ମଳ ପ୍ରକାଶଇ ଜ୍ଞାନ ॥ ୬
ଯେସନେ ବନେ ବାଂଶ ବାଂଶେ । ଅନଳ ଉପୁଜେ ଘରଷେ ॥
ସେ ବନ ଦହେ ତେଜବଳେ । ପୁଣି ସେ ଲିଭଇ ନିଶ୍ଚଳେ ॥
ଏ ରୂପେ ଗୁଣମୟ ଦେହ । ଦହି ସାତ୍ତ୍ୱିକଭାବେ ରହ ॥
ବିଷ୍ଣୁ ସ୍ମରଣେ ଚିତ୍ତ ବଢ଼ି । ଭଜ ତୁ ସର୍ବଧର୍ମ ଏଡ଼ି ॥ ୭
ଏମନ୍ତ ଶୁଣି କୃଷ୍ଣବାଣୀ । ଉଦ୍ଧବ ଯୋଡ଼ି ବେନିପାଣି ॥
ବୋଲଇ ପାଇ ମନେ ଖେଦ । ଭୋ ନାଥ ଶୁଣିମା ଗୋବିନ୍ଦ ॥(ଜ.)

*ଉଦ୍ଧବ ଉବାଚ*

ବିଷୟ ଆପଦର ସ୍ଥାନ । ଭଲେ ଜାଣନ୍ତି ସର୍ବଜନ ॥
ସକଳ ଶାସ୍ତ୍ର ମୁଖୁଁ ଶୁଣି । ଗୁରୁ ବଚନ ପରିମାଣି ॥
ଦୁର୍ଜୟ ଲାଳସା ବିଷୟେ । ପୁଣି ଭୁଞ୍ଜନ୍ତି କିମ୍ପା କହ ॥
ଯେସନେ କରନ୍ତେ ଭର୍ତ୍ସନ । ଉଚ୍ଛିଷ୍ଟ ନ ଛାଡ଼ଇ ଶ୍ୱାନ ॥
ଯେହ୍ନେ ଗଧୁଣୀ ପାଦ ଦୁଇ । ଗଧକୁ ପ୍ରହାର କରଇ ॥
ଗଧ ଅଜ୍ଞାନ ଭାବ ଦେଖେ । ପୁଣି ହିଁ ଧାମଇଁ ତା ପାଖେ ॥

ଯେସନେ ଅତିହିଁ ନିର୍ଲଜ୍ଜ । ପ୍ରାଣ ବିନାଶଠାରେ ଅଜ[୧] ॥
ପୂଜାର ବେଲପତ୍ରିମାନ । ଖାଉ ଯେ ଥାଇ ପୁଣ ପୁଣ ॥
ଏଣୁ ସଂଶୟ ଚିତ୍ତ ମୋର । ଶୁଣି କହନ୍ତି ଦାମୋଦର ॥ ୮

ଶ୍ରୀ ଭଗବାନୁବାଚ

ଏ ଜୀବ ବହେ ଅହଙ୍କାର । ବୋଲଇ ଏ ଦେହ ମୋହର ॥
ରଜୋଗୁଣରୁ ଏ ପ୍ରକାଶ । ହୁଅନ୍ତେ ବୁଦ୍ଧି କରେ ଭ୍ରଂଶ ॥
ସଙ୍କଳ୍ପ ବିକଳ୍ପ ଏ ବେନି । ନାନା ବିକାର ମନେ ଘେନି ॥
ବେନି ସଂଯୋଗେ ମୋହ ଜଡ଼େ । ନାନା ପ୍ରକାରେ କାମ ବଢ଼େ ॥୯,୧୦
କୁମତିଜନଙ୍କର ମନେ । ପ୍ରକାଶେ ନାନା କୁସାଧନେ ॥
ନିରତେ କାମବଶ ହୋଇ । କର୍ମ କରନ୍ତି ମୋହ ବହି ॥
କେବଳ ଦୁଃଖ ମାତ୍ର ସାର । ଏ କଥା ନ ବୁଝେ ପାମର ॥
ମିଥ୍ୟାଭିଳାଷେ ମନଗ୍ରସ୍ତ । ରାଜସ ଗୁଣେ ବିମୋହିତ ॥୧୧
ମୁଖେ ଉପମା କେତେ ଦେବା । ଯେଣେ ଭ୍ରମନ୍ତି ସୁରଦେବା ॥
ଏକଥା ବୁଝି ସାଧୁଜନେ । ମନ କରନ୍ତି ସଂଯମନେ ॥
ବିଷୟ ସଙ୍ଗ ଦୁଃଖରାଶି । ଏଣେ ନୁହନ୍ତି ଚିତ୍ତଗ୍ରାସି ॥
ସାତ୍ତ୍ୱିକେ ମୋର ପାଦେ ସେବେ । ଏ କଥା ବୁଝନ୍ତି ସାଧବେ ॥୧୨
କ୍ରମେ ଅଭ୍ୟାସି ସତ୍ତ୍ୱଗୁଣ । ସମର୍ପି ମୋ ଚରଣେ ମନ ॥
ସାତ୍ତ୍ୱିକଗୁଣେ ମନ ଧରି । ସାଧିବ ଅଳ୍ପ ଅଳ୍ପ କରି ॥
ଅଭ୍ୟାସେ ନବଦ୍ୱାର ରୁନ୍ଧି । ମନ ପବନ ହୃଦେ ଛନ୍ଦି ॥
ଆହାର ଜିଣିବ ଆସନେ । ମନ ନିବେଶି ମୋର ଧ୍ୟାନେ ॥
ସର୍ବ ବିଷୟରସୁଁ ମନ । ଅଭ୍ୟାସେ କରିବ ବନ୍ଧନ ॥
ଆନନ୍ଦ ରଜ୍ଜୁ ଦେଇ ଗଳେ । ବାନ୍ଧିବ ମୋ ପାଦକମଳେ ॥୧୩
ପୂର୍ବେ ଏ ଯୋଗ ଅଭ୍ୟାସନେ । ମୁହିଁ କହିଲି ଶିଷ୍ୟଗଣେ ॥

---

୧. ଅଜ—ଛେଳି ।

ସନକ ଆଦି ଚ୍ରିଜଣ । ବିଶେଷେ ବ୍ରହ୍ମାଙ୍କ ନନ୍ଦନ ॥
ସେ ମୋର ତହୁଁ ଶୁଣି ଏହା । ପରମଯୋଗରେ ସେନେହା ॥୧୪
ଏମନ୍ତେ କୃଷ୍ଣବାକ୍ୟ ଶୁଣି । ଉଦ୍ଧବ ବୋଲେ ମନେ ଗୁଣି ॥(ଜ.)

*ଉଦ୍ଧବ ଉବାଚ*

ଭୋ ନାଥ ପ୍ରଭୁ ଭଗବାନ । ଏଣେ ସଂଶୟ ମୋର ମନ ॥
କେବଣ କାଳେ କେଉଁଠାବେ । ବ୍ରହ୍ମାର ପୁତ୍ରଙ୍କ ପ୍ରସ୍ତାବେ ॥
କି ରୂପେ ଧରି ତୁ ଶରୀର । ଯୋଗ କହିଲୁ ଦାମୋଦର ॥
ତୋହର ଦୟା ଯେବେ ମୋତେ । ସେ ଯୋଗ କହ ମୋ ଅଗ୍ରତେ ॥୧୫
ଏମନ୍ତ ଉଦ୍ଧବ ବଚନ । ଶୁଣି କହନ୍ତି ଭଗବାନ ॥(ଜ.)

*ଶ୍ରୀ ଭଗବାନୁବାଚ*

ଶୁଣ ଉଦ୍ଧବ ସାଧୁ ଧୀର । ସେ ଚ୍ରି ବ୍ରହ୍ମାଙ୍କ କୁମର ॥
ବ୍ରହ୍ମାଙ୍କ ପାଦେ ହସ୍ତ ଦେଇ । ଯୋଗ ପୁଚ୍ଛିଲେ ଚ୍ରିଭାଇ ॥୧୬
ବୋଇଲେ ଶୁଣ ବେଦବର । ଦୁସ୍ତର ଏ ଭବସାଗର ॥
ପ୍ରାଣୀ ଅଛନ୍ତି ଏଥେ ମଜ୍ଜି । ବିଷ୍ଣୁମାୟାକୁ ସତ୍ୟ ବୁଝି ॥
ସ୍ଥାବର ଆଦି ଜନ୍ତୁ ଯେତେ । ଏ ମାୟା ତରିବେ କେମନ୍ତେ ॥
ପ୍ରାଣୀଙ୍କ ମନ ମାୟାସଙ୍ଗେ । ନାନା ପ୍ରପଞ୍ଚ ସଞ୍ଚେ ରଙ୍ଗେ ॥
ଲାଳସା ବିଷୟ ଗୋଚରେ । ଚିତ୍ତ ନିବେଶି ନିରନ୍ତରେ ॥
ଏଣୁ ବିଷୟ ଚିତ୍ତ ମଧ୍ୟେ । ପ୍ରବେଶ କରେ ଅନୁବାଦେ ॥
ଅନ୍ୟୋନ୍ୟେ ସଙ୍ଗେ ଚିତ୍ତ ଜଡ଼େ । କେବେହେଁ ସଙ୍ଗ ତା ନ ଛାଡ଼େ ॥
ସେ ସଙ୍ଗ ତୁଟଇ କେମନ୍ତେ । କହ ପ୍ରସନ୍ନେ ତାତ ମୋତେ ॥
କି ରୂପେ ତାରଣ ଉପାୟେ । ଭୋ ତାତ ପୁଚ୍ଛୁଁ ତୋର ପାୟେ ॥୧୭
ପୁତ୍ରଙ୍କ ବାକ୍ୟ ଶୁଣି କର୍ଣ୍ଣେ । ବିଧାତା ବେଦ ଅନୁମାନେ ॥
ଚିନ୍ତି ନ ପାରି ଦୁଃଖମନେ । ବସିଲା ନିଶ୍ଚଳ ଆସନେ ॥
ସମାଧି କରି ଚିତ୍ତେ ମୋତେ । ସଂଶୟ ଜାଣିବା ନିମନ୍ତେ ॥
ବ୍ରହ୍ମାର ଧ୍ୟାନବଳେ ମୁହିଁ । ମିଳିଲି ହଂସରୂପ ହୋଇ ॥୧୮,୧୯

ବ୍ରହ୍ମାଙ୍କୁ ଦେଖାଦେଲି ତହିଁ । ତକ୍ଷଣେ ମୋର ରୂପ ଗ୍ରହି ॥
ବେଗେ ବ୍ରହ୍ମାର ପୁତ୍ରଗଣେ । ନମିଲେ ମୋହର ଚରଣେ ॥
ତକ୍ଷଣେ କରି ଅବଧାନେ । ମୋତେ ପୁଚ୍ଛିଲେ ବିଦ୍ୟମାନେ ॥
ଭୋ ହଂସ କାହିଁ ତୋର ଗ୍ରାମ । କେ ତୁମ୍ଭେ କିବା ତୁମ୍ଭ ନାମ ॥
କିବା କାରଣେ କିବା ଅର୍ଥେ । ଏଥେ ମିଳିଲ ଶୂନ୍ୟପଥେ ॥
ନିଶ୍ଚେ ଜାଣିବା ଅର୍ଥେ ମୋତେ । ପୁଚ୍ଛିଲେ ବ୍ରହ୍ମା ଗ୍ରରି ପୁତ୍ରେ ॥
ତାହାଙ୍କ ପ୍ରଶ୍ନ ମୁହିଁ ଶୁଣି । ଯାହା କହିଲି ପରିମାଣି ॥
ଶୁଣ କହିବି ତୋର ଆଗେ । ଆତ୍ମା ପ୍ରସନ୍ନ ଅନୁରାଗେ ॥୨୦,୨୧
ବସ୍ତୁ ବିଗ୍ରରେ ଆତ୍ମା ଏକ । ଯେବେ ବା ନୁହଇ ଅନେକ ॥
ତୁମର ପ୍ରଶ୍ନ ଏ ପ୍ରସ୍ତାବେ । କେମନ୍ତେ ଘଟିବ ଏ ଭାବେ ॥
କାହାକୁ ମୁଁ ଆଶ୍ରେ କରିଣ । ଉତ୍ତର ଦେବି ବିପ୍ରଗଣ ॥୨୨
ସର୍ବଶରୀର ପଞ୍ଚଭୂତେ । ରଚିତ ଏ ମାୟା ଜଗତେ ॥
ସକଳ ଦେହେ ଏକ ଧର୍ମ । ସକଳ ଦେହେ ଏକ ବ୍ରହ୍ମ ॥
କେ ବୋଲି ପଗ୍ରରିଲ ମୋତେ । ଏ ପ୍ରଶ୍ନ ଘଟିବ କେମନ୍ତେ ॥୨୩
ହୃଦୟେ ଯାହା ପରିମାଣି । ଯେ କିଛି ଶୁଣି ମୁଖେ ଭଣି ॥
ଇନ୍ଦ୍ରି ଗୋଚର ମନ ବୁଦ୍ଧି । ଯେ ଭୋଗ ବିଷୟ ପ୍ରସିଦ୍ଧି ॥
ଏ ସର୍ବ ଅଟଇ ମୁହିଁ ତ । ମୋ ବିନୁ କିଛି ନୋହେ ସତ୍ୟ ॥
ମୁଁ ସର୍ବ ବିଷୟ ଗୋଚର । ମୋ ତହୁଁ ଆତ୍ମା ନୋହେ ପର ॥୨୪
ଜୀବ ସ୍ୱରୂପେ ସର୍ବଦେହେ । ମୁଁ ଥାଇ ସକଳ ବିଷୟେ ॥
ବିଷୟରସେ ଚିତ୍ତ ପଶେ । ଏଣୁ ଇନ୍ଦ୍ରିୟ ରସେ ରସେ ॥
ଏ ଦେହ ମାତ୍ର ଚିତ୍ରଗତି । ବିଷୟେ ବାସନା ସମ୍ଭୂତି ॥୨୫
ଦୁର୍ଜୟ ବିଷୟ ବାସନା । କେ ତାହା ଖଣ୍ଡିପାରେ କିନା ॥
ବିଷୟ ସେବନେ ନିରତେ । ଚିତ୍ତ ମଜ୍ଜଇ ଦୃଢ଼ବ୍ରତେ ॥
ବିଷୟ ଧ୍ୟାନେ ଚିତ୍ତ ଜଡ଼େ । ତ୍ରିଗୁଣ ମାୟା ନିତ୍ୟେ ବଡ଼େ ॥
ଏଣୁ ଯେ ମୋହର ଚରଣେ । ଆଶ୍ରେ କରଇ ଦାସପଣେ ॥
ସେ ପ୍ରାଣୀ ବେନି ପରିହରେ । ବିଷୟ ବାସନା ନ ସ୍ମରେ ॥୨୬

ଜାଗ୍ରତ ସ୍ୱପନ ସୁଷୁପ୍ତି । ଗୁଣହୁଁ ତିନି ବୁଦ୍ଧି ବୃତ୍ତି ॥
ସର୍ବଶରୀରେ ସାକ୍ଷୀରୂପେ । ଏ ଜୀବ ବସଇ ପ୍ରତ୍ୟକ୍ଷେ ॥୨୭
ଅନାଦି ଅବିଦ୍ୟାରେ ବନ୍ଧୀ । କର୍ମ ବାସନା ବଳେ ଛନ୍ଦି ॥
ସତ୍ତ୍ୱାଦି ହେତୁ ତିନିଗୁଣ । ଏ ମାୟା ଦେହର କାରଣ ॥
ଏମନ୍ତ ଜାଣଇ ସେ ଯେବେ । ତ୍ରିଗୁଣ ବାହାର ସେ ତେବେ ॥
ଏଣୁ ନିର୍ଗୁଣ ଆତ୍ମା କରେ । ସକଳ ଜନ୍ମ ପାପ ହରେ ॥
ମୋର ଚରଣେ ଚିତ୍ତ ବଳେ । ନିବେଶି ସମାଧି ନିଶ୍ଚଳେ ॥
ସହଜ ଚିତ୍ତ ଦୃଢ଼ କରେ । ବିଷୟରସ ନ ସୁମରେ ॥୨୮
ବିଅର୍ଥ ଅହଙ୍କାରେ ମନ । ଜୀବର ସଂସାର ବନ୍ଧନ ॥
ମାୟାସଂସାର ଘୋର ବନେ । ଏ ଜୀବ ଭ୍ରମେ ଅକାରଣେ ॥
ଏଣୁ ପଣ୍ଡିତ ସାଧୁଜନ । ମୋ ଦେହେ ଦେଇ ବୁଦ୍ଧି ମନ ॥
ସଂସାର ଚିନ୍ତା ଦୂର କରେ । ଚିତ୍ତେ ମୋ ଚରଣ ସୁମରେ ॥୨୯
ଯାବତ ନାନା ଭ୍ରମ ଚିତ୍ତେ । ଏ ଜୀବ ବହଇ ନିରତେ ॥
ତାବତ ଘୋର ଦୁଃଖେ ମନ । ଜାଣି ନ ଜାଣେ ମୂଢ଼ଜନ ॥
ଜ୍ଞାନ ଅଜ୍ଞାନ ମାର୍ଗ ଦୁଇ । ସ୍ୱପ୍ନ ଦୃଷ୍ଟାନ୍ତେ କହିବଇଁ ॥
ଯେସନେ ସ୍ୱପ୍ନେ ନାନା ଅର୍ଥ । ନିଦ୍ରାରେ ମଣେ ତାହା ସତ୍ୟ ॥
ସେ ପୁଣି ନିଦ୍ରା ଅବସାନେ । ସକଳ ମିଥ୍ୟା କରି ମଣେ ॥
ସେ ରୂପେ ଦେହ-ଧର୍ମ ଯେତେ । ବର୍ଣ୍ଣ ଆଶ୍ରମ ଅନୁମତେ ॥
କର୍ମେ ସ୍ୱର୍ଗାଦି ଫଳ ପାଇ । ଏ ସର୍ବ ସତ୍ୟ ନୋହେ କେହି ॥୩୦,୩୧
ଯେ ପ୍ରାଣୀ ସ୍ଥୂଳ ଦେହଗତେ । ଇନ୍ଦ୍ରିୟ ଭୋଗେ ନାନାମତେ ॥
କରଇ ଅନୁକ୍ଷଣେ ପ୍ରୀତି । ଜାଗ୍ରତେ ସ୍ୱପ୍ନେ ତା ଭୁଞ୍ଜନ୍ତି ॥
ଆତ୍ମା ସମ୍ବନ୍ଧ ନାହିଁ ତେଣେ । ଏ ସର୍ବ ଉପାଧି ତ୍ରିଗୁଣେ ॥୩୨
ଏମନ୍ତ ଅନୁମାନି ଚିତ୍ତେ । ସହଜ ସୁଖ ଦୁଃଖ ପଥେ ॥
ତେଜିଣ ହରଷ ବିଷାଦେ । ସଂସାର ବାସନା ପ୍ରମାଦେ ॥
ଅଧର୍ମ ଧର୍ମ କୂଟବୁଦ୍ଧି । ଏମାନ କାଟିବ ସୁବୁଦ୍ଧି ॥

ସାଧୁଙ୍କ ମୁଖାମୃତ ବାଣୀ । ଜ୍ଞାନ ଖଡ଼ଗ କରେ ଘେନି ॥
ଗୁରୁବଚନ ଅନୁରାଗେ । ଚିତ୍ତ ବଡ଼ିମା କାଟ ବେଗେ ॥
ମନୁ ସଂଶୟ ବେଗେ ତେଜ । କେବଳ ମୋର ପାଦେ ଭଜ ॥୩୩
ମନ ବିଳାସ ଏ ଜଗତ । ଗଗନେ ବିଜୁଳି ଯେମନ୍ତ ॥
ଅତି ଚଞ୍ଚଳ ଅତି ଲୋଳ । ଯେସନେ ପ୍ରକାଶେ ଅନଳ ॥
ଏକ ଏ ବହୁ ଜ୍ଞାନ ହୋଏ । ପ୍ରକାଶେ ବହୁରୂପ ପ୍ରାୟେ ॥
ଅନିତ୍ୟ ସଂସାର ଗହନ । ଏମନ୍ତ ଚିତ୍ତେ ଅନୁମାନ ॥୩୪
ତୁମ୍ଭେ ଯେ ବୋଲ ସର୍ବଦେହେ । ଏ ଭେଦଦୃଷ୍ଟି ସର୍ବଠାଏ ॥
ଏ ଦୃଷ୍ଟି ନିବର୍ତ୍ତିଇ ଯେବେ । ଆତ୍ମା ପ୍ରକାଶ ହୋଏ ତେବେ ॥
ଆତ୍ମାର ସୁଖ ପୂର୍ଣ୍ଣ କରେ । ଅନନ୍ତ ବାସନାରୁ ତରେ ॥
ସକଳ ଚେଷ୍ଟା ପରିହରେ । ଆନନ୍ଦ ସାଗରେ ବିହରେ ॥୩୫
ଭକତିରସ ମଦେ ଲୀନ । ଜଗତେ ସିଦ୍ଧ ଯୋଗୀଜନ ॥
କେବଳ ନିଜ ଦେହ ଚିନ୍ତି । ଅଛି କି ନାହିଁ ନ ଜାଣନ୍ତି ॥
ମଦ୍ୟପ ଯେହ୍ନେ ମଦ୍ୟ ଖାଇ । ସତ ଅସତ ନ ଜାଣଇ ॥
କେବଳ ସୁଖ ମଦ୍ୟପାନେ । ଆନନ୍ଦେ ଘୂର୍ମିତ ଲୋଚନେ ॥
ଅଛି କି ନାହିଁ ନିଜ ଦେହୀ । ଉଭୟ ମତ ନ ଜାଣଇ ॥
ଜ୍ଞାନୀ ଏମନ୍ତ ରସେ ରସେ । ସୁଖ ସମୁଦ୍ରେ ନିତ୍ୟେ ଭାସେ ॥୩୬
ଅଦୃଷ୍ଟବଶ ଏ ଶରୀର । ଯାବତ କର୍ମର ବେଭାର ॥
ଏ ଭାବ ଦେଖି ସିଦ୍ଧଜନେ । ଆଦର ନ କରନ୍ତି ମନେ ॥
ସ୍ୱପନ ଅନୁଭବ ମତ । ମଣଇ ଜ୍ଞାନୀ ଯୋଗୀ ଚିତ୍ତ ॥୩୭
ଶୁଣ ହେ ସନକାଦି ଜନେ । ତୁମ୍ଭେ ଯେ ବ୍ରହ୍ମାଙ୍କ ନନ୍ଦନେ ॥
ପରମ ସାଂଖ୍ୟଯୋଗ ମାର୍ଗେ । ଭାବେ କହିଲି ତୁମ୍ଭ ଆଗେ ॥
ସର୍ବ ଆଶ୍ରୟ ଯେଣୁ ମୁହିଁ । ଯଜ୍ଞେ ସକଳ ହବି ଖାଇ ॥
ଏଣୁ ମୁଁ ସର୍ବଯଜ୍ଞପତି । ମୁଁ ସାଂଖ୍ୟ ରତ ସତ୍ୟକୀର୍ତ୍ତି ॥
ଏ ଧର୍ମ ପ୍ରକାଶ କାରଣେ । ମିଳିଲି ତୁମ୍ଭ ସନ୍ନିଧାନେ ॥

ଯେଣୁ ମୁଁ ପରମ ଆଶ୍ରୟ । ସର୍ବ ଜଗତ ମୋର ଦେହ ॥
ସମସ୍ତ ଗତି ପତି ସାର । ମୁଁ ଜୀବ ଆତ୍ମାର ଗୋଚର ॥୩୮,୩୯
ତମ ରାଜସ ସତ୍ତ୍ୱ ଗୁଣ । ମୋହର କିଙ୍କର ପ୍ରମାଣ ॥
ସକଳ ଶରୀରେ ମୁଁ ପୂରି । ମୁଁ ବନ୍ଧୁପ୍ରିୟ ଅଧିକାରୀ ॥
ଅନନ୍ତଶକ୍ତି ମୁଁ କାରଣ । ମୁଁ ନିରପେକ୍ଷ ମୁଁ ନିର୍ଗୁଣ ॥
ଅଣିମା ଆଦି ନିଧି ମୋର । ଏଣୁ ମୁଁ ବୋଲାଇ ଈଶ୍ୱର ॥
ସମସ୍ତ ମୋହର କିଙ୍କର । ଏଣୁ ମୋ ନାହିଁ ନିଜ ପର ॥
ତୁମ୍ଭେ ଯେ ବ୍ରହ୍ମା ଗ୍ୱରିସୁତ । ଏଣୁ ମୁଁ ଜାଣି ତୁମ୍ଭ ଚିତ୍ତ ॥
ବ୍ରହ୍ମାର ଧ୍ୟାନ ବଳୁଁ ମୁହିଁ । ମିଳିଲି ହଂସରୂପ ହୋଇ ॥
ପରମଯୋଗ ତୁମ୍ଭ ଆଗେ । ମୁହିଁ କହିଲି ଅନୁରାଗେ ॥
ଏ ଯୋଗ ଚିତ୍ତେ ସୁଖେ ଧର । ସଂସାର ପର୍ଯ୍ୟଟନ କର ॥୪୦
ଏମନ୍ତେ ପ୍ରଭୁ ବାସୁଦେବ । ବୋଲନ୍ତି ଶୁଣ ହେ ଉଦ୍ଧବ ॥
ବ୍ରହ୍ମାର ପୁତ୍ର ଗ୍ୱରିଜଣ । ଏମନ୍ତେ ଶୁଣି ମୋ ବଚନ ॥
ସର୍ବ ସଂଶୟ କଲେ ଦୂର । ଆନନ୍ଦେ ଧରି ମୋ ପୟର ॥
ସ୍ତୁତି ବଚନ ଅନୁବାଦେ । ଭାବେ ପୂଜିଲେ ମୋର ପାଦେ ॥
ବ୍ରହ୍ମାଙ୍କୁ କରି ଅବଧାନ । ମୁଁ ତହୁଁ ହେଲି ଅନ୍ତର୍ଦ୍ଧାନ ॥୪୧,୪୨
ଏମନ୍ତ କହନ୍ତେ ଅଚ୍ୟୁତ । ଉଦ୍ଧବ ହୋଇ କୃତକୃତ୍ୟ ॥
ଆନନ୍ଦେ କୃଷ୍ଣପାଦ ଧରି । ରୋମପୁଲକ ତନୁ କରି ॥
ଶୁଣି ସାନନ୍ଦ ବ୍ରହ୍ମରସ । କହଇ ଜଗନ୍ନାଥ ଦାସ ॥

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ଏକାଦଶସ୍କନ୍ଧେ ଭଗବଦୁଦ୍ଧବସଂବାଦେ ହଂସେତିହାସବର୍ଣ୍ଣନଂ
ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।

❒❒❒

# ପଞ୍ଚଦଶ ଅଧ୍ୟାୟ*

| ପରମ ଶ୍ରେୟ ଭକ୍ତିଯୋଗ । ତାର ଉପାୟ ଧ୍ୟାନଯୋଗ ॥
| ଯେମନ୍ତେ କରିବାକୁ ହୋଏ । ବର୍ଣ୍ଣନ ପଞ୍ଚଦଶାଧ୍ୟାୟେ ॥

କୃଷ୍ଣଚରଣ ଧରି କରେ । ଉଦ୍ଧବ ବୋଲଇ ସଧୀରେ ॥(ଜ.)

*ଉଦ୍ଧବ ଉବାଚ*

ଭୋ ନାଥ କମଳ ଲୋଚନ । ଶୁଣି ମୁଁ ତୋହର ବଚନ ॥
ସଂଶୟ କରି ହୃଦଗତେ । ଏବେ ମୁଁ ପଗ୍ଚରଇ ତୋତେ ॥
ଭକ୍ତି ଲକ୍ଷଣ ଧର୍ମ ଯେତେ । ତୁମ୍ଭେ କହିଲ ସର୍ବ ମୋତେ ॥
ଯେତେ ପ୍ରକାରେ ତାହା ସାଧି । ଭକ୍ତି ଲକ୍ଷଣ ନାନାବିଧି ॥
ଜଗତେ ବିପ୍ରେ ଛନ୍ତି ଯେତେ । ମୋକ୍ଷ ଲକ୍ଷଣ ବେଦମତେ ॥
ନାନା ପ୍ରକାରେ ସେ କହନ୍ତି । ଏଣୁ ଲାଗିଲା ମୋତେ ଭ୍ରାନ୍ତି ॥
ମୋକ୍ଷ ଲକ୍ଷଣ ଧର୍ମ ଏକ । କି ଅବା ଅଛଇ ଅନେକ ॥
କି ଅବା ସକଳ ପ୍ରମାଣ । ସଂଶୟ ଛେଦ ନାରାୟଣ ॥ ୧
ଏ ସର୍ବ ତୁମ୍ଭର ଗୋଚର । ଭକତି ବିନୁ ନାହିଁ ସାର ॥
ତୁମ୍ଭେ ଯେ କହ ସର୍ବ ମୋତେ । ଚିତ୍ତେ ମୁଁ ଧରିବି କେମନ୍ତେ ॥
ବୋଲ ଯେ ସର୍ବଧର୍ମ ତେଜ । ନିଶ୍ଚଳେ ମୋର ପାଦେ ଭଜ ॥
ଏହିଟି ସର୍ବ ମୋକ୍ଷଧର୍ମ । ଏଣେ ଖଣ୍ଡଇ ଭବଭ୍ରମ ॥
ତୁମ୍ଭର ବଚନୁ ଅଧିକେ । ବିପ୍ରେ କହନ୍ତି ଏକେ ଏକେ ॥
ନାନା ପ୍ରକାରେ ସେ କହନ୍ତି । ବେଦ ପୁରାଣ ଭାବେ ଚିନ୍ତି ॥
ଏକାନ୍ତ ଭକତି ଲକ୍ଷଣ । ସତ୍ୟ ବା ସକଳ ପ୍ରମାଣ ॥
ଏଣୁ ସଂଶୟ ମୋର ଚିତ୍ତେ । ନିଶ୍ଚୟ କହ ନାଥ ମୋତେ ॥ ୨
ଏମନ୍ତ ତାର ବାକ୍ୟ ଶୁଣି । ହସି କହନ୍ତି ଚକ୍ରପାଣି ॥(ଜ.)

* ମୂଳ ସଂସ୍କୃତ ଅନୁସାରେ ଚତୁର୍ଦ୍ଦଶ ଅଧ୍ୟାୟ ।

*ଶ୍ରୀ ଭଗବାନୁବାଚ*

ଉଦ୍ଧବ ଏକମନେ ଶୁଣ । ଯେ ଆଦି ପରମ କାରଣ ॥
ବେଦବଚନ ସୃଷ୍ଟି ଅନ୍ତେ । ପ୍ରଳୟ ନାଶିଲା ଜଗତେ ॥
ପୁଣି ସଂସାର ଆଦିକାଳେ । ମୁହିଁ ବ୍ରହ୍ମାଙ୍କୁ ଯୋଗବଳେ ॥
କହିଲି ସର୍ବବେଦ ବାଣୀ । ସେ ବ୍ରହ୍ମା ନିଜ ପୁତ୍ରେ ଆଣି ॥
ନାମ ତା ସ୍ୱାୟମ୍ଭୁବ ମନୁ । ଦ୍ୱିତୀୟ ପଦ୍ମଯୋନି ତନୁ ॥
ତାହାକୁ ସର୍ବ ବେଦ ଦେଲା । ସେ ପୁଣି ଧରି ନ ପାରିଲା ॥
ଥିଲେ ଯେ ସପ୍ତଋଷିଗଣେ । ତାହାଙ୍କୁ ଦେଲା ଜଣେ ଜଣେ ॥
ଭୃଗୁ ଅଙ୍ଗିରା ଆଦି କରି । ଅଭ୍ୟାସେ ବେଦ ସେ ବିସ୍ତାରି ॥୩,୪
ସେ ପୁଣି ପିତୃଗଣ ମଧ୍ୟେ । ବେଦ ପ୍ରକାଶିଲେ ଆନନ୍ଦେ ॥
ସେ ପିତୃଗଣ ତାହା ଧରି । ଅଭ୍ୟାସେ ଅଭ୍ୟାସେ ବିସ୍ତାରି ॥
ସେ ପୁଣି ଗୁହ୍ୟକ ଗ୍ରରଣେ । ଆନନ୍ଦେ ଦେଲେ ସାଧୁପଣେ ॥
ମନୁଷ୍ୟ ସିଦ୍ଧ ବିଦ୍ୟାଧର । ରାକ୍ଷସ ଗନ୍ଧର୍ବ କିନ୍ନର* ॥
କିଂଦେବψ ଯକ୍ଷ ନାଗ କପି । କ୍ରମେ ଏହାଙ୍କ ମଧ୍ୟେ ବ୍ୟାପି ॥
ଏରୂପେ ସର୍ବ ମୁଖେ ଭଣି । ମୁଁ ତାହା ଦୂରେ ଥାଇ ଶୁଣି ॥
ବେଦୁଁ ହୋଇଲା ନାନାଗତି । ତା ତତ୍ତ୍ୱ କେହି ନ ଜାଣନ୍ତି ॥
ସ୍ୱଭାବେ ତ୍ରିଗୁଣ ସଂଯୁକ୍ତ । ଏଣୁ ପ୍ରକୃତି ଭିନ୍ନ ମତ ॥୫,୬
ଯାହାକୁ ଯେମନ୍ତ ଦିଶଇ । ସେ ଭାବେ ବେଦ ଅଭ୍ୟାସଇ ॥
ଏଣୁ ପ୍ରକୃତି ଭେଦ ମତେ । ଅର୍ଥ ନ ଜାଣନ୍ତି ସମସ୍ତେ ॥
କେହୁ ପାଷାଣ୍ଡମତେ ଜାଣି । କୁତର୍କ ଖଣ୍ଡେ କେ ବଖାଣି ॥୭,୮
ଏମନ୍ତ ଭାବେ ନାନାମତେ । ବେଦ ବିଗ୍ରରନ୍ତି ଜଗତେ ॥

---

* ମୁଖମଣ୍ଡଳ ତଥା ଶାରୀରିକ ଆକୃତିରୁ କିଛି ପରିମାଣରେ ମନୁଷ୍ୟ ସହ ସାମଞ୍ଜସ୍ୟ ଥିବା ପ୍ରାଣୀ 'କିନ୍ନର' ଅଟନ୍ତି ।

ψ ଶ୍ରମରହିତ ଓ ସ୍ୱେଦାଦି ଦୁର୍ଗନ୍ଧରହିତ ହୋଇଥିବାରୁ ଯାହାଙ୍କ ବିଷୟରେ 'ଏ ଦେବତା ଅଥବା ମନୁଷ୍ୟ' ଏଭଳି ସନ୍ଦେହ ଉପୁଜେ, ସେଭଳି ଦ୍ୱୀପାନ୍ତରନିବାସୀ ମନୁଷ୍ୟ 'କିଂଦେବ' ଅଟନ୍ତି ।

ଏରୂପେ ଶ୍ରଦ୍ଧା ଅନୁମତେ । ମୋହର ମାୟାରେ ମୋହିତେ ॥
ଯେ ଯାହା ଶ୍ରେୟ ଚିନ୍ତି ଚିତ୍ତେ । କର୍ମ କରନ୍ତି ନାନାମତେ ॥
ଫଳଇ କର୍ମ ଅନୁସାରେ । ବିପାକ ଲଭନ୍ତି ସଂସାରେ ॥ ୯
କେ ଧର୍ମ ମାର୍ଗ ଆଚରନ୍ତି । କେ ଅବା କାମ୍ୟକର୍ମ ଚିନ୍ତି ॥
କେ ସତ୍ୟ ଶମ ଦମ ଦାନେ । କେ ଯଜ୍ଞ ତପ ଅନୁମାନେ ॥
କାହାର ଚିତ୍ତେ ତ୍ୟାଗ ଭୋଗ । କେ ଅଷ୍ଟଐଶ୍ୱର୍ଯ୍ୟ ସଂଯୋଗ ॥
କେ ବ୍ରତ ନିୟମ ଆଚରେ । ଏମନ୍ତେ ଅନେକ ପ୍ରକାରେ ॥
କର୍ମ ସାଧନ୍ତି ଫଳ ଲୋଭେ । ଗୁଣ ବୈଭବ କ୍ରିୟା ଦମ୍ଭେ ॥୧୦
ଏମନ୍ତେ ଯେତେ ଫଳ ସାଧି । ସୁଖ ସମ୍ପଦ ନାନାବିଧି ॥
ଅନ୍ତେ ସକଳ ହୋନ୍ତି ନାଶ । କିଛି ହିଁ ନାହିଁ ସୁଖଲେଶ ॥
କର୍ମ ସରିଲେ ଫଳ କ୍ଷୟେ । ଲବଧ କ୍ଲେଶ ମାତ୍ର ରହେ ॥
ଏଣୁ ସଂସାର ଘୋରବନେ । ବୃଜିନ[୧] ଅନଳ ଦହନେ ॥
ପ୍ରାଣୀଏ ହୋନ୍ତି ଆତଯାତ । ନ ଜାଣି ବେଦର ବୃତ୍ତାନ୍ତ ॥୧୧
ଏ ବୋଲ ବୁଝି ତୁ ନିରତେ । କେବଳ ଆଶ୍ରେ କର ମୋତେ ॥
ମୁଁ ଆତ୍ମା ପ୍ରିୟସଖା ହୋଇ । ସକଳ କର୍ମଫଳ ଦେଇ ॥
ମୁଁ ଗତି ପତି ହିତକର୍ତ୍ତା । ମୁହିଁ ସେ ସର୍ବଲୋକ ପିତା ॥
ମୋତେ ଭଜନ୍ତି ପ୍ରାଣୀ ଯେତେ । ସୁଖେ ସେ ତରନ୍ତି ନିଶ୍ଚିନ୍ତେ ॥
ଜନ୍ମ ମରଣେ ନାହିଁ ଭ୍ରାନ୍ତି । ହେଲେ ସଂସାରୁ ତରିଯାନ୍ତି ॥
ବିଷୟ ସୁଖେ ଯାର ଚିତ୍ତ । ମୋର ଭଜନେ ସେ ବଞ୍ଚିତ ॥୧୨
ଯେ ପ୍ରାଣୀ ଅକିଞ୍ଚନ ମତ । ଶମ ସୁଶାନ୍ତ ଦାନ୍ତଚିତ୍ତ[୨] ॥
ମୋର ଆନନ୍ଦରସେ ରସେ । ସୁଖସମୁଦ୍ରେ ନିତ୍ୟେ ଭାସେ ॥
ମୁଁ ଯାକୁ ହୁଅଇ ସଦୟେ । ତାହାର କାହିଁ ଦୁଃଖ ଭୟେ ॥
ଦେଖଇ ଅନ୍ତର ବାହାରେ । ସକଳ ସୁଖ ସବୁଠାରେ ॥୧୩
ମୋହର ଭାବେ ଯେ ରମଇ । ତାର ସମ୍ପଦେ କାର୍ଯ୍ୟ ନାହିଁ ॥
ବ୍ରହ୍ମପଦକୁ ନାହିଁ ବାଞ୍ଛା । ନ କରେ ଇନ୍ଦ୍ରପଦେ ଇଚ୍ଛା ॥

୧. ବୃଜିନ—ପାପ, ଦୁଃଖ । ୨. ଦାନ୍ତଚିତ୍ତ—ସଂଯତଚିତ୍ତ ।

କି ଅଷ୍ଟନିଧି ଭୋଗେ ସଧ । ସପତଦ୍ୱୀପେ ରାଜପଦ ॥
ପାତାଳ ଭୋଗେ ଇଚ୍ଛା ନାହିଁ । ନିର୍ବାଣପଦ ନ ବାଞ୍ଛଇ ॥
ମୋତେ ସମର୍ପେ ଚିତ୍ତ ବିତ୍ତ । ନୁହଇ ମାୟାରେ ମୋହିତ ॥୧୪
ସେ ମୋର ଯେଡ଼େ ପ୍ରିୟ ହୋଇ । କହଇ ଶୁଣ ମନ ଦେଇ ॥
ବ୍ରହ୍ମା ଯେ ମୋହର ନନ୍ଦନ । ତାକୁ ନ ରମେ ମୋର ମନ ॥
ମୋହର ଆତ୍ମା ପଶୁପତି । ତେଣେ ମୋହର ନାହିଁ ପ୍ରୀତି ॥
ମୋହର ଭାଇ ହଳପାଣି । ଲକ୍ଷ୍ମୀ ଯେ ମୋହର ଘରଣୀ ॥
ନିତ୍ୟେ ବସଇ ବକ୍ଷସ୍ଥଳେ । ମୋ ରୂପ ଯେତେ ଭୂମଣ୍ଡଳେ ॥
ତୁ ଯେ ମୋହର ପ୍ରିୟତମ । କେହି ନୁହନ୍ତି ତୋର ସମ ॥୧୫
ସ୍ୱଭାବେ ନିରପେକ୍ଷ ଶାନ୍ତ । ତପସ୍ୱୀ ରିପୁ ବିବର୍ଜିତ ॥
ସମଦରଶୀ ପ୍ରେମପ୍ଳୁତ । ଦୟାସାଗର ପରହିତ ॥
ଏମନ୍ତ ପ୍ରାଣୀଙ୍କର ପଛେ । ନିତ୍ୟେ ମୁଁ ବୁଲଇ ପ୍ରତ୍ୟକ୍ଷେ ॥
ଆବୋରି ଥାଇ ବେନିପାଶେ । ତାର ଚରଣ ରେଣୁ ଆଶେ ॥
ମୋର ଅନ୍ତରେ ବିଶ୍ୱ ଯେଣୁ । ପବିତ୍ର କରଇ ସେ ରେଣୁ ॥୧୬
ସେ ପ୍ରାଣୀ ବହେ ଯେତେ ଗୁଣ । ଉଦ୍ଧବ ସାବଧାନେ ଶୁଣ ॥
ସ୍ୱଭାବେ ଅକିଞ୍ଚନ ଦେହେ । ସକଳ ଭୂତେ ଦୟା ବହେ ॥
କାମକୁ ଜିଣି ପ୍ରେମପ୍ଳୁତ । କେବଳ ସୁଶାନ୍ତ ମହତ ॥
ସେ ମୋର ସୁଖ ଅନୁମାନେ । କେ ତାର ମହିମା ବଖାଣେ ॥
ତା ଅନୁଭବ ସେ ଜାଣଇ । କେ ତାହା ମୁଖେ ପାରେ କହି ॥୧୭
ଏମନ୍ତେ ଯେ ମୋର ଭକତ । ସେ ଯେବେ ବିଷୟେ ବାଧିତ ॥
ଅଜିତ ଇନ୍ଦ୍ରିୟଙ୍କ ଦୋଷେ । ଯେବେ ବିଷୟରସେ ରସେ ॥
ମୋର ଭକତିଭାବ ବଳେ । ବିଷୟ ନ ଲାଗେ ନିଶ୍ଚଳେ ॥
ମୋ ନାମ ନିତ୍ୟେ ଭଣେ ମୁଖେ । ଆନନ୍ଦେ ବିହରଇ ସୁଖେ ॥
ଜଳନ୍ତା ଅନଳେ ଯେସନ । ସମିଧ ହୁଅଇ ଦହନ ॥
ତାର ଶରୀରେ ପାପ ଯେତେ । ଦହନ ହୋନ୍ତି ସେହି ମତେ ॥୧୮,୧୯
ଉଦ୍ଧବ ଶୁଣ ଏକଚିତ୍ତେ । ଗୁପତ କଥା କହୁଁ ତୋତେ ॥

ଯେତେ ଏ ଦାନବ୍ରତ ତ୍ୟାଗ । ଧର୍ମ ଆଗ୍ରର ସାଂଖ୍ୟ ଯୋଗ ॥
ଏ ମୋତେ ନ ପାରନ୍ତି ଧରି । ନାନା ପ୍ରକାରେ ବଶ କରି ॥
ଭକତଜନେ ବଶ ମୁହିଁ । ତାର ରକ୍ଷଣେ ମୋର ଦେହୀ ॥୨୦
ମୁଁ ଏ ସଂସାର ଅଛି ଛନ୍ଦି । ଭକତ ପାରେ ମୋତେ ବାନ୍ଧି ॥
ଦୁର୍ଜୟ ଦେହ ମୋର ଶୂନ୍ୟ । ଭକତ ଭାବେ ମୁଁ ବନ୍ଧନ ॥
ଏଣୁ ଭକତ ଜନ ପାଶେ । ନିତ୍ୟେ ମୁଁ ଥାଇ ଭାବବଶେ ॥
ତେଣୁ ଭକତ ଏ ସଂସାରେ । ଅଶେଷ ଜନ୍ମଦୋଷ ହରେ ॥
ଚ୍ଣ୍ଡାଳ ପତିତ ପାମର । ମ୍ଳେଚ୍ଛ ଅଧମ ଦୁରାଗ୍ରର ॥
ଏ ଆଦି ପାପୀଜନ ଯେତେ । ଯେବେ ମୋ ଭକତ ଅଗ୍ରତେ ॥
ଦଇବଯୋଗେ ସଙ୍ଗମେଳେ । ମିଳନ୍ତି ପୂର୍ବ ପୁଣ୍ୟଫଳେ ॥
ଦର୍ଶନ ସ୍ପର୍ଶନ ଶ୍ରବଣେ । ନିର୍ମଳ ହୋନ୍ତି ତତକ୍ଷଣେ ॥
ପାପ ନ ରହେ ତାଙ୍କ ମନେ । ରବି ସମୀପେ ତମ ଯେହ୍ନେ ॥୨୧
ଯେ ପ୍ରାଣୀ ଦୟା-ସତ୍ୟଯୁକ୍ତ । ତପୀ ଧାର୍ମିକ ବିଦ୍ୟାବନ୍ତ ॥
ମୋର ଭକତି ଯେବେ ନାହିଁ । ପବିତ୍ର ନୋହେ ତାର ଦେହୀ ॥
ସେ କାହୁଁ ସଂସାରୁ ତରିବ । ଯେବେ ନ ଜାଣେ ମୋର ଭାବ ॥୨୨
ବୋଲନ୍ତି ପ୍ରଭୁ ଭଗବାନ । ଶୁଣ ହେ ଭକତର ଚିହ୍ନ ॥
ନିରତେ ଅଙ୍ଗ ପୁଲକିତ । ନୟନ ଅଶ୍ରୁଜଳେ ଯୁତ ॥
ଅନ୍ତର ଦ୍ରବଇ ନିରତେ । ମତି ଚଞ୍ଚଳ ବିପରୀତେ ॥
ଜଗତ ମୋର ରୂପ ଜାଣେ । ନିଜ ଶରୀର ନ ପ୍ରମାଣେ ॥୨୩
ବୋଲନ୍ତି ପ୍ରଭୁ ଚକ୍ରପାଣି । ଏତେ ଲକ୍ଷଣେ ଭକ୍ତ ଜାଣି ॥
ଭକତି ବିନା ଅନ୍ତର୍ଗତ । କେବେହେଁ ନୁହଇ ପବିତ୍ର ॥
ବୋଲଇ ଗଦଗଦ ବାଣୀ । କ୍ଷଣକେ ହସେ ପୁଣ ପୁଣି ॥
କ୍ଷଣକେ କରଇ ରୋଦନ । ଉଚ୍ଚେ ଡାକଇ ମୋର ନାମ ॥
ନାଚଇ ଉନମତ୍ତ ହୋଇ । ଲଜ୍ଜା ସଙ୍କୋଚ ଦୂରେ ଥୋଇ ॥
କ୍ଷଣେ ମଉନ ଭାବେ ବଶେ । କ୍ଷଣକେ ଆନୁ ଆନ ଘୋଷେ ॥

ମୋର ଭକତ ମୋର ମିତ୍ର । ସେ କରେ ଜଗତ ପବିତ୍ର ॥
ନିର୍ମଳ ମତି ତାର ନିତ୍ୟେ । ଭ୍ରମଇ ଉଦାର ଚରିତେ ॥୨୪
ଅନଳେ ଦହନ୍ତେ ସୁବର୍ଣ୍ଣ । ନିର୍ମଳ ହୁଅଇ ଯେସନ ॥
ଭକତଜନ ସେହିମତେ । ନିର୍ମଳ ହୋନ୍ତି ଏ ଜଗତେ ॥
ଏ ରୂପେ ଭକ୍ତିଯୋଗ ବଳେ । ଯେ ମୋତେ ଭଜଇ ନିଶ୍ଚଳେ ॥
ଅଶେଷ ବାସନା ତାହାର । ମନରୁ ଛାଡ଼ି ଯାନ୍ତି ଦୂର ॥୨୫
ମୋର ମଙ୍ଗଳ କଥାମାନ । ଯେ କରେ ଶ୍ରବଣ କୀର୍ତ୍ତନ ॥
ଶ୍ରବଣେ ପଶି ମୋର କଥା । ହରଇ ସର୍ବ ମନବ୍ୟଥା ॥
ନିତ୍ୟେ ଯେ ଶୁଣେ ମନସୁଖେ । ସେ ସୂକ୍ଷ୍ମ ପରମାର୍ଥ ଦେଖେ ॥
ଅଞ୍ଜନ ରଞ୍ଜୁଥିଲେ ନିତ୍ୟେ । ମଳି ନ ରହେ ଯେହ୍ନେ ନେତ୍ରେ ॥୨୬
ବିଷୟ ସ୍ମରଣେ ନିରତେ । ଯେହ୍ନେ ବିଷୟ ଜଡ଼େ ଚିତ୍ତେ ॥
ମୋର ସ୍ମରଣ ଯାର ଚିତ୍ତେ । ତା ପାଶେ ଥାଇ ମୁଁ ନିରତେ ॥୨୭
ଏ ବୋଲ ବୁଝି ମୋତେ ଭଜ । ଅସତ ଧ୍ୟାନ ବେଗେ ତେଜ ॥
ମୋ ରୂପ ଦେଖ ସର୍ବଠାବେ । ମୋର ଚରଣ ଭଜ ଭାବେ ॥୨୮
ନିରୋଳେ ବସି ଏକସ୍ଥାନେ । ନିଶ୍ଚିନ୍ତେ କଳ୍ପିବ ଆସନେ ॥
ମୋର ମଧୁର ରୂପ ଧ୍ୟାନେ । ବସି ଚିନ୍ତିବ ସ୍ଥିରମନେ ॥
ସ୍ତ୍ରୀସଙ୍ଗେ ସ୍ତ୍ରୀସଙ୍ଗୀଙ୍କ ସଙ୍ଗେ । ଚିତ୍ତ ବଢ଼ଇ ନାନାରଙ୍ଗେ ॥
ଏଣୁ କୁସଙ୍ଗ ଦୂର କରି । ହୃଦେ ମୋ ଭାବ ଥିବ ଧରି ॥
ଆତ୍ମାର ହିତ ନିତ୍ୟେ କର । ହସି କହନ୍ତି ଦାମୋଦର ॥୨୯,୩୦
ଉଦ୍ଧବ ଶୁଣି କୃଷ୍ଣବାଣୀ । କପାଳେ ଦେଇ ବେନି ପାଣି ॥
ବୋଲଇ ଶୁଣ ଭଗବାନ । ତୁମ୍ଭେ କହିଲ ତୁମ୍ଭ ଧ୍ୟାନ ॥
କି ରୂପେ ଜଗତ ବିଖ୍ୟାତ । କହ ହେ ତ୍ରିଭୁବନ ନାଥ ॥
ଭକ୍ତବତ୍ସଳ ଭଗବାନ । ବିକଚ କମଳ ଲୋଚନ ॥
ଯେ ଧ୍ୟାନେ ଯୋଗୀଜନେ ଚିନ୍ତି । ଘୋର ସଂସାରୁ ତରିଯାନ୍ତି ॥
କି ରୂପେ କରି ତୋତେ ଧ୍ୟାନ । କହ ହେ ଦେବକୀନନ୍ଦନ ॥୩୧

ଶୁଣି ଉଦ୍ଧବବାଣୀ କର୍ଣ୍ଣେ । କୋମଳ ମଧୁର ବଚନେ ॥
ବୋଲନ୍ତି ପ୍ରଭୁ ଜଗନ୍ନାଥ । ଶୁଣ ଉଦ୍ଧବ ଧ୍ୟାନମତ ॥(ଜ.)

*ଶ୍ରୀ ଭଗବାନୁବାଚ*

ସମ ଆସନେ ବସି ଧୀରେ । ସୁଖରେ ସମ କଳେବରେ ॥
ଜାନୁ ଯୁଗଳେ ବେନି ପାଣି । ଦୃଢ଼େ ସ୍ଥାପିବ ବେଳ ଜାଣି ॥
ବେନି ନୟନ ନାସାଅଗ୍ରେ । ନିଶ୍ଚଳେ ସ୍ଥାପିବ ସମଗ୍ରେ ॥
ପବନ ତୋଳି ନାସାଦ୍ୱାରେ । ପୂରକ କୁମ୍ଭକ ପ୍ରକାରେ ॥
ଅଳପ ଅଳପ ସାଧନେ । ଚିତ୍ତ ସ୍ଥାପିବ ସଂଯମନେ ॥୩୨,୩୩
ଓଁକାର ପବନ ନିଶ୍ଚଳୁ । ତୋଳିବ ହୃଦୟ କମଳୁ ॥
ଉତ୍ତମ ଘଣ୍ଟନାଦ ସ୍ୱନେ । ମନ ପବନ ଏକଧ୍ୟାନେ ॥
ମୃଣାଳସୂତ୍ର ମାର୍ଗେ ଧରି । ନିଶ୍ଚଳେ ଅନାହତେ ପୂରି ॥
ଲବ ନିମିଷ ଦଣ୍ଡ ଘଡ଼ି । ନିତ୍ୟେ ସାଧିବ ଦୁଃଖେ ପଡ଼ି ॥
ଏ ରୂପେ ଅନ୍ତର ବାହାରେ । ଧ୍ୟାନେ ସାଧିବ ନିରନ୍ତରେ ॥୩୪
ଏମନ୍ତ ସାଧି ଏକମାସେ । ପ୍ରାଣପବନ ସ୍ଥାପି ବଶେ ॥
ହୃଦୟପଦ୍ମ ମଧ୍ୟଭାଗେ । ଯେ ଅଷ୍ଟଦଳ ଅଷ୍ଟଦିଗେ ॥
ମଧ୍ୟେ ପାଖୁଡ଼ା ଗ୍ରିପାଖେ । ନିତ୍ୟ ଲମ୍ବଇ ଅଧୋମୁଖେ ॥
ଧ୍ୟାନେ ଚିନ୍ତିବ ଦୃଢ଼ବନ୍ଧେ । ଯେ ଅଷ୍ଟଦଳ ତାର ଊର୍ଦ୍ଧ୍ୱେ ॥
ସୂର୍ଯ୍ୟମଣ୍ଡଳ ଚିନ୍ତା କରି । ସୋମ ମଣ୍ଡଳ ମଧ୍ୟେ ଭରି ॥
ତାହାର ମଧ୍ୟେ ହୁତାଶନ । ତା ମଧ୍ୟେ ସୁବର୍ଣ୍ଣ ଆସନ ॥
ତାର ଉପରେ ଦିବ୍ୟରୂପ । ଚିନ୍ତିବ ମୋହର ସ୍ୱରୂପ ॥୩୫-୩୭
ଆଜାନୁ ଲମ୍ବେ ଭୁଜ ଗ୍ରିରି । ଶଙ୍ଖ କମଳ ଗଦା ଅରି[୧] ॥
ଶ୍ରୀମୁଖ ସୁନ୍ଦର କପୋଳ । ବିକଚପଦ୍ମ ପ୍ରାୟେ ଡୋଳ ॥
ଶ୍ରବଣେ ମକର କୁଣ୍ଡଳ । ହୃଦେ ଲମ୍ବଇ ବନମାଳ ॥
ନୀଳଜଳଦ କଳେବର । କଣ୍ଠେ କୌସ୍ତୁଭମଣି ହାର ॥
ହୃଦରେ ଶ୍ରୀବତ୍ସର ଚିହ୍ନ । ପୀତବସନ ପରିଧାନ ॥

---

୧. ଅରି—ଚକ୍ର ।

ମଞ୍ଜୁ ମଞ୍ଜୀର[୧] ପାଦଯୁଗେ । ରତ୍ନମେଖଳା କଟିଭାଗେ ॥
ଯଜ୍ଞୋପବୀତ କନ୍ଧେ ଶୋହେ । ସୁନ୍ଦର ତନୁ ମନ ମୋହେ ॥
ମେଘଗମ୍ଭୀର ପ୍ରାୟେ ସ୍ୱନ । ପ୍ରସନ୍ନ ଶ୍ରୀମୁଖ ଲକ୍ଷଣ ॥
ଅତି କୋମଳ ଅଟେ ଦେହୀ । ସର୍ବାଙ୍ଗେ ଚିତ୍ତ ଦୃଢ଼େ ଦେଇ ॥
ଏ ରୂପେ ଧ୍ୟାନ ମୋତେ କରି । ଚଞ୍ଚଳ ଇନ୍ଦ୍ରିୟ ନିବାରି ॥
ବୁଦ୍ଧିକି କରି ଆଗୁସାର । ପଣ୍ଡିତଜନଙ୍କ ବେଭାର ॥
ସର୍ବସଙ୍ଗମୁଁ ମନ ହରି । ନିଶ୍ଚଳେ ମୋର ରୂପ ଧରି ॥
ମୋ ରୂପ ଚିନ୍ତିବ ନିରତେ । ନ ଚିନ୍ତି ଅନ୍ୟ କିଛି ଚିତ୍ତେ ॥୩୮-୪୨
ପୁଣି ସେ ରୂପ ଥୋଇ ପାଶେ । ଚିତ୍ତ ନିବେଶିବ ଆକାଶେ ॥
ଏମନ୍ତ ଆକାଶ ମଣ୍ଡଳେ । ବ୍ରହ୍ମ ପ୍ରକାଶିବ ନିଶ୍ଚଳେ ॥
ସେ ବ୍ରହ୍ମେ ଚିତ୍ତ ସ୍ଥିର ଯେବେ । ମୋ ରୂପ ନ ଚିନ୍ତିବ ତେବେ ॥୪୪*
ଏମନ୍ତ ସମାଧି ଯୋଗରେ । ଯେ ଆତ୍ମା ସମର୍ପେ ଆତ୍ମାରେ ॥
ଜ୍ୟୋତିରେ ଜ୍ୟୋତି ମିଶେ ଯେହ୍ନେ । ମୋତେ ସେ ଲଭଇ ତେସନେ ॥୪୫
ସେ ବ୍ରହ୍ମରୂପ ସର୍ବଭୂତେ । ଆତ୍ମାରେ ପ୍ରକାଶିବ ନିତ୍ୟେ ॥
ମନ ସଂଯମି ଏହିମତେ । ମୋ ରୂପ ଦେଖିବ ଜଗତେ ॥
ଏ ରୂପେ ଯୋଗଧ୍ୟାନ ମତେ । ମନକୁ ନିବେଶି ନିଶ୍ଚିନ୍ତେ ॥
ଇନ୍ଦ୍ରିୟ ଜ୍ଞାନ କ୍ରିୟା ଭ୍ରମ । ତେଜି ତୁ ଲଭିବୁ ନିର୍ବାଣ ॥
ଏମନ୍ତେ ଭ୍ରମ ଯିବ ତୋର । କହିଲେ ବ୍ରହ୍ମାଣ୍ଡଠାକୁର ॥୪୬
ବୋଲଇ ଦାସ ଜଗନ୍ନାଥ । ଶ୍ରୀ ଏକାଦଶେ ଭାଗବତ ॥
ଶୁକ ପରୀକ୍ଷିତ ସଂବାଦ । ଶୁଣନ୍ତେ ନ ଲାଗେ ପ୍ରମାଦ ॥
କଳି କଳ୍ମଷ ଭୟ ନାହିଁ । ସୁଜନେ ତର ଏହା ଗାଇ ॥

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଏକାଦଶସ୍କନ୍ଧେ ଭଗବଦୁଦ୍ଧବସଂବାଦେ ଧ୍ୟାନଯୋଗବର୍ଣ୍ଣନଂ ନାମ ପଞ୍ଚଦଶୋଽଧ୍ୟାୟଃ ।



୧. ମଞ୍ଜୀର—ପାଉଁଜି ।

* ଶ୍ଲୋକ ୪୩ର ଅନୁବାଦ ନାହିଁ ।

# ଷୋଡ଼ଶ ଅଧ୍ୟାୟ*

ଯୋଗସିଦ୍ଧିର ବିବରଣ । ଷୋଡ଼ଶ ଅଧ୍ୟାୟେ ବ୍ୟାଖ୍ୟାନ ॥

*ଶ୍ରୀ ଭଗବାନୁବାଚ*

ବୋଲନ୍ତି କମଳାରମଣ । ଉଦ୍ଧବ ସାବଧାନେ ଶୁଣ ॥
ଏ ଜ୍ଞାନଯୋଗ ଏହିମତେ । ଜ୍ଞାନୀ ସାଧନ୍ତି ଏ ଜଗତେ ॥
ଏ ପୁଣି ବହୁଦିନେ ସିଦ୍ଧି । ଯୋଗ ପ୍ରକାଶେ ନାନାବିଧି ॥
ଏଣୁ ଭକତ ଯୋଗୀଜନେ । ସାଧ୍ୟ କରନ୍ତି ଅଳ୍ପଦିନେ ॥
ନିକଟେ ଥିଟେ ସର୍ବସିଦ୍ଧି । ଅଷ୍ଟାଙ୍ଗଯୋଗେ ଏ ପ୍ରସିଦ୍ଧି ॥
ଏମନ୍ତ କୃଷ୍ଣମୁଖୁଁ ଶୁଣି । ଉଦ୍ଧବ କହେ ମଞ୍ଜୁବାଣୀ ॥ ୧

*ଉଦ୍ଧବ ଉବାଚ*

ଶୁଣ ହେ କମଳାରମଣ । ଅଶେଷ ବ୍ରହ୍ମାଣ୍ଡ କାରଣ ॥
କେଉଁ ଧାରଣା କେଉଁମତେ । ଜ୍ଞାନୀ ସାଧନ୍ତି ଏ ଜଗତେ ॥
ସିଦ୍ଧି ଲକ୍ଷଣ ଅବା କେତେ । ସର୍ବ ନିର୍ଣ୍ଣୟ କହ ମୋତେ ॥ ୨
ଏମନ୍ତ ଉଦ୍ଧବର ବାଣୀ । ଶୁଣି କହନ୍ତି ଚକ୍ରପାଣି ॥(ଜ.)

*ଶ୍ରୀ ଭଗବାନୁବାଚ*

ଉଦ୍ଧବ ସାବଧାନେ ଶୁଣ । କହିବା ଯୋଗସିଦ୍ଧିମାନ ॥
ସଂସାରେ ଅଷ୍ଟାଦଶ ସିଦ୍ଧି । ଜ୍ଞାନୀ ସାଧନ୍ତି ନାନାବିଧି ॥
ସିଦ୍ଧିଙ୍କ ମଧ୍ୟେ ଅଷ୍ଟ ସାର । ଯେଣୁ ମୁଁ ବୋଲାଇ ଈଶ୍ୱର ॥
ଅଣିମା ଆଦି ଅଷ୍ଟସିଦ୍ଧି । ମୁକ୍ତି ଲକ୍ଷଣ ଏ ପ୍ରସିଦ୍ଧି ॥
ଯେ ଦଶ ସିଦ୍ଧି ରହେ ଶେଷେ । ସ୍ୱଭାବେ ତିନିଗୁଣେ ମିଶେ ॥ ୩
ଅଣିମା ଲଘିମା ଏ ବେନି । ମହିମା ଘେନି ସିଦ୍ଧି ତିନି ॥
ଯୋଗୀଙ୍କ ଦେହେ ଥାନ୍ତି ନିତ୍ୟେ । ପ୍ରାପ୍ତି ରହଇ ଇନ୍ଦ୍ରିୟୁତେ ॥
ପ୍ରାକାମ୍ୟ ଶ୍ରୁତି ଦୃଷ୍ଟି ବଶେ । ଈଶିତା ଶକ୍ତି ପରକାଶେ ॥ ୪

* ମୂଳ ସଂସ୍କୃତ ଅନୁସାରେ ପଞ୍ଚଦଶ ଅଧ୍ୟାୟ ।

ବଶିତା ନାମ ଯେ ବୋଲାଏ । ବିଷୟ୍ ରସେ ମତ୍ତ ନୋହେ ॥
ଅଷ୍ଟମ କାମାବସାୟିତା । ଯୋଗୀଙ୍କ ମନୋରଥ ଦାତା ॥ ୫
କ୍ଷୁଧା ପିପାସା ଜରା ମୃତ୍ୟୁ । ଲୋଭ ମୋହ ଏ ଷଡ଼ହେତୁ ॥
ଏ ଷଡ଼ଉର୍ମି ନିବାରଣ । ଅନୂର୍ମି ସିଦ୍ଧି ଏ ଲକ୍ଷଣ ॥
ପ୍ରାଣିଏ ଅତି ଦୂରେ ଥାଇ । ନିନ୍ଦା ସ୍ତବନ ଯାହା କହି ॥
ସେ କଥା ଜାଣଇ ତକ୍ଷଣ । ଦୂରଶ୍ରବଣ ଏହା ନାମ ॥
ବିଶ୍ୱସଂସାର ଚରାଚର । ଏ ନିତ୍ୟ ଯାହାର ଗୋଚର ॥
ଉଦ୍ଧବ ସାବଧାନେ ଶୁଣ । ଦୂରଦର୍ଶନ ଏ ଲକ୍ଷଣ ॥
ମନହୁଁ ବେଗ ଦେହ ଗତି । ଏ ସିଦ୍ଧି ମନୋଜବ ହୋନ୍ତି ॥
ଯେ କାମରୂପ ସିଦ୍ଧି କହି । କଳ୍ପିତେ ଦେହ ପ୍ରକାଶଇ ॥
ଚତୁର୍ଦ୍ଦଶରେ ସିଦ୍ଧି ଗୁଣ । ଯେ ପରକାୟ୍ ପ୍ରବେଶନ ॥ ୬
ଇଚ୍ଛାମରଣ ଯେବେ ହୋଇ । ସ୍ୱଚ୍ଛନ୍ଦମୃତ୍ୟୁ ସିଦ୍ଧି ସେହି ॥
ଦେବଙ୍କ ସଙ୍ଗେ ବିହରଇ । ଅମର ସିଦ୍ଧି ତାକୁ କହି ॥
ମନ କଳ୍ପିତେ ଫଳ ପାଇ । ସଙ୍କଳ୍ପ ସିଦ୍ଧି ତାକୁ କହି ॥
ଧ୍ୟାନ ଧାରଣା ଯୋଗବଳେ । ଯାହା କହନ୍ତି ଅବହେଳେ ॥
ଅନ୍ୟଥା ନୁହଁଇ ସେ ପୁଣ । ବଚନ ସିଦ୍ଧି ଏ ପ୍ରମାଣ ॥ ୭
ଏ ସିଦ୍ଧି ଅଷ୍ଟାଦଶ ଜାଣ । ସାମାନ୍ୟ ସିଦ୍ଧି ଏବେ ଶୁଣ ॥
ଭୂତ ଭବିଷ୍ୟ ବର୍ତ୍ତମାନେ । ଯୋଗୀ ଜାଣନ୍ତି ଯୋଗଧ୍ୟାନେ ॥
ସେ ସିଦ୍ଧି ତ୍ରିକାଳଜ୍ଞ ନାମ । ଆବର ସିଦ୍ଧି ଏବେ ଶୁଣ ॥
ଶୀତ ବରଷା ଘର୍ମ ବାତ । ଯହିଁରେ ନ କରଇ ଗ୍ରସ୍ତ ॥
ଯେଣେ ତ୍ରିବିଧ ତାପ ନାହିଁ । ଅଦ୍ୱନ୍ଦ୍ୱ ସିଦ୍ଧି ଏ ବୋଲାଇ ॥
ପ୍ରାଣୀଙ୍କ ଚିତ୍ତ ଯେବେ ଜାଣି । ଚିତ୍ତଜ୍ଞ ସିଦ୍ଧି ସେ ବଖାଣି ॥
ଅନଳ ତପନ ଜଳଧି । ଅପରେ ବିଷ ଶସ୍ତ୍ର ଆଦି ॥
ଏ ସର୍ବ ଯେଣେ ନ ବାଧଇ । ବିଷ୍ଟମ୍ଭ ସିଦ୍ଧି ତାକୁ କହି ॥
ପର ଅପର ରିପୁବଳେ । ଅଜେୟ୍ ହୋଇ ସର୍ବକାଳେ ॥
ଶୁଣ ଉଦ୍ଧବ ମନ ଦେଇ । ଅପରାଜେୟ୍ ସିଦ୍ଧି ସେହି ॥ ୮

ସକଳ ସିଦ୍ଧି ତୋ ଅଗ୍ରତେ । କହିଲି ଉପଦେଶମତେ ॥
ଯେଉଁ ଧାରଣେ ଯେଉଁ ସିଦ୍ଧି । ଶୁଣ କହିବା ଯଥାବିଧି ॥ ୯
ଯେ ଭୂତସୂକ୍ଷ୍ମେ ଦେଇ ମତି । ଧାରଣାଯୋଗେ ମୋତେ ଚିନ୍ତି ॥
ଏଣେ ସେ ସୂକ୍ଷ୍ମରୂପେ ରହି । ଅଣିମା ସିଦ୍ଧିକି ଲଭଇ ॥୧୦
ମହତରୂପେ ମୋତେ ଚିନ୍ତି । ମହିମା ସିଦ୍ଧିକି ଲଭନ୍ତି ॥୧୧
ସକଳ ଭୂତ ମଧ୍ୟେ ମୁହିଁ । ଅଣୁ ପ୍ରମାଣେ ପ୍ରକାଶଇ ॥
ସେ ରୂପ ଯୋଗବଳେ ଧ୍ୟାୟି । ଲଘିମା ସିଦ୍ଧିକି ଲଭଇ ॥୧୨
ଅହଙ୍କରଣ ରୂପେ ମୋତେ । ସାଧଇ ଇନ୍ଦ୍ରିୟ ସଂଯୁକ୍ତେ ॥
ଚିତ୍ତେ ଧରଇ ଯୋଗବଳେ । ସେ ପ୍ରାପ୍ତି ସିଦ୍ଧି ଲଭେ ହେଳେ ॥୧୩
ଯେ କ୍ରିୟାଶକ୍ତି ମହତତ୍ତ୍ୱେ । ଯୋଗୀଏ ଭଜି ଦୃଢ଼ଚିତ୍ତେ ॥
ମହତ ରୂପେ ମୋତେ ଧ୍ୟାୟି । ପ୍ରାକାମ୍ୟ ସିଦ୍ଧି ଯୋଗେ ପାଇ ॥୧୪
ତ୍ରିଗୁଣ ଅଧୀଶ୍ୱର ହୋଇ । ଏ ଭୂତ କ୍ଷେତ୍ର କାଳ ମୁହିଁ ॥
ଏମନ୍ତ ଭାବି ସର୍ବଭୂତେ । ଈଶିତା ସିଦ୍ଧି ଲଭେ ନିତ୍ୟେ ॥୧୫
ସକଳ ଐଶ୍ୱର୍ଯ୍ୟର ଧାମ । ତୁରୀୟ ରୂପ ନାରାୟଣ ॥
ଧାରଣା ଯୋଗେ ଚିତ୍ତ ଧରି । ବଶିତା ସିଦ୍ଧି ବଶ କରି ॥୧୬
ନିର୍ଗୁଣବ୍ରହ୍ମ ରୂପେ ମୋତେ । ମନ ନିବେଶି ଶୁଦ୍ଧଚିତ୍ତେ ॥
ସେ କାମାବସାୟିତା ପାଇ । ମନ କଳ୍ପନା ସିଦ୍ଧ ଯହିଁ ॥୧୭
କ୍ଷୀରଜଳଧି ମଧ୍ୟେ ସ୍ଥାନ । ଯାହାର ଶ୍ୱେତଦ୍ୱୀପ ନାମ ॥
ସେ ସ୍ଥାନ ମଧ୍ୟେ ମୋର ଧାମ । ନୀଳଜଳଦ ତନୁ ଶ୍ୟାମ ॥
ବିଶୁଦ୍ଧ ଧର୍ମମୟ ମୂର୍ତ୍ତି । ଯୋଗ ଧାରଣେ ମୋତେ ଚିନ୍ତି ॥
କ୍ଷୁଧା ପିପାସା ଜିଣି ହେଳେ । ଅନୂର୍ମି ସିଦ୍ଧି ଲଭେ ଭଲେ ॥୧୮
ଆକାଶ ପ୍ରାୟେ ଶୂନ୍ୟରୂପୀ । ମୁଁ ଥାଏ ସର୍ବଭୂତେ ବ୍ୟାପି ॥
ଯେ ମୋତେ ନାଦରୂପେ ଭାବେ । ଦୂର ଶ୍ରବଣ ବେଗେ ଲଭେ ॥୧୯
ଚକ୍ଷୁ ଯୁଗଳ ସୂର୍ଯ୍ୟେ ଥୋଇ । ନୟନେ ଆଦିତ୍ୟ ବସାଇ ॥
ବେନି ସଂଯୋଗେ ମଧ୍ୟଗତେ । ମୋତେ ଧ୍ୟାୟିଲେ ଦୃଢ଼ଚିତ୍ତେ ॥
ଦୂରଦର୍ଶନ ସିଦ୍ଧି ହୋଇ । ସକଳ ବିଶ୍ୱ ସେ ଦେଖଇ ॥୨୦

ମନ ପବନ ଦେହ ପ୍ରାଣ । ଦେଇ ଯେ ଭଜେ ମୋ ଚରଣ ॥
ମନର ସଙ୍ଗେ ତା ଗମନ । ଏ ସିଦ୍ଧି ମନୋଜବ ନାମ ॥୨୧
ଅଚିନ୍ତ୍ୟଶକ୍ତି ମୋ ଚରଣ । ଧାରଣା ଯୋଗେ କରି ଧ୍ୟାନ ॥
ଯେ ରୂପ କଳ୍ପଇ ତା ମନେ । ସେ ରୂପ ହୋଇ ତତକ୍ଷଣେ ॥
ଶୁଣ ଉଦ୍ଧବ ସାଧୁ ଧୀର । ସେ କାମରୂପ ସିଦ୍ଧି ସାର ॥୨୨
ପର ଶରୀର ଶୂନ୍ୟ ଦେଖି । ତା ଦେହେ ଆତ୍ମା ଉପଲକ୍ଷି ॥
ଧ୍ୟାନ କରଇ ମୋର ପାଦେ । ନିଶ୍ଚଳ ମନେ ଅପ୍ରମାଦେ ॥
ପଶଇ ତାର ଦେହେ ଯାଇ । କାୟପ୍ରବେଶ ସିଦ୍ଧି ଏହି ॥୨୩
ମୋ ରୂପ ବ୍ରହ୍ମମୟ ଧ୍ୟାନେ । ଦୃଢ଼େ ବସିବ ଯୋଗାସନେ ॥
ପ୍ରାଣ ତୋଳିବ ଯୋଗବଳେ । ସ୍ଥାପିବ ହୃଦୟ କମଳେ ॥
ପୁଣି ତୋଳିବ ଦୃଢ଼େ ଉର୍ଦ୍ଧ୍ୱେ । ନେଇ ସ୍ଥାପିବ ବ୍ରହ୍ମରନ୍ଧ୍ରେ ॥
ସେ ବ୍ରହ୍ମରନ୍ଧ୍ର ଭେଦି ବଳେ । ପରମବ୍ରହ୍ମେ ଆତ୍ମା ମିଳେ ॥
ଶୁଣ ହୋ ଭକତ ଉତ୍ତମ । ସ୍ୱଚ୍ଛନ୍ଦମୃତ୍ୟୁ ଏହା ନାମ ॥୨୪
ନିତ୍ୟେ ମୁଁ ସତ୍ତ୍ୱରୂପେ ଥାଇ । ଏମନ୍ତ ସତ୍ତ୍ୱେ ମୋତେ ଧ୍ୟାୟି ॥
ସାଧି ଅମର ସିଦ୍ଧି ଯୋଗ । ଭୁଞ୍ଜଇ ସ୍ୱର୍ଗ ସୁଖଭୋଗ ॥୨୫
ଯେ କଳ୍ପବୃକ୍ଷ ଭାବେ ମୋତେ । ସତ୍ୟ ସ୍ୱରୂପେ ଚିନ୍ତେ ନିତ୍ୟେ ॥
ଧାରଣା ଯୋଗେ ଧ୍ୟାନବଳେ । ସଙ୍କଳ୍ପ ସିଦ୍ଧି ଲଭେ ହେଳେ ॥୨୬
ସଂସାର ହର୍ତ୍ତାକର୍ତ୍ତା ମୁହିଁ । ମୋ ବିନୁ ନାହିଁ ଅନ୍ୟ କେହି ॥
ମୁଁ ସର୍ବଆତ୍ମା ଅଧୀଶ୍ୱର । ମୋହର ନାହିଁ ପରାପର ॥
ଏ ଭାବେ ମୋତେ ଯେ ଚିନ୍ତଇ । ବଚନ ସିଦ୍ଧି ତାର ହୋଇ ॥୨୭
ଭୂତ ଭବିଷ୍ୟ ବର୍ତ୍ତମାନ । ମୋର ଭକ୍ତିରେ ଶୁଦ୍ଧମନ ॥
ଯୋଗୀ ଜାଣଇ ତାହା ହେଳେ । ନ ପୋଡ଼େ ପୁଣି ସେ ଅନଳେ ॥
ଯେସନେ ଜଳଜନ୍ତୁଙ୍କର । ଜଳେ ନ ନାଶଇ ଶରୀର ॥୨୮,୨୯
ଧ୍ୱଜ ଚ୍ଛତ୍ର ଚାମର ଛତ୍ରମାନେ । ଶ୍ରୀବତ୍ସ ଚକ୍ରାଦିଭୂଷଣେ ॥
ଏଣେ ଭୂଷିତ ମୂର୍ତ୍ତିମାନ । ଯେ ମୋ ବିଭୂତି କରେ ଧ୍ୟାନ ॥
ସେ କାହିଁ ନୋହେ ପରାଜିତ । ଶୁଣ ଉଦ୍ଧବ ଦେଇ ଚିତ୍ତ ॥୩୦

ଏମନ୍ତେ ଧାରଣା ଧ୍ୟାନେ । ସାଧ୍ୟ କରନ୍ତି ଯୋଗୀଜନେ ॥
ଏ ଅଷ୍ଟାଦଶ ସିଦ୍ଧି ଯେତେ । କିଞ୍ଚିତେ ସାଧନ୍ତି ମୋ ଭକ୍ତେ ॥
ମୋ ନାମ ଶ୍ରବଣ କୀର୍ତ୍ତନେ । ସାଧ୍ୟ କରନ୍ତି ଅଳ୍ପଦିନେ ॥
ସଂସାରେ ଯେତେ ସିଦ୍ଧିଭାବ । ତାହାଙ୍କୁ ନୁହଇ ଦୁର୍ଲଭ ॥୩୧,୩୨
ଏ ଯେତେ ସିଦ୍ଧି ଅଷ୍ଟାଦଶ । ଯୋଗୀଙ୍କ ବିଘ୍ନ ଉପଦେଶ ॥
ଭକତିଯୋଗେ ଜ୍ଞାନଯୋଗେ । ଏ ବିଘ୍ନ ଆଚରନ୍ତି ବେଗେ ॥
ଯେ ଯୋଗୀ ସିଦ୍ଧିପଥେ ଯାନ୍ତି । ବ୍ୟର୍ଥରେ ଦିନ ସେ ହରନ୍ତି ॥
ଭକତି ମାର୍ଗେ ଜ୍ଞାନଯୋଗେ । ଜ୍ଞାନୀ ଲଭନ୍ତି ସିଦ୍ଧି ବେଗେ ॥୩୩
ମୁଁ ସେ ସକଳ ସିଦ୍ଧିଦାତା । ଆତ୍ମାର ଗତି ପିତାମାତା ॥
ମୋ ତହୁଁ ସର୍ବସିଦ୍ଧି ସ୍ଫୁରେ । ଯେ ଜ୍ଞାନଯୋଗ ଏ ସଂସାରେ ॥
ମୁଁ ସର୍ବପତି ହେ ଉଦ୍ଧବ । ଯେ ସାଂଖ୍ୟଯୋଗ ଧର୍ମଭାବ ॥୩୫*
ସକଳପ୍ରାଣୀଙ୍କ ଗୋଚରେ । ମୁଁ ଅଛି ଅନ୍ତର ବାହାରେ ॥
ଯେସନେ ମହାଭୂତରାଶି । ଅନ୍ତର ବାହାରେ ପ୍ରକାଶି ॥
ଧରଇ ଆତ୍ମାରୂପେ ସର୍ବ । କେ ଜାଣିପାରେ ମୋର ଭାବ ॥
ସକଳ ପ୍ରାଣୀଙ୍କ ଗୋଚରେ । ମୋ ବିନୁ ଅନ୍ୟ ନାହିଁ ପରେ ॥
ସକଳ ସିଦ୍ଧିଗୁଣେ ମୁହିଁ । ମୋ ତହୁଁ ଅନ୍ୟ ନାହିଁ କେହି ॥
ଏମନ୍ତ କହି ଭାବଗ୍ରାହୀ । ସଦୟେ ଉଦ୍ଧବକୁ ଗ୍ରୀହିଁ ॥୩୬
ସେ ହରି ଧ୍ୟାନ କରି ଚିତ୍ତେ । ଶ୍ରୀଏକାଦଶ ଭାଗବତେ ॥
ବ୍ରାହ୍ମଣ ଜଗନ୍ନାଥ ଭଣି । ଭକତ ପ୍ରେମତରଙ୍ଗିଣୀ ॥

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ଏକାଦଶସ୍କନ୍ଧେ ଭଗବଦୁଦ୍ଧବସଂବାଦେ ଅଷ୍ଟାଦଶସିଦ୍ଧିବର୍ଣ୍ଣନଂ
ନାମ ଷୋଡ଼ଶୋଽଧ୍ୟାୟଃ ।



* ଶ୍ଳୋକ ୩୪ ର ଅନୁବାଦ ନାହିଁ।

# ସପ୍ତଦଶ ଅଧ୍ୟାୟ*

ଶ୍ରୀହରି ବିଭୂତି ବିଶେଷେ । ବର୍ଣ୍ଣିତ ଅଧ୍ୟା ସପ୍ତଦଶେ ॥

ଉଦ୍ଧବ ବିନୟ ବଚନେ । ବୋଲଇ କୃଷ୍ଣ ସନ୍ନିଧାନେ ॥(ଜ.)

*ଉଦ୍ଧବ ଉବାଚ*

ଭୋ ନାଥ ପ୍ରଭୁ ଭଗବାନ । ତୁମ୍ଭେ ଯେ ଅନାଦିନିଧନ[୧] ॥
ପରମବ୍ରହ୍ମ ତୋ ମହିମା । କେ ଜାଣିପାରେ ଗୁଣସୀମା ॥
ବିଶ୍ୱ ଉତ୍ପତ୍ତି ସ୍ଥିତି ନାଶ । ତୋହର ଚରଣୁଁ ପ୍ରକାଶ ॥ ୧
ସକଳଭୂତେ ତୋର ସ୍ଥିତି । ତୁ ନାଥ ତ୍ରିଭୁବନପତି ॥
ଭକତି କରି ତୋ ଚରଣେ । ଯେ ଭାବେ ମହାଋଷିଗଣେ ॥
ତୋ ପାଦପଦ୍ମ ଯେତେ ସ୍ଥାନେ । ଭଜନ୍ତି ଭକ୍ତି ଅନୁମାନେ ॥
ସେ କଥା କହ ଭଗବାନ । ସଂଶୟ କର ମୋ ଛେଦନ ॥୨,୩
ତୁ ଆତ୍ମା ସର୍ବଭୂତେ ପୂରି । ବସୁ ଗୁପତରୂପ ଧରି ॥
ସକଳ ଦେଖୁ ତୁ ନୟନେ । ତୋତେ ନ ଦେଖେ କେହି ଜଣେ ॥
ତୋହର ମାୟାରେ ଜଗତ । ଅଜ୍ଞାନ ନିଦ୍ରାରେ ମୋହିତ ॥ ୪
ଏ ତିନିପୁରେ ତୋ ବିଭୂତି । ଯହିଁ ବା ଯେଉଁରୂପେ ସ୍ଥିତି ॥
ସକଳ କହ ନାଥ ମୋତେ । ନମଇଁ ତୋର ପାଦଗତେ ॥
ତୋ ପାଦ ସର୍ବତୀର୍ଥ ସ୍ଥାନ । ନମଇଁ ପ୍ରଭୁ ଭଗବାନ ॥ ୫
ଏମନ୍ତ ଶୁଣି ବ୍ରହ୍ମରାଶି । ଉଦ୍ଧବମୁଖ ଚାହିଁ ହସି ॥
ବୋଲନ୍ତି କମଳାର ବର । ଶୁଣ ହେ ଭକତ ଶେଖର ॥(ଜ.)

*ଶ୍ରୀ ଭଗବାନୁବାଚ*

କୁରୁ ପାଣ୍ଡବ ମହାଘୋର । ଯେ କାଳେ ହୋଇଲା ସମର ॥
ଉଭୟ ଦଳ ମଧ୍ୟେ ନେଇ । ସ୍ଥାପିଲି ନନ୍ଦିଘୋଷ ମୁହିଁ ॥

---

୧. ଅନାଦିନିଧନ—ଆଦିଅନ୍ତ ବିହୀନ ।

* ମୂଳ ସଂସ୍କୃତ ଅନୁସାରେ ଷୋଡ଼ଶ ଅଧ୍ୟାୟ ।

ଅର୍ଜୁନ ବନ୍ଧୁବର୍ଗ ଦେଖି । ବସିଲା ସମର ଉପେକ୍ଷି ॥
ମୁଁ ତାକୁ ଅନେକ ବୁଝାଇ । ବହୁତ ଉପଦେଶ ଦେଇ ॥
ଜ୍ଞାନେ ମୋହିଲି ତାର ମନ । ମୋତେ ପଚ୍ଚାରିଲା ଅର୍ଜୁନ ॥
ତିନି ଭୁବନେ ମୋ ବିଭୂତି । ଯହିଁ ଯେମନ୍ତରୂପେ ସ୍ଥିତି ॥
ମୁହିଁ ତାହାକୁ ରଣମଧ୍ୟେ । ପ୍ରସଙ୍ଗେ କହିଲି ଆନନ୍ଦେ ॥
ଏବେ କହିବି ତୋତେ ମୁହିଁ । ଯହିଁ ଯେମନ୍ତ ରୂପେ ଥାଇ ॥୬-୮
ସକଳଭୂତେ ବାସ ମୋର । ମୁଁ ଆତ୍ମା ସୁହୃଦ ଈଶ୍ୱର ॥
ସକଳ ଭୂତମୟ ବ୍ରହ୍ମ । ପ୍ରକୃତି ପୁରୁଷ ପରମ ॥
ମୋହର ତହୁଁ ସୃଷ୍ଟି ଜାତ । ମୁହିଁ ଯେ ପାଳଇ ଜଗତ ॥ ୯
ମୁହିଁ ସଂସାର ଗତି ପତି । କାଳ ସଂହାରଣ ଶକତି ॥
ମୁହିଁ ସେ ସତ୍ତ୍ୱ ରଜ ତମ । ପ୍ରକୃତି ପୁରୁଷ ଉତ୍ତମ ॥୧୦
ମୁହିଁ ମହତ ଅହଙ୍କାର । ସକଳ ଜୀବ ସୂକ୍ଷ୍ମସାର ॥
ଦୁର୍ଜୟ ମଧ୍ୟେ ମନ ମୁହିଁ । ବେଦେ ହିରଣ୍ୟଗର୍ଭ ହୋଇ ॥
ସକଳ ମନ୍ତ୍ର ମଧ୍ୟେ ସାର । ତ୍ରିଧାମ ବ୍ରହ୍ମ ମୁଁ ଓଁକାର ॥
ଅକାର ଅକ୍ଷରଙ୍କ ମଧ୍ୟେ । ଗାୟତ୍ରୀଛନ୍ଦ ବେଦବାଦେ ॥୧୧,୧୨
ଦେବଙ୍କ ମଧ୍ୟେ ଇନ୍ଦ୍ର ମୁହିଁ । ବସୁଙ୍କ ମଧ୍ୟେ ଅଗ୍ନି ହୋଇ ॥
ବିଷ୍ଣୁ ମୁଁ ଆଦିତ୍ୟ ମଧ୍ୟରେ । ନୀଳଲୋହିତ ରୁଦ୍ରଙ୍କରେ ॥୧୩
ବ୍ରହ୍ମରଷିରେ ଭୃଗୁ ମୁହିଁ । ରାଜରଷିରେ ମନୁ ହୋଇ ॥
ଦେବରଷିରେ ମୁଁ ନାରଦ । ମୁଁ କାମଧେନୁ ଧେନୁମଧ୍ୟ ॥୧୪
ପକ୍ଷୀଙ୍କ ମଧ୍ୟେ ଖଗେଶ୍ୱର । ମୁଁ ଦକ୍ଷ ପ୍ରଜାପତି ସାର ॥
ପିତୃଗଣଙ୍କ ମଧ୍ୟେ ବର । ଅର୍ଯ୍ୟମା ନାମଟି ମୋହର ॥୧୫
ପ୍ରହ୍ଲାଦ ଦୈତ୍ୟ ମଧ୍ୟେ ମୁହିଁ । ନକ୍ଷତ୍ର ମଧ୍ୟେ ଚନ୍ଦ୍ର ହୋଇ ॥
ଯକ୍ଷଙ୍କ ମଧ୍ୟେ ମୁଁ କୁବେର । ଅଇରାବତ ଗଜସାର ॥
ଜଳଚରଙ୍କ ମଧ୍ୟେ ଜାଣ । ଉଦ୍ଧବ ମୁହିଁଟି ବରୁଣ ॥
ତେଜସ୍ୱୀ ମଧ୍ୟେ ରବି ମୁହିଁ । ମନୁଷ୍ୟେ ନୃପତି ବୋଲାଇ ॥୧୬,୧୭

ଅଶ୍ୱଙ୍କ ମଧ୍ୟରେ ଉତ୍ତମ । ଉଚ୍ଚଇଶ୍ରବା ମୋର ନାମ ॥
ଧାତୁଙ୍କ ମଧ୍ୟେ ମୁଁ ସୁବର୍ଣ୍ଣ । ସଂଯମକର୍ତ୍ତା ମଧ୍ୟେ ଯମ ॥
ସର୍ପଙ୍କ ମଧ୍ୟେ ମୁଁ ବାସୁକି । ଅନନ୍ତ ନାଗ ମଧ୍ୟେ ଲେଖି ॥
ମୃଗଙ୍କ ମଧ୍ୟେ ସିଂହ ମୁହିଁ । ଆଶ୍ରମେ ସନ୍ନ୍ୟାସ ବୋଲାଇ ॥
ମୁଁ ବିପ୍ର ତ୍ରିବର୍ଣ୍ଣପତି । ତୀର୍ଥଙ୍କ ମଧ୍ୟେ ଭାଗୀରଥୀ ॥
ତଡ଼ାଗ ମଧ୍ୟେ ସିନ୍ଧୁ ମୁହିଁ । ଶସ୍ତ୍ରଙ୍କ ମଧ୍ୟେ ଧନୁ ହୋଇ ॥
ଧନୁକୀ[୧] ମଧ୍ୟେ ମୁହିଁ ହର । ପର୍ବତେ ମେରୁ ମହୀଧର ॥
ଗହନ ମଧ୍ୟେ ହିମଗିରି । ବୃକ୍ଷେ ଅଶ୍ୱତ୍ଥ ରୂପ ଧରି ॥
ଶସ୍ୟଙ୍କ ମଧ୍ୟେ ଧାନ୍ୟ* ମୁହିଁ । ଆଗ୍ରର୍ଯ୍ୟେ ବଶିଷ୍ଠ ବୋଲାଇ ॥
ମୁଁ ବୃହସ୍ପତି ବ୍ରହ୍ମବାଦେ । କୁମାର ଦେବସେନା ମଧ୍ୟେ ॥
ଅଗ୍ରଣୀମାନଙ୍କ ମଧ୍ୟରେ । ବ୍ରହ୍ମା ମୁଁ ବୋଲାଇ ବେଭାରେ ॥୧୮-୨୨
ଯଜ୍ଞମାନଙ୍କ ମଧ୍ୟେ ପୁଣ । ମୁଁ ବ୍ରହ୍ମଯଜ୍ଞ ବୋଲି ଜାଣ ॥
ବ୍ରତମାନଙ୍କ ମଧ୍ୟେ ମୁହିଁ । ଅହିଂସା ବୋଲି ଜାଣ ତୁହି ॥
ପବନ ଅଗ୍ନି ଅର୍କ ଜଳ । ବଚନ ଆତ୍ମା ଯେ ନିର୍ମଳ ॥
କରନ୍ତି ତହିଁ ମଧ୍ୟେ ଥାଇ । ସକଳ ଶୁଚି ମୁଁ କରଇ ॥୨୩
ଯୋଗଙ୍କ ମଧ୍ୟେ ମୁଁ ସମାଧି । ଜିଣିବା ଲୋକ ମନ୍ତ୍ରବିଧି[୨] ॥
କୌଶଳମାନଙ୍କରେ ମୁହିଁ । ଆତ୍ମା ବିବେକ ବିଦ୍ୟା ହୋଇ ॥୨୪
ମୁଁ ଶତରୂପା ନାରୀଙ୍କରେ । ମୁଁ ସ୍ୱାୟମ୍ଭୁବ ପୁରୁଷରେ ॥
ମୁନିଙ୍କ ମଧ୍ୟେ ସାଧୁଗୁଣ । ମୁହିଁଟି ନରନାରାୟଣ ॥
ମୁଁ ପୁଣି ବ୍ରହ୍ମଚାରୀଙ୍କର । ମଧ୍ୟରେ ସନତକୁମାର ॥୨୫
ଧର୍ମମାନଙ୍କ ମଧ୍ୟେ ପୁଣ । ସନ୍ନ୍ୟାସଧର୍ମ ବୋଲି ଜାଣ ॥
ଅଭୟ ସ୍ଥାନମାନଙ୍କରେ । ଅନ୍ତର ନିଷ୍ଠା ମୁଁ ବେଭାରେ ॥
ମୁଁ ସତ୍ୟ ଗୁହ୍ୟଗଣ ମାଝେ । ବତ୍ସର କାଳ ଯୁଗକାର୍ଯ୍ୟେ ॥

୧. ଧନୁକୀ—ଧନୁର୍ଦ୍ଧର । ୨. ମନ୍ତ୍ରବିଧି—ନୀତିବଳ ।

* 'ଧାନ୍ୟ' ପରିବର୍ତ୍ତେ ସଂସ୍କୃତରେ 'ଯବ' ଉଲ୍ଲେଖ ଅଛି ।

ଋତୁଙ୍କ ମଧ୍ୟେ ମୁଁ ବସନ୍ତ । ଅଗ୍ରହାୟଣ[୧] ମାସନାଥ ॥
ନକ୍ଷତ୍ର ମଧ୍ୟେ ଅଭିଜିତ । ଯୁଗଙ୍କ ମଧ୍ୟେ ମୁହିଁ ସତ୍ୟ ॥
ଧୀରଙ୍କ ମଧ୍ୟେ ମୁଁ ଦେବଳ । ବ୍ୟାସେ ମୁଁ ସତ୍ୟବତୀବାଳ ॥
କବିଙ୍କ ମଧ୍ୟେ ଶୁକ୍ର ମୁହିଁ । ମୋ ରୂପ ଭକ୍ତ ମଧ୍ୟେ ତୁହି ॥
ବାନର ମଧ୍ୟେ ହନୁମାନ । ମୁଁ ବିଦ୍ୟାଧରେ ସୁଦର୍ଶନ ॥୨୬-୨୯
ସୁନ୍ଦର ମଧ୍ୟେ ପଦ୍ମକୋଷ । ମୁଁ ତୃଣମାନଙ୍କରେ କୁଶ ॥
ହବିଙ୍କ ମଧ୍ୟେ ଗବ୍ୟଘୃତ । ରତ୍ନେ ମୁଁ ପଦ୍ମରାଗ ଖ୍ୟାତ ॥୩୦
ବ୍ୟବସାୟୀଙ୍କ ଲକ୍ଷ୍ମୀ ମୁହିଁ । କପଟ ମଧ୍ୟେ ଦ୍ୟୁତ ହୋଇ ॥
ସତ୍ତ୍ୱ ମୁଁ ଜାଣ ସତ୍ତ୍ୱବନ୍ତେ । ଇନ୍ଦ୍ରିୟବଳ ବଳବନ୍ତେ ॥
ଯେ ପୁଣି ଭାଗବତ ଜନ । ମୁଁ ତାଙ୍କ ଭକ୍ତିକର୍ମମାନ ॥
ବାସୁଦେବ ଯେ ସଙ୍କର୍ଷଣ । ପ୍ରଦ୍ୟୁମ୍ନ ଅନିରୁଦ୍ଧ ପୁଣ ॥
ନାରାୟଣ କୋଳ[୨] ନୃସିଂହ । ଯେ ହୟଗ୍ରୀବ ପିତାମହ ॥
ଏ ନବମୂର୍ତ୍ତି ଆଦିଦେବ । ମୁଁ ବାସୁଦେବ ହେ ଉଦ୍ଧବ ॥୩୧,୩୨
ଗନ୍ଧର୍ବେ ବିଶ୍ୱାବସୁ ଖ୍ୟାତି । ଅପ୍ସରା ମଧ୍ୟେ ପୂର୍ବଚିତ୍ତି ॥
ପର୍ବତ ମଧ୍ୟେ ସ୍ଥିରଭାବ । ଭୂମିର ଗନ୍ଧ ମୁଁ ଉଦ୍ଧବ ॥୩୩
ପରମ ରସ ଭୂମିରସେ[୩] । ଶବଦ ସଂଗ୍ରହ ଆକାଶେ ॥
ପ୍ରଭା ମୁଁ ରବିଶଶାଙ୍କର । ତେଜସ୍ୱୀ ମଧ୍ୟେ ଦିବାକର ॥୩୪
ମୁଁ ଦାତା ବଳି ନୃପମଣି । ଅର୍ଜୁନ ବୀର ମଧ୍ୟେ ଗଣି ॥
ପ୍ରାଣୀମାନଙ୍କ ମୁଁ ନିଶ୍ଚୟ । ଉତ୍ପତ୍ତି ସ୍ଥିତି ଯେ ପ୍ରଳୟ ॥୩୫
ସର୍ବ ଇନ୍ଦ୍ରିୟମାନଙ୍କର । ମୁହିଁ ସେ ବିଷୟ ଗୋଚର ॥୩୬
ପୃଥିବୀ ପବନ ଆକାଶ । ସଲିଳ ଅନଳ ପୁରୁଷ ॥
ପ୍ରକୃତି ସତ୍ତ୍ୱ ରଜ ତମ । ବିକାର ମହତ ପରମ ॥
ମୁଁ ଗୁଣ ଗୁଣୀ ମୁହିଁ ଜୀବ । ନିର୍ଗୁଣ ମୁହିଁ ସଦାଶିବ ॥
ମୁଁ ଆତ୍ମା ସର୍ବଜୀବ ଦେହୀ । ମୋ ବିନୁ ସ୍ଥୂଳ ସୂକ୍ଷ୍ମ ନାହିଁ ॥୩୭,୩୮

---

୧. ଅଗ୍ରହାୟଣ—ମାର୍ଗଶିର । ୨. କୋଳ—ବରାହ । ୩. ଭୂମିରସେ—ଜଳରେ ।

କେ ମୋତେ ତ୍ରିଭୁବନେ ଜାଣେ । କେ ଅବା ସୂକ୍ଷ୍ମରେଣୁ ଗଣେ ॥
ତେଜ ସମ୍ପଦ ଅଇଶ୍ୱର୍ଯ୍ୟ । ତିତିକ୍ଷା ଜ୍ଞାନ ଲାଜ ବୀର୍ଯ୍ୟ ॥
ଭାଗ୍ୟ ସୌଭଗ[୧] ତ୍ୟାଗ ଯଶ । ଏ ସର୍ବ ଜାଣ ମୋର ଅଂଶ ॥୩୯,୪୦
ଯେଣୁ ତୁ ସାଧୁ ଶୁଦ୍ଧମତି । ତେଣୁ କହିଲି ମୋ ବିଭୂତି ॥
ସଂସାରେ ଦେଖୁ ଯେତେ ଅଂଶ । ଏ ସର୍ବ ମନର ବିଳାସ ॥
ବିଜୁଳି ଗଗନେ ଯେସନ । ଶୟନେ ଯେସନେ ସ୍ୱପନ ॥୪୧
ଏବେ ତୁ ବୁଝି ମୋ ବଚନ । ସାଧ ତୁ ଏ ମନ ପବନ ॥
ସର୍ବ ସଂକଳ୍ପ ଛାଡ଼ ତୁହି । ସକଳ କର୍ମ ମୋତେ ଦେଇ ॥
ଏକାନ୍ତେ ବୀର ଭଜ ମୋତେ । ସଂସାର ଚିନ୍ତା ଛାଡ଼ି ଚିତ୍ତେ ॥
ମୋର ବଚନ ଅନୁସର । ଏ ଭବଜଳୁଁ ହୁଅ ପାର ॥୪୨-୪୪
ହରି ଚରଣେ ଦେଇ ଚିତ୍ତ । କହଇ ଦାସ ଜଗନ୍ନାଥ ॥
ଉଦ୍ଧବ କୃଷ୍ଣର ସଂବାଦ । ଶୁଣନ୍ତେ ନ ଲାଗେ ପ୍ରମାଦ ॥

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ଏକାଦଶସ୍କନ୍ଧେ ଶ୍ରୀକୃଷ୍ଣୋଦ୍ଧବସଂବାଦେ ବିଭୂତିଯୋଗକଥନଂ
ନାମ ସପ୍ତଦଶୋଽଧ୍ୟାୟଃ ।

❑❑❑

# ଅଷ୍ଟାଦଶ ଅଧ୍ୟାୟ*

ଗୃହସ୍ଥ ବ୍ରହ୍ମଚାରୀ ଧର୍ମ । ଅଷ୍ଟାଦଶରେ ଏ ବର୍ଣ୍ଣନ ॥

*ଉଦ୍ଧବ ଉବାଚ*

ଭକ୍ତି ଲକ୍ଷଣ ଶୁଣି କର୍ଣ୍ଣେ । ଉଦ୍ଧବ ଆନନ୍ଦ ବଚନେ ॥
ଦେହ ପୁଲକେ ରୋମରାଜି । ଭାବ ଗଦ୍‌ଗଦେ ଚକ୍ଷୁ ବୁଜି ॥(ଜ.)
ବୋଲଇ ହେ ମଧୁସୂଦନ । ଭକ୍ତି ସଂଶୟ ବିମୋଚନ ॥

୧. ସୌଭଗ—ସୌନ୍ଦର୍ଯ୍ୟ ।
* ମୂଳ ସଂସ୍କୃତ ଅନୁସାରେ ସପ୍ତଦଶ ଅଧ୍ୟାୟ ।

ଯେ ଧର୍ମ ଭକ୍ତିର ଲକ୍ଷଣ* । ଶ୍ରୀମୁଖେ କହିଲ ଆପଣ ॥
ସ୍ୱଧର୍ମ ସାଧି କେଉଁମତେ । ବୈଷ୍ଣବ ଲକ୍ଷଣ ଯୁକତେ ॥୧,୨
ପୂର୍ବେ ଯେ ହଂସରୂପ ଧରି । ବ୍ରହ୍ମାପୁତ୍ରଙ୍କୁ ଦୟା କରି ॥
ପରମଧର୍ମ କଥା ଯେତେ । କହିଲ ତାହାଙ୍କ ଅଗ୍ରତେ ॥ ୩
ସେ ଧର୍ମ କାଳେ ନଷ୍ଟ ଗଲା । ସଂସାରେ କେହି ନ ପାଳିଲା ॥
ଏବେ ଏ କ୍ଷିତି ତଳେ ପୁଣି । କେ ତାହା ତୁମ୍ଭ ବିନୁ ଜାଣି ॥
ସେ ଧର୍ମ କହିପାରୁ ତୁହି । ତୋ ତହୁଁ କର୍ତ୍ତା ବକ୍ତା ନାହିଁ ॥
ବ୍ରହ୍ମାସଦନେ ସୁରଲୋକେ । ତୋ ବିନୁ କେ କହିବ ଏକେ ॥୪,୫
ସଙ୍ଗତେ ଜ୍ଞାନ ଧର୍ମ ଘେନି । ତୁ ନାଥ ତେଜିବୁ ଅବନୀ ॥
ସେ ଧର୍ମ ଗୁଢ଼ତତ୍ତ୍ୱ ଜାଣି । କେ ତାହା କହୁ ପରିମାଣି ॥
ତୁ ସର୍ବ ଧର୍ମ-ଜ୍ଞାନଦାତା । ତୁ ସର୍ବକର୍ତ୍ତା ବକ୍ତା ପିତା ॥
ଭକ୍ତିଲକ୍ଷଣ ଧର୍ମ ଯେତେ । ଭୋ ନାଥ କହ ମୋ ଅଗ୍ରତେ ॥୬,୭
ଏମନ୍ତ ଉଦ୍ଧବ ବଚନ । ଶୁଣି କହନ୍ତି ଭଗବାନ ॥ ୮

*ଶ୍ରୀ ଭଗବାନୁବାଚ*

ଶୁଣ ହେ ଭକତ ଶେଖର । ଯେ ବର୍ଣ୍ଣାଶ୍ରମ ଧର୍ମାଗ୍ରର ॥
ମୁଁ ସତ୍ୟଯୁଗେ ହଂସରୂପେ । ବ୍ରହ୍ମାର ପୁତ୍ରଙ୍କ ସମୀପେ ॥
ପ୍ରଥମଯୁଗେ ଶୁକ୍ଳବର୍ଣ୍ଣେ । ମୁହିଁ ପ୍ରବର୍ତ୍ତାଇଲି ଜନେ ॥୯,୧୦
ଓଁକାର ରୂପେ ଥିଲା ବେଦ । କେହି ନ ଜାଣେ ତାର ଭେଦ ॥
ମୁଁ ଧର୍ମ ବୃଷରୂପ ଧରି । ସେ ବେଦ ଲୋକରେ ବିସ୍ତାରି ॥
ଏଣୁ ସେ ଯୁଗେ ଯେତେ ନର । ସକଳେ ସତ୍ୟଧର୍ମପର ॥
ମନ ବଚନ ହୃଦେ ଧରି । ମୋତେ ଭଜନ୍ତି ତପ କରି ॥
ଚିତ୍ତେ ଚିନ୍ତନ୍ତି ଧର୍ମ ଯେତେ । ସମୀପେ ମିଳନ୍ତି ସମସ୍ତେ ॥୧୧
ଏମନ୍ତ ସତ୍ୟଯୁଗ ଗଲା । ଶୁଣ ଉଦ୍ଧବ ମୋର ଲୀଳା ॥

* ଏହା ଦ୍ୱାଦଶ ଅଧ୍ୟାୟରେ ବର୍ଣ୍ଣିତ ଭକ୍ତି ଓ ଭକ୍ତର ଲକ୍ଷଣକୁ ସଂକେତ କରୁଛି ।

ତ୍ରେତୟାଯୁଗେ ମୋର ଦେହୀ । ଯଜ୍ଞପୁରୁଷେ ଜାତ ହୋଇ ॥
ବେଦ ଉଚିତ ଯଜ୍ଞମାର୍ଗେ । ଧର୍ମ ପ୍ରଚାର ଭୂମିଭାଗେ ॥୧୨
ମୋ ପାଦ ଊରୁ ଭୁଜାନନେ । ଜନ୍ମ ହୋଇଲେ ଚାରିବର୍ଣ୍ଣେ ॥
ମୋ ଭୁଜୁଁ ଜନ୍ମ କ୍ଷତ୍ରି ଜାତି । ଊରୁରୁ ବୈଶ୍ୟ ଉତପତ୍ତି ॥
ମୁଖୁଁ ବ୍ରାହ୍ମଣ ମୋର ଜାତ । ଶୁଦ୍ର ମୋ ଚରଣୁଁ ସମ୍ଭୂତ ॥
ଏଣୁ ମୁଁ ପୁରୁଷ ପୁରାଣ । ଈଶ୍ୱର ବ୍ରହ୍ମାଣ୍ଡକାରଣ ॥୧୩
ବିରାଟ ପୁରୁଷ ମୋ ଗତି । ମୋ ତହୁଁ ସୃଷ୍ଟି ଉତପତ୍ତି ॥
ମୋର ଜଘନୁଁ ଗୃହକାରୀ[୧] । ହୃଦୟପଦ୍ମୁଁ ବ୍ରହ୍ମଚାରୀ ॥
ମୋ ବକ୍ଷସ୍ଥଳୁଁ ବନବାସୀ । ମସ୍ତକୁଁ ଜନ୍ମିଲେ ସନ୍ନ୍ୟାସୀ ॥୧୪
ଏ ସର୍ବବର୍ଣ୍ଣ ସର୍ବାଶ୍ରମ । ସମ୍ଭବ ଉଚ୍ଚ ନୀଚ ସ୍ଥାନ ॥
ପ୍ରକୃତି ଜନ୍ମ ଅନୁସାରେ । ସ୍ୱଭାବ ଆଚାର ବେଭାରେ ॥
ଉତ୍ତମ ସଙ୍ଗେ ସଙ୍ଗ ଯାର । ସେ କରେ ଉତ୍ତମ ବେଭାର ॥
ହୀନ ସଙ୍ଗତେ ହୀନଗତି । ହସି କହନ୍ତି ଯଦୁପତି ॥୧୫
ଉଦ୍ଧବ ଏକମନେ ଶୁଣ । ବ୍ରାହ୍ମଣ ଆଦି ଯେ ଲକ୍ଷଣ ॥
ତପ ଶଉଚ ଶମ ଦମ । ମୋର ଭକତି ଅନୁପମ ॥
ସତ୍ୟ ସନ୍ତୋଷ କ୍ଷମା ଦୟା । ଆର୍ଜବ[୨] ହୃଦୟ ନିର୍ମାୟା ॥
ଏ ସର୍ବ ବ୍ରାହ୍ମଣ ଲକ୍ଷଣ । ଏବେ କ୍ଷତ୍ରିୟ ଗୁଣ ଶୁଣ ॥୧୬
ତେଜ ଶଉର୍ଯ୍ୟ ବଳ ସ୍ଥୈର୍ଯ୍ୟ । ତିତିକ୍ଷା ଉଦ୍ୟମ ଔଦାର୍ଯ୍ୟ ॥
ବିପ୍ରଭକତି ଧୃତିମନ୍ତ । ବିକ୍ରମ ଐଶ୍ୱର୍ଯ୍ୟ ସଂଯୁକ୍ତ ॥
କ୍ଷତ୍ରିୟ ଲକ୍ଷଣ ଏ ଜାଣ । ଆବର ଶୁଣ ବୈଶ୍ୟ ଗୁଣ ॥୧୭
ଆସ୍ତିକ ବିପ୍ରସେବା ଦାନ । ଅଦମ୍ଭ କୃଷି ଗୋରକ୍ଷଣ ॥
କ୍ରୟ ବିକ୍ରୟ ସାଧୁମତେ । ଧନସଞ୍ଚୟ ଧର୍ମଯୁକ୍ତେ ॥
ବୈଶ୍ୟର କୁଳଧର୍ମ ଏହି । ଏବେ ହୋ ଶୂଦ୍ରଧର୍ମ କହି ॥୧୮
ଦେବତା ଗୋରୁ ଦ୍ୱିଜଜନେ । ସେବା କରିବ ଅନୁକ୍ଷଣେ ॥

୧. ଗୃହକାରୀ—ଗୃହସ୍ଥ । ୨. ଆର୍ଜବ—ସରଳତା, ନିଷ୍କପଟତା ।

ଲାଭେ[୧] ପୋଷିବ ନିଜ କାୟା । କେବେହେଁ ନ କରିବ ମାୟା ॥
ଶୂଦ୍ରଜନର ଏ ବେଭାର । ଶୁଣ ହୀନଜନ ଆଗର ॥୧୯
ଅସତ୍ୟ ବାକ୍ୟ ଦମ୍ଭ କାମ । ନାସ୍ତିକ୍ୟ କ୍ରୋଧ ହତଜ୍ଞାନ ॥
ବିରୋଧ ବାଦ କୁବଚନ । କଳହ ଆଗ୍ରର ଲଂଘନ ॥
ପରହିଂସନ ପରବାଦ । ପର ରମଣୀ ଧନେ ସଧ ॥
ନୀଚଜନର ଏ ସ୍ୱଭାବ । ସାମାନ୍ୟ ଶୁଣ ହେ ଉଦ୍ଧବ ॥୨୦
ନ ଥିବ ହିଂସା ଚୋରି ଦମ୍ଭ । ଆବର କାମ କ୍ରୋଧ ଲୋଭ ॥
ସତ୍ୟବଚନ ପ୍ରିୟବାଣୀ । ହିତ ସୁହୃଦ ଯେତେ ପ୍ରାଣୀ ॥
ଏ ସର୍ବବର୍ଣ୍ଣ ସାଧାରଣ । ସ୍ୱଧର୍ମ ସ୍ୱଭାବ ପ୍ରମାଣ ॥୨୧
ବ୍ରାହ୍ମଣ ଆଦି ଯଥାକ୍ରମେ । ଯେ ଥିବେ ଯେମନ୍ତ ଆଶ୍ରମେ ॥
ବ୍ରାହ୍ମଣ ଆଶ୍ରମ ବ୍ୟବସ୍ଥା । ଶୁଣ ଉଦ୍ଧବ ସାଧୁକଥା ॥
ବ୍ରାହ୍ମଣକୁଳେ ଜନ୍ମ ହୋଇ । ବେଦପଠନେ ଦୀକ୍ଷା ପାଇ ॥
ଗାୟତ୍ରୀମନ୍ତ୍ର ଗୁରୁ ମୁଖେ । ଜାଣି ସେବିବ ଗୁରୁପାଖେ ॥
ବେଦପଠନ ଦିନେ ଦିନେ । କରିବ ଗୁରୁ ସନ୍ନିଧାନେ ॥୨୨
ଯଜ୍ଞୋପବୀତ କନ୍ଧେ କରି । ତ୍ରିଦଣ୍ଡ କମଣ୍ଡଳୁ ଧରି ॥
ପିନ୍ଧି କୃଷ୍ଣାଜିନ ମେଖଳା । ଅଧୌତ ବାସ ଅକ୍ଷମାଳା ॥
ଧରିଣ ଜଟା କୁଶମାନ । ନ କରି ଦନ୍ତ ଘରଷଣ* ॥
ମନ୍ତ୍ର ପଠନ ଜପ ହୋମ । ମାର୍ଜନ[୨] ଭୋଜନ ନିୟମ ॥
ଏ ଆଦିψ କର୍ମ ବ୍ରହ୍ମଚାରୀ । କରିବ ମଉନ ଆଚରି ॥
କର ଚରଣ ନଖ ଯେତେ । ଯେ ଲୋମ କକ୍ଷ ଲିଙ୍ଗ ଗାତ୍ରେ ॥
ଦୀକ୍ଷା ସମ୍ପୂର୍ଣ୍ଣ ଯାଏ ଧରି । କେବେହେଁ ବପନ[୩] ନ କରି ॥୨୩,୨୪

---

୧. ଲାଭେ—ସେବାରୁ ଲବ୍ଧ ଧନାଦି ବସ୍ତୁ ଦ୍ୱାରା । ୨. ମାର୍ଜନ—ସ୍ନାନ । ୩. ବପନ—କ୍ଷୌର ।

* ଏଠାରେ ସୌନ୍ଦର୍ଯ୍ୟ ବୃଦ୍ଧି ଉଦ୍ଦେଶ୍ୟରେ ଦନ୍ତମାର୍ଜନ ଓ ବସ୍ତ୍ର ପ୍ରକ୍ଷାଳନ କରିବାକୁ ମନା କରାଯାଇଛି ।

ψ 'ଆଦି' ଶବ୍ଦରୁ ମଳମୂତ୍ରତ୍ୟାଗ କର୍ମ ଗ୍ରହଣୀୟ ।

ନିରତେ ଥିବ ଯେ ସଂଯତେ । ବୀର୍ଯ୍ୟ ନ ଦେବ ଯୋନିପଥେ ॥
ଯଦ୍ୟପି ନିଦ୍ରାଗତ କାଳେ । ସ୍ୱପ୍ନ ଗୋଚରେ ବୀର୍ଯ୍ୟ ଟଳେ ॥
ବେଗେ ପ୍ରଭାତୁ ସ୍ନାନ କରି । ହୃଦୟେ ଗାୟତ୍ରୀ ସୁମରି ॥
ଜପ କରିବ ହସ୍ତରେଖେ । ଉଭାରି ରବି ଅଭିମୁଖେ ॥୨୫
ଗୁରୁଚରଣେ ନମସ୍କାର । ଯତ୍ନେ କରିବ ସପ୍ତବାର ॥
ଗୋରୁ ବ୍ରାହ୍ମଣ ଗୁରୁପାଦେ । ଦେବତା ଅଗ୍ନି ରବି ବୃଦ୍ଧେ ॥
ସେବିବ ବେନି ସଂଧ୍ୟାମାନେ । ଗାୟତ୍ରୀ ଜପିବ ମଉନେ ॥୨୬
ସାକ୍ଷାତେ ଗୁରୁ ଯେ ଈଶ୍ୱର । ଗୁରୁଙ୍କୁ ନ ମଣିବ ନର ॥
ଗୁରୁଟି ସର୍ବଦେବମୟେ । ମୁହିଁ ବସଇ ଗୁରୁ ଦେହେ ॥
ଏ ଘେନି ଗୁରୁ ଭଗବାନ । ନୁହନ୍ତି ମନୁଷ୍ୟ ସମାନ ॥୨୭
ସ୍ୱଧର୍ମେ ନିରତେ ପ୍ରଭାତେ । ଭିକ୍ଷା ମାଗିବ ନିତ୍ୟେ ନିତ୍ୟେ ॥
ଗୁରୁ ସମୀପେ ତାହା ନେଇ । ଥୋଇବ ଶିରେ କର ଦେଇ ॥
ପ୍ରସନ୍ନେ ଗୁରୁ ଦେବେ ଯେତେ । ତାହା ଭୁଞ୍ଜିବ ଶୁଦ୍ଧ ଚିତ୍ତେ ॥୨୮
ଗୁରୁ ବଚନେ ଅବଧାନେ । ରଜନୀ ବଞ୍ଚିବ ମଉନେ ॥
ଗୁରୁ ସମୀପେ ଭୃତ୍ୟପ୍ରାୟେ । ପ୍ରଥମେ ଥିବ ଯେ ଉଭାଏ ॥
ଗୁରୁ ବଚନ ଆଜ୍ଞା ପାଇ । ବସିବ ଗୁରୁମୁଖ ଚାହିଁ ॥
ସଭୟେ ସମୀପେ ବସିବ । ଚରଣଅଗ୍ର ନ ଦିଶିବ ॥
ଅଳପ ଦୂରେ ଉଭା ହୋଇ । କର ଯୁଗଳ ଶିରେ ଦେଇ ॥
ନିତ୍ୟେ ନମିବ ଗୁରୁପାଦେ । ବେଦପଠନ ଅନୁବାଦେ ॥
ଏରୂପେ ଗୁରୁସେବା କରି । ଦିନ ବଞ୍ଚିବ ବ୍ରହ୍ମଚାରୀ ॥୨୯
ଏ ଦେହସୁଖ ଦିନେ ଦିନେ । କେବେହେଁ ନ ଚିନ୍ତିବ ମନେ ॥
ଯାବତ ବିଦ୍ୟାପୂର୍ଣ୍ଣ ନୋହେ । ତାବତ ଗୁରୁଦୀକ୍ଷା ବହେ ॥
ମନ ବଚନ ନିଜ ଦେହେ । ନିତ୍ୟେ ସେବିବ ଗୁରୁପାୟେ ॥
ମୋତେ ପୂଜିବ ଗୁରୁଦେହେ । ମୋ ତହୁଁ ଗୁରୁ ଭିନ୍ନ ନୋହେ ॥୩୦

ଯଦି ସେ ବ୍ରହ୍ମଚାରୀ ଜନ । ବ୍ରହ୍ମଲୋକକୁ ଥିବ ମନ ॥
ଗୁରୁଙ୍କୁ ଦେହ ସମର୍ପଣ । କରି ଶୁଝିବ ଗୁରୁଋଣ ॥୩୧
ଅଗ୍ନିରେ ଗୁରୁରେ ଆତ୍ମାରେ । ମୁଁ ଅଛି ସକଳ ଭୂତରେ ॥
ମୋତେ କରିବ ଉପାସନ । ବୁଦ୍ଧି ନ କରି ଭିନ୍ନାଭିନ୍ନ ॥୩୨
ନିତ୍ୟେ ସଂଯତ ବ୍ରହ୍ମଚାରୀ । ନୟନେ ନ ଦେଖିବ ନାରୀ ॥
ସ୍ତ୍ରୀସଙ୍ଗୀ ସଙ୍ଗେ ସମ୍ଭାଷଣ । କେବେହେଁ ନୋହିବଟି ପୁଣ ॥
ତମ ରାଜସ ପ୍ରାଣୀ ଯେତେ । ସଙ୍ଗ ନୋହିବ କଦାଚିତେ ॥
ଯେଣୁ ଏ ଦୁଷ୍ଟଜନ ସଙ୍ଗ । କରଇ ନିଜ ଧର୍ମ ଭଙ୍ଗ ॥୩୩
ଶଉଚ ସ୍ନାନ ଆଚମନ । ତ୍ରିସନ୍ଧ୍ୟା ସନ୍ଧ୍ୟା ଉପାସନ ॥
ତୀର୍ଥଗମନ ଜପ ହୋମ । ମୋ ନାମ ଶ୍ରବଣ କୀର୍ତ୍ତନ ॥
ମୋର ଚରଣ ସେବା ଯେତେ । ସଂଯତେ କରିବ ନିରତେ ॥
ଅସାଧୁ ସଙ୍ଗେ ସମ୍ଭାଷଣ । ଯେ ଅବା ଅଭକ୍ଷ୍ୟ ଭକ୍ଷଣ ॥
ଏ ଆଦି ଧର୍ମର ଲଂଘନେ । କେବେହେଁ ନ ଚିନ୍ତିବ ମନେ ॥
ସର୍ବ ଆଶ୍ରମ ସାଧାରଣ । ଏ ଧର୍ମ ସମାନ ଲକ୍ଷଣ ॥
ସଂଯମେ ମନ ବାକ୍ୟ ଧରି । ଏତେ ଲକ୍ଷଣେ ବ୍ରହ୍ମଚାରୀ ॥୩୪,୩୫
ଏରୂପେ ବ୍ରାହ୍ମଣ ପ୍ରଶସ୍ତ । ସାଧିବ ବ୍ରହ୍ମଚାରୀ ବ୍ରତ ॥
ଏମନ୍ତ ବ୍ରତେ ବ୍ରହ୍ମଚାରୀ । ବିରାଜେ ଅଗ୍ନିରୂପ ଧରି ॥
ମୋର ଭକତ ଏ ଶୟଳେ । ମୋ ସେବା ତୀବ୍ର ତପୋବଳେ ॥
ଦୁରିତ ଯେତେ ତାର ଦେହେ । ମୋ ଭାବ ଅଗ୍ନିକୁଣ୍ଡେ ଦହେ ॥୩୬
ଏମନ୍ତେ ବିପ୍ର ବ୍ରହ୍ମଚାରୀ । ଯଦି ସକଳ ବେଦ ଧରି ॥
ତାତ ଜନନୀଙ୍କୁ ଜଣାଇ । ଦକ୍ଷିଣା ଗୁରୁପାଦେ ଦେଇ ॥
ଗୁରୁବଚନ ଶିରେ ଧରି । ବେଦ ଉତ୍ସର୍ଗେ ସ୍ନାନ କରି ॥
ଛାଡ଼ିବ ବ୍ରହ୍ମଚାରୀ ବେଶ । ବନେ ବା ଭୁବନେ ପ୍ରବେଶ ॥
ଏମନ୍ତେ ନିଜ ଭାବେ ଥିବ । ଯେ ପୂର୍ବ ଆଶ୍ରମ ସ୍ୱଭାବ ॥
ଅନ୍ୟ ଆଶ୍ରମ ଯେବେ ଭଜି । ପୂର୍ବ ଆଶ୍ରମ ତେବେ ତେଜି ॥୩୭,୩୮

ଯଦି ବ୍ରାହ୍ମଣ ବ୍ରହ୍ମଚାରୀ । ଗୃହ ଆଶ୍ରମେ ଚିତ୍ତ ଧରି ॥
ବିଚାରି କନ୍ୟା କୁଳବତୀ । ରୂପ ଲକ୍ଷଣ ତାର ଚିନ୍ତି ॥
ବୟସ ଆକୃତି ପରିମାଣି । କନ୍ୟା ଏରୂପେ ସୁଲକ୍ଷଣୀ ॥
ବିବାହ ହୋଇ ଶୁଭ କ୍ଷଣେ । ଯେ ବେଦ ବିଧାନ ପ୍ରମାଣେ ॥
ସୁଖେ ସାଧିବ ଗୃହବାସେ । କାମ କାଞ୍ଚନ ପୁତ୍ର ଆଶେ ॥
ଯେ ଧର୍ମ ଗୃହସ୍ଥ କାରଣ । ଉଦ୍ଧବ ସାବଧାନେ ଶୁଣ ॥୩୯
ବ୍ରାହ୍ମଣ କୁଳଧର୍ମ ଯେତେ । ଶୁଣ କହିବା ତୋ ଅଗ୍ରତେ ॥
ବେଦାଧ୍ୟୟନ ଅଧ୍ୟାପନ । ଗ୍ରହଣ ଯଜନ ଯାଜନ ॥
ଦାନ ହିଁ ଦେଉଥିବ ନିତ୍ୟେ । ଲୋଭ ନ କରି କଦାଚିତେ ॥୪୦
ଗୃହେ ହୋଇବ ସର୍ବଂସହ । ଯେ ନୀଚକର୍ମ ପ୍ରତିଗ୍ରହ ॥
କେବେହେଁ ନ ଘେନିବ କର । ନାଶଇ ଇହ ପରକାଳ ॥
ଯେ ଅବା ଦୁଷ୍ଟ ପ୍ରତିଗ୍ରହ । ଉଭୟ ଲୋକେ ଦୁଃଖମୟ ॥
ଯେ ପ୍ରତିଗ୍ରହ ଭୟଙ୍କର । ଯଶ ତପସ୍ୟା ତେଜହର ॥
ସେ ପ୍ରତିଗ୍ରହ ନ କରିବ । ଶିଳୋଞ୍ଛେ[୧] କୁଟୁମ୍ବ ପୋଷିବ ॥
ନିତ୍ୟେ ଯାଜନ ଅଧ୍ୟାପନେ । ବଞ୍ଚିବ କିଞ୍ଚିତ ଭୋଜନେ ॥୪୧
ଯେ ଧର୍ମ କର୍ମ ବିପରୀତ । କେବେହେଁ ନ କରିବ ଚିତ୍ତ ॥
ଚିତ୍ତ ସନ୍ତୋଷ ଯଥାଲାଭେ । ନିତ୍ୟେ ବଞ୍ଚିବ ମୋର ଭାବେ ॥
ଯେ ବିପ୍ର ହରି ପରାୟଣେ । ଗୃହେ ବସଇ ସାଧୁପଣେ ॥
ନିତ୍ୟେ କରଇ ମୋତେ ଧ୍ୟାନ । ସେ ନୋହେ ନରକେ ପତନ ॥
ସେ ଗୃହୀ ଅନ୍ଧକୂପୁଁ ତରେ । ଆମ୍ଭାକୁ ଆପଣେ ନିସ୍ତାରେ ॥୪୨,୪୩
ଯେ ବିପ୍ର ପୂର୍ବକର୍ମ ଦୋଷେ । ଅତି ଦରିଦ୍ର ଗୃହବାସେ ॥
ଏମନ୍ତ ବିପ୍ରଦୁଃଖ ଗୃହିଁ । ଯେ ଅବା ଚିତ୍ତେ ଦୟା ବହି ॥
ବିପ୍ରପୋଷଣ କରେ ନିତ୍ୟେ । ମୁଁ ଥାଇଁ ତାହାର ଅଗ୍ରତେ ॥

୧. ଶିଳୋଞ୍ଛ—ଶସ୍ୟକ୍ଷେତ୍ର ଓ ହାଟରେ ପଡ଼ିଥିବା ଶସ୍ୟ ସଂଗ୍ରହ କରିବା ।

ବ୍ରାହ୍ମଣମୁଖେ ମୋ ଆହାର । ବିପଦ ଖଣ୍ଡଇ ତାହାର ॥
ସମୁଦ୍ର ମଧ୍ୟେ ନାବ ଯେହ୍ନେ । ପ୍ରାଣୀଙ୍କି ତାରଇ ତେସନେ ॥୪୪
ପିତାର ପ୍ରାୟେ ହୋଇ ରାଜା । ବିପଦ ମଧ୍ୟୁ ସର୍ବପ୍ରଜା ॥
ଜନଙ୍କୁ କରିବ ଉଦ୍ଧାର । ଯେଣୁ ବୋଲାଏ ନରେଶ୍ୱର ॥
ଆପଣା ଆତ୍ମାକୁ ଆପଣେ । ଉଦ୍ଧାର କରେ ସତ୍ତ୍ୱଗୁଣେ ॥
ଯେସନେ ଗଜର ବିପତ୍ତି । ଦେଖି ଉଦ୍ଧରେ ଗଜପତି ॥୪୫
ଯେ ରାଜା ଏମନ୍ତ ପ୍ରକାର । ଅଶୁଭ ନାଶେ ଆପଣାର ॥
ସୂର୍ଯ୍ୟସମାନ ତେଜ ରାଶି । ଏମନ୍ତ ବିମାନରେ ବସି ॥
ହରଷ ହୋଇ ନିରନ୍ତରେ । ରହଇ ଇନ୍ଦ୍ରର ସଙ୍ଗରେ ॥୪୬
ଏମନ୍ତେ ବ୍ରାହ୍ମଣ ବଞ୍ଚିବ । ଯଦ୍ୟପି ବିପଦ ପଡ଼ିବ ॥
ତେବେ ବଞ୍ଚିବ ବୈଶ୍ୟମତେ । କୃଷି ବାଣିଜ୍ୟ ବେନି ପଥେ ॥
କିବା ଖଡ଼ଗ ଧରି କରେ । ବଞ୍ଚିବ ପଦାତି ପ୍ରକାରେ ॥
ହିଂସା ନ ବହି ହୃଦୟରେ । ବିଅର୍ଥେ ନ ନାଶିବ ପରେ ॥
କ୍ଷତ୍ରିୟବୃତ୍ତି କରି ଥିବେ । କେବେହେଁ ସେବା ନ କରିବେ ॥
ଏମନ୍ତେ ବିପଦୁଁ ବଞ୍ଚିବ । ଶୁଭେ ଯେ ନିଜ ଧର୍ମେ ଥିବ ॥୪୭
ବିପଦେ ବୈଶ୍ୟବୃତ୍ତି ଧରି । କ୍ଷତ୍ରିୟ କୁଟୁମ୍ବ ଆବୋରି ॥
ବଞ୍ଚିବ ଅବା ମୃଗୟାରେ । ନୋହିଲେ ବ୍ରାହ୍ମଣବୃତ୍ତିରେ ॥
ଆପଦୁଁ ତରି କାଳକ୍ରମେ । କ୍ଷତ୍ରିୟ ଥିବ ନିଜ ଧର୍ମେ ॥
ଏମନ୍ତେ ବିପଦୁଁ ବଞ୍ଚିବ । ନୀଚକୁ ସେବା ନ କରିବ* ॥୪୮

---

* ଏଠାରେ ବାସ୍ତବରେ ବ୍ରାହ୍ମଣ ଓ କ୍ଷତ୍ରିୟ ପାଇଁ ସେବା କରିବାକୁ ମନା କରାଯାଇ ନାହିଁ, ବରଂ ଶ୍ୱବୃତ୍ତି ବା ସେବାବୃତ୍ତି ଦ୍ୱାରା ଜୀବନନିର୍ବାହ କରିବାକୁ ବାରଣ କରାଯାଇଛି—**'ନ ଶ୍ୱବୃତ୍ତ୍ୟା କଥଞ୍ଚନ'** (ମୂଳ ଭାଗବତ. ୧୧ । ୧୭ । ୪୭ ଓ ୪୮) । ମା ଯେପରି ଶିଶୁର ଛୋଟ ବଡ଼ ସମସ୍ତ ପ୍ରକାର ସେବା କରିଥାଏ, ସେହିପରି ପ୍ରତ୍ୟେକ ବର୍ଣ୍ଣର ବ୍ୟକ୍ତି ଦୟାର୍ଦ୍ର ଚିତ୍ତରେ ଯେକୌଣସି ଦୁଃଖୀ ଦରିଦ୍ରର ନୀଚ୍ଚତିନୀଚ ସେବା ମଧ୍ୟ କରି ପାରିବ ।

ବିପଦେ ବୈଶ୍ୟ ଶୂଦ୍ରପ୍ରାୟେ । କୁଟୁମ୍ବ ତାରିବ ଉପାୟେ ॥
ବିପଦେ ଶୂଦ୍ର କାରୁକର୍ମେ[୧] । ବଞ୍ଚିବ ପୁଣି ନିଜ ଧର୍ମେ ॥୪୯
ଏମନ୍ତେ ବର୍ଣ୍ଣ ଧର୍ମ ପକ୍ଷ । ତୋ ଆଗେ କହିଲି ପ୍ରତ୍ୟକ୍ଷ ॥
ଅବଶ୍ୟ କର୍ତ୍ତବ୍ୟ ଏ ଜାଣ । ଗୃହରେ ପଞ୍ଚଯଜ୍ଞ ପୁଣ ॥
କରିବ ବେଦ ଅଧ୍ୟୟନ । ସ୍ୱଧା ଯେ ସ୍ୱାହା ବଳି ଅନ୍ନ ॥
ଏ ଆଦି ପଞ୍ଚମ ପ୍ରକାରେ । ଯଥା ବିଭବ ଅନୁସାରେ ॥
ଦେବତା ଋଷି ପିତୃଭୂତ । ଅତିଥିମାନଙ୍କୁ ଉଚିତ ॥
ପୂଜା କରିବ ପ୍ରତିଦିନେ । ମୋ ରୂପ ଅଟନ୍ତି ଏମାନେ ॥୫୦
ଧର୍ମେ ଯେ ଧନ ଅରଜିବ । ଯେ ଅବା ହେଲେ ମିଳିଯିବ ॥
ତହିଁରେ ଯଜ୍ଞ ଆଚରିବ । ଭୃତ୍ୟଙ୍କୁ[୨] ପୀଡ଼ା ନ କରିବ ॥୫୧
ଏ ଭାବେ ଗୃହଧର୍ମ ମତ । ଚିତ୍ତ ନ କରି ମୋହଗ୍ରସ୍ତ ॥
ଗୃହରେ ବିପଦ ସମ୍ପଦେ । କୁଳ କାଞ୍ଚନ ବନ୍ଧୁ ମଦେ ॥
ମୋହେ ନୋହିବ ମନ ଛନ୍ନ । ଏ ସର୍ବ ନଶ୍ୱର ସମାନ ॥
ଏ ଭାବେ ଜାଣି ଶୁଣି ଦେଖି । ଇଚ୍ଛାଏ ସକଳ ଉପେକ୍ଷି ॥୫୨
ଏ ସୁତ ଦାରା ବନ୍ଧୁ ସଙ୍ଗ । ଯେସନେ ସମୁଦ୍ର ତରଙ୍ଗ ॥
ପଥିକ ଯେହ୍ନେ ବୃକ୍ଷତଳେ । ଶ୍ରମେ ମିଳନ୍ତି ଏକମେଳେ ॥
ଶ୍ରମ ସାରିଲେ ଯେଝାମତେ । ଚଳନ୍ତି ବୃକ୍ଷ ଛାଡ଼ି ପଥେ ॥
ଯେସନେ ପ୍ରାଣୀ ନିଦ୍ରାଗତେ । ସମ୍ପଦ ଦେଖେ ସ୍ୱପ୍ନଗତେ ॥
ଏହି ପ୍ରକାରେ ଗୃହବାସ । ଏଣେ ନ କରିବ ବିଶ୍ୱାସ ॥୫୩
ଏହା ତୁ ବୁଝି ଯଦୁବୀର । ଚଞ୍ଚଳ ଚିତ୍ତ ସ୍ଥିର କର ॥
ଅନିତ୍ୟ ଅସତ୍ୟ ଶରୀର । ଅନ୍ତେ ଲଭଇ ତମଘୋର ॥
ଏଣୁ ଅତିଥି ପ୍ରାୟ ହୋଇ । ମୋର ଭକତ ଗୃହେ ଥାଇ ॥
ପୁତ୍ର କଳତ୍ର ବନ୍ଧୁ ଶିରୀ । ନ ବୋଲେ ମୋହରି ମୋହରି ॥
ଦଇବ ମାୟା ଏ ସଂସାର । ଏଣେ ନ କରେ ଅହଙ୍କାର ॥
ଏ ଭାବେ ଥାଏ ଯେଉଁ ଜନ । ସେ ଗୃହେ ନୁହଇ ବନ୍ଧନ ॥୫୪

୧. କାରୁକର୍ମ—ସୂକ୍ଷ୍ମ ଶିଳ୍ପକର୍ମ । ୨. ଭୃତ୍ୟଙ୍କୁ—ପୋଷ୍ୟବର୍ଗଙ୍କୁ ।

ଏମନ୍ତେ ଗୃହ ଅବଧାନେ । ଧର୍ମ ସାଧିବ ଯଜ୍ଞ ଦାନେ ॥
ମୋର ଭକତି ଦିନେ ଦିନେ । ସାଧିବ ହୃଦୟ ଯତନେ ॥
ଗୃହସ୍ଥ ଭାବେ ଏହିମତେ । ଭାବେ ବଞ୍ଚିବ ଦିନାକେତେ ॥
ବୟସ ତୃତୀୟ ପ୍ରାପତେ । ବନେ ଚଳିବ ତପ ଅର୍ଥେ ॥
ପତ୍ନୀ ନିବେଶି ପୁତ୍ରପାଶେ । ଅଥବା ଚଳିବ ସନ୍ନ୍ୟାସେ* ॥
ଧର୍ମ କରଣେ କର୍ମ ଯେତେ । ବନେ ସାଧିବ ନାନାମତେ ॥୫୫
ଗୃହ ନିର୍ବନ୍ଧ[୧] ଯାର ମନେ । ଆକୁଳ ପୁତ୍ର ଦାରା ଧନେ ॥
ମୂଢ଼ କୃପଣ ସ୍ତିରୀଯୁତ । ମୁହିଁ ମୋହର ଏ ସମସ୍ତ ॥
ଏଣେ ବନ୍ଧନ ଗୃହବାସେ । ଅଶାନ୍ତ ଇନ୍ଦ୍ରିୟ ଲାଳସେ ॥୫୬
କୁଟୁମ୍ବ ନିସ୍ତାରଣ[୨] ଆଶେ । ଭାଳଇ ରଜନୀ ଦିବସେ ॥
ବୃଦ୍ଧ ଜନନୀ ତାତ ମୋର । ବନିତା ବାଳକ କୁମର ॥
କେମନ୍ତେ ନିସ୍ତାରିବି ମୁହିଁ । ଏଣେ ଆକୁଳମନା ହୋଇ ॥
କ୍ଷଣେ ନ ପାରେ ଗୃହଛାଡ଼ି । ନିରତେ ଚିନ୍ତା ଚିତ୍ତେ ଜଡ଼ି ॥
ଦାରା ତନୟ ନିତ୍ୟ ଚିନ୍ତି । ଗୃହେ ମଜ୍ଜଇ ମୂଢ଼ମତି ॥
ଅନ୍ତେ ପଡ଼ଇ ତମ ଘୋରେ । ଭ୍ରମଇ ଏ ଘୋର ସଂସାରେ ॥୫୭
ଗୃହ କରଣ ବର୍ଣ୍ଣଭାବ । ଉଦ୍ଧବେ କହିଲେ ମାଧବ ॥
ସେ ଗୁରୁଶିଷ୍ୟ ପାଦଗତ । ନମଇଁ ଦାସ ଜଗନ୍ନାଥ ॥

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଏକାଦଶସ୍କନ୍ଧେ ଭଗବଦୁଦ୍ଧବସଂବାଦେ ବର୍ଣ୍ଣାଶ୍ରମବିଭାଗୋ ନାମ ଅଷ୍ଟାଦଶୋଽଧ୍ୟାୟଃ ।

❐❐❐

୧. ନିର୍ବନ୍ଧ—ଅଭିନିବେଶ । ୨. ନିସ୍ତାରଣ—ରକ୍ଷାକରଣ ।

* ମୂଳ ସଂସ୍କୃତ ଅନୁସାରେ ଭକ୍ତିମାନ ପୁରୁଷ ଗୃହସ୍ଥୋଚିତ ଶାସ୍ତ୍ରୋକ୍ତ କର୍ମ ଦ୍ୱାରା ଭଗବାନଙ୍କ ଆରାଧନା କରି ଗୃହରେ ରହିବ ଅଥବା ପୁତ୍ରବାନ ହୋଇଥିଲେ (ସ୍ତ୍ରୀକୁ ପୁତ୍ର ଆଶ୍ରୟରେ ଛାଡ଼ି) ବାନପ୍ରସ୍ଥ ଆଶ୍ରମରେ ପ୍ରବେଶ କରିବ ଅଥବା ସନ୍ନ୍ୟାସ ଗ୍ରହଣ କରିବ ।

# ଊନବିଂଶ ଅଧ୍ୟାୟ*

ବାନପ୍ରସ୍ଥ ଯେ ଯତିଧର୍ମ । ଊନବିଂଶତିରେ ବର୍ଣ୍ଣନ ॥

*ଶ୍ରୀ ଭଗବାନୁବାଚ*

ବୋଲନ୍ତି ପ୍ରଭୁ ଭଗବାନ । ଶୁଣ ହେ ଭକତ ନିପୁଣ ॥
ଯେ ବାନପ୍ରସ୍ଥର ଲକ୍ଷଣ । କହିବା ତାର ଆଚରଣ ॥
ଯଦି ଚଳିବ ବନବାସେ । ପତ୍ନୀ ନିବେଶି ପୁତ୍ର ପାଶେ ॥
ପୁତ୍ର ନ ଥିଲେ ଘେନି ସଙ୍ଗେ । ନିଜ ଆୟୁଷ ତିନି ଭାଗେ☫ ॥ ୧
ବନେ ଭକ୍ଷିବ କନ୍ଦ ମୂଳ । ପିନ୍ଧିବ ବୃକ୍ଷର ବଲ୍‌କଳ ॥
କି ଅବା ଚର୍ମ ତୃଣ ପତ୍ରେ । ଅଖଣ୍ଡ ନଖ ଲୋମ ଗାତ୍ରେ ॥
ଆବର ଶ୍ମଶ୍ରୁ ନ ଛେଦିବ । ଭୂମିରେ ଶୟନ କରିବ ॥
ଅଙ୍ଗ ଦଶନ ନ ମାଜିବ । ମନ ଚଞ୍ଚଳ ନ କରିବ ॥
ଉତ୍ତମ ପୁଣ୍ୟତୀର୍ଥ ଜଳେ । ସ୍ନାନ କରିବ ତିନିବେଳେ ॥୨,୩
ପଞ୍ଚଅନଳ ଗ୍ରୀଷ୍ମ କାଳେ । ତାପ ସହିବ ତପବଳେ ॥
ବରଷାକାଳେ ବରଷଣ । ସହିବ ତହିଁର କଷଣ ॥
ଆକଣ୍ଠମଗ୍ନ ଶୀତଜଳେ । ରାତ୍ରେ ବଞ୍ଚିବ ଶୀତକାଳେ ॥
ଏମନ୍ତେ ନାନା ଦୁଃଖ ସହି । ତପ କରିବ ବନେ ଥାଇ ॥ ୪
ଯେ ଅବା ଶାକ ଫଳ ମୂଳ । ବନେ ମିଳିବ ଯେବା ଜଳ ॥
ପକ୍ୱ ବା କରି ଅଗ୍ନି ପାକ । ଭକ୍ଷିବ ଫଳ ମୂଳ ଶାକ ॥
ପାଷାଣେ କୁଟି କିବା ଦନ୍ତେ । ଭକ୍ଷଣ କରିବ ବନସ୍ତେ ॥ ୫
ଆପଣା ବୃତ୍ତିର କାରଣେ । କର୍ମ ସମ୍ପାଦିବ ଆପଣେ ॥
ଏମନ୍ତେ ଥାଇ ତପୋବନେ । ଦ୍ରବ୍ୟ ଯାଚିବ ଯେବେ ଆନେ ॥

---

* ମୂଳ ସଂସ୍କୃତ ଅନୁସାରେ ଅଷ୍ଟାଦଶ ଅଧ୍ୟାୟ ।

☫ ଆୟୁଷର ତୃତୀୟ ଭାଗରେ ଅର୍ଥାତ୍ ୫୦ ଠାରୁ ୭୫ ବର୍ଷ ମଧ୍ୟରେ ।

କେବେହେଁ ନ ଘେନିବ କରେ । ଯେବା ମିଳିବ ବନଘୋରେ ॥
ତେଣେ ଜୀବନମାତ୍ର ପୋଷି । ବନେ ସାଧିବ ଧର୍ମରାଶି ॥୬,୭
ପଶୁମାରଣେ କର୍ମ ଯେତେ । କେବେହେଁ ନ କଳ୍ପିବ ଚିତ୍ତେ ॥
ବେଦବଚନେ ଯେ ପ୍ରକାଶ । ଇଷ୍ଟି[୧] ଦରଶ ପୌର୍ଣ୍ଣମାସ ॥
ଅନଳହୋତ୍ରେ ଚତୁର୍ମାସେ । ମୋତେ ପୂଜିବ ବନବାସେ ॥ ୮
ଏ ରୂପେ ତପ କରି ବନେ । ମୋ ଭାବେ ଭଜି ଅବଧାନେ ॥
ଦେହ ଅନ୍ତରେ ଦିବ୍ୟରୂପେ । ସେ ବସେ ଋଷିଙ୍କ ସମୀପେ ॥ ୯
ଯେ ଏତେ କଷ୍ଟେ କରି ତପ । କରଇ କାମନା ସଙ୍କଳ୍ପ ॥
ତା ଠାରୁ ମୂର୍ଖ କେବା ଜନ । ଅଛଇ ଏ ତିନି ଭୁବନ ॥୧୦
ତପ ସାଧନେ ଘୋର ବନେ । ବଞ୍ଚିବ ଦୁଃଖ ସୁଖ ମନେ ॥
ସ୍ୱଭାବେ ବୃଦ୍ଧଦେହେ ଆସି । ଯେବେ ଜନ୍ମିବ ରୋଗରାଶି ॥
ଯୋଗ ଧାରଣା ପରିକଳି[୨] । ନିଜ ଶରୀରେ ଅଗ୍ନି ଜାଳି ॥
ପଞ୍ଚପରାଣ ନିଜ ପିଣ୍ଡେ । ହୋମ କରିବ ଅଗ୍ନିକୁଣ୍ଡେ ॥
ଏମନ୍ତେ ଯୋଗ ଅବଧାରି । ଅନ୍ତେ ପଶିବ ମୋର ପୁରୀ ॥୧୧
ଯେବେ ତା ପୂର୍ବଭାଗ୍ୟ ବଶେ । ବୈରାଗ୍ୟ ଉପୁଜେ ବିଶ୍ୱାସେ ॥
ତାହାକୁ ଇହପର ଲୋକ । ଦିଶଇ ନାନା ଦୁଃଖ ଶୋକ ॥
ତେବେ ସକଳ ତ୍ୟାଗ କରି । ସନ୍ନ୍ୟାସ ରୂପେ ଦଣ୍ଡ ଧରି ॥୧୨
ଗୁରୁବଚନ ଦୃଢ଼େ ଧରି । ଆଗ୍ରର୍ଯ୍ୟ ଭାବେ ପୂଜା କରି ॥
ଦକ୍ଷିଣା କରି ସର୍ବଧନ । ତୋଷିବ ଆଗ୍ରର୍ଯ୍ୟର ମନ ॥
ହୋଇବ ନିରପେକ୍ଷମନା । ଛାଡ଼ିବ ସଂସାର ବାସନା ॥
ବନେ ପଶିବ ତପ ଅର୍ଥେ । ଶୁଣ ଉଦ୍ଧବ ଏକଚିତ୍ତେ ॥୧୩
ଯେବେ ସନ୍ନ୍ୟାସୀ ତତ୍ତ୍ୱଜ୍ଞାନେ । ଚିତ୍ତ ନିବେଶି ଶୁଦ୍ଧମନେ ॥
ମୋର ଚରଣ ଦୃଢ଼େ ଧରି । ଯୋଗ ସାଧିବ ତପ କରି ॥
ତାହାକୁ ଦେବଗଣେ ଆସି । ଅନେକ ବିଘ୍ନ ପରକାଶି ॥

୧. ଇଷ୍ଟି—ଯଜ୍ଞ । ୨. ପରିକଳି—ଅଭ୍ୟାସ କରି ।

ମୋହିନୀବେଶେ ସ୍ତିରୀରୂପେ । ମିଳନ୍ତି ତାହାର ସମୀପେ ॥
ମାୟାରେ କରି ଅଙ୍ଗସଙ୍ଗ । ତପ କରନ୍ତି ତାର ଭଙ୍ଗ ॥
ଆମ୍ଭର ସଙ୍ଗ ଛାଡ଼ି ଏକେ । ଏ କିମ୍ପା ଯିବ ବିଷ୍ଣୁଲୋକେ ॥
ଏତେ ବିଗ୍ରରି ଦେବଗଣେ । ବିଘ୍ନ କରନ୍ତି ଅନୁକ୍ଷଣେ ॥୧୪
ଯଦ୍ୟପି ସଂସାର ବେଭାର । ଲାଜେ ନୋହିବ ଦିଗମ୍ବର ॥
ତେବେ କୌପୀନ ବସ୍ତ୍ରଧରେ । ତ୍ରିଦଣ୍ଡ କମଣ୍ଡଳୁ କରେ ॥
ଦୃଢ଼େ ସନ୍ନ୍ୟାସରୂପ ବହେ । ହେଲେ ସକଳ ପାପ ଦହେ ॥୧୫
ଦୃଷ୍ଟି-ପବିତ୍ର ପାଦନ୍ୟାସ । ବସ୍ତ୍ର-ପବିତ୍ର ଜଳ ଗ୍ରାସ ॥
ବାକ୍ୟ-ପବିତ୍ର କହି ସତ୍ୟ । ମନ ପବିତ୍ରେ ଥିବ ନିତ୍ୟ* ॥୧୬
ମଉନ ବ୍ରତ ନିତ୍ୟାଗ୍ରର । ଯେ ଧର୍ମ ସନ୍ନ୍ୟାସେ ବେଭାର ॥
ଜିଣିବ ବଚନ ପବନ । ଯୋଗ ଅଭ୍ୟାସେ ଜିଣି ମନ ॥
ପ୍ରାଣଧାରଣା ଯୋଗବଳେ । ବସିବ ଆସନେ ନିଶ୍ଚଳେ ॥
ମନ ପବନ ଇନ୍ଦ୍ରିଗଣେ । ଯେବେ ସନ୍ନ୍ୟାସୀ ନାହିଁ ଜିଣେ ॥
କେବଳ ଦଣ୍ଡ ଧରି କରେ । ବ୍ୟର୍ଥେ ଭ୍ରମଇ ଏ ସଂସାରେ ॥୧୭
ବ୍ରାହ୍ମଣ ଆଦି ଗ୍ରରିବର୍ଣ୍ଣେ । ଭିକ୍ଷା ମାଗିବ ଅବଧାନେ ॥
ନିନ୍ଦିତ ବର୍ଣ୍ଣ ଦୁରାଗ୍ରର । ବର୍ଜିବ ପାପିଷ୍ଠ ପାମର ॥
ଏମନ୍ତ ଭିକ୍ଷା ସପ୍ତଦ୍ୱାରେ । ମାଗିବ ସତ୍ୟ ଅନୁସାରେ ॥
କର୍ମେ ମିଳିବ ଭିକ୍ଷା ଯେତେ । ଆନନ୍ଦେ ଘେନି ଶୁଦ୍ଧଚିତ୍ତେ ॥
ନିର୍ଜନ ନଗରର ପ୍ରାନ୍ତେ । ଆନନ୍ଦେ ବସିବ ଏକାନ୍ତେ ॥
ପିତୃ ଅତିଥି ଦେବଗଣେ । ଭିକ୍ଷା ନିବେଦି ସାଧୁମନେ ॥
ଶେଷ ଭୋଜନେ ପ୍ରାଣ ପୋଷି । ଏମନ୍ତେ ଭ୍ରମିବ ସନ୍ନ୍ୟାସୀ ॥୧୮,୧୯

---

* 'ଦୃଷ୍ଟି-ପବିତ୍ର.....ଥିବ ନିତ୍ୟ' ଅର୍ଥାତ୍ ଗ୍ରଲିବା ସମୟରେ କ୍ଷୁଦ୍ର କୀଟ ପ୍ରଭୃତି ଯେପରି ମରି ନ ଯିବେ ସେଥିପ୍ରତି ଦୃଷ୍ଟି ରଖି ପାଦ ପକାଇବ; ବସ୍ତ୍ର ଦ୍ୱାରା ପବିତ୍ର ହୋଇଥିବା ଅର୍ଥାତ୍ ଛଣାଯାଇଥିବା ଜଳ ପିଇବ; ସତ୍ୟପୂତ ବଚନ କହିବ; ଏବଂ ମନକୁ ପବିତ୍ର ରଖିବ ।

ସଙ୍ଗବର୍ଜିତ ସମମତି । ନିରତେ ପରହିତେ ରତି ॥
ଆତ୍ମା ବିଷୟେ ଦୃଢ଼ଚିତ୍ତ । ଉତ୍ତମ ଉଦାର ଚରିତ ॥
ବିରଳେ[୧] କୁଶଳ ଆସନେ । ନିର୍ମଳେ ଅନ୍ତର୍ଗତ ଧ୍ୟାନେ ॥
ଅଭେଦ ଭାବେ ନିତ୍ୟେ ଧ୍ୟାୟି । ସର୍ବ ଦେଖିବ ବିଷ୍ଣୁମୟୀ ॥୨୦,୨୧
ଆତ୍ମାର ଗତି ବନ୍ଧ ମୋକ୍ଷ । ସୁଜ୍ଞାନେ ଦେଖିବ ପ୍ରତ୍ୟକ୍ଷ ॥
ମନ ନିବେଶି ସାବଧାନେ । ବୁଝିବ ବନ୍ଧ ମୋକ୍ଷ ଜ୍ଞାନେ ॥୨୨
ଭକତି ଭାବେ ଷଡ଼ଅରି । ଜିଣିବ କାମ ଆଦି କରି ॥
ବିଷୟ ସଙ୍ଗକୁ ଉପେକ୍ଷି । ହୋଇବ ଆତ୍ମାସୁଖେ ସୁଖୀ ॥୨୩
ଭିକ୍ଷା କାରଣେ ଗ୍ରାମପୁରେ । ପଶି ମାଗିବ ସପ୍ତଦ୍ୱାରେ ॥
ତୀର୍ଥ ପବିତ୍ର ପୁଣ୍ୟଦେଶେ । ଗମନ କରିବ ବିଶ୍ୱାସେ ॥
ସୁପୁଣ୍ୟ ନଦନଦୀ ତୀରେ । କୂପ ଦୀର୍ଘିକା[୨] ସରୋବରେ ॥
ଭ୍ରମିବ କରେ ଦଣ୍ଡ ଧରି । ପୀରତି ସର୍ବଭୂତେ କରି ॥୨୪
ବିଷୟ ରସ ଭାବ ଯେତେ । କେବେହେଁ ନ ଚିନ୍ତିବ ଚିତ୍ତେ ॥
ଏ ମାୟାମୟ ତ୍ରିଭୁବନ । ମନେ ନ କରି ବସ୍ତୁଜ୍ଞାନ[୩] ॥
ଇନ୍ଦ୍ରିୟଗୁଣେ ଆସକତ । ନୋହି ଭ୍ରମିବ ଯେ ପଣ୍ଡିତ ॥
ଚିତ୍ତୁ ସଂଶୟ ଅଭିମାନ । ତେଜି କରିବ ଆତ୍ମଧ୍ୟାନ ॥୨୬,୨୭*
ଜ୍ଞାନ ଭକତି ନିଷ୍ଠାପର । ନିତ୍ୟେ ଯେ ବିଶ୍ୱାସ ମୋହର ॥
ସକଳଭୂତେ ଅନପେକ୍ଷ । ଜ୍ଞାନ ବୈରାଗ୍ୟ ପଣେ ଦକ୍ଷ ॥
ସର୍ବ ଆଶ୍ରମ ଧର୍ମ ତେଜି । ମୋର ଚରଣ ଦୃଢ଼େ ଭଜି ॥
ପୃଥିବୀ କରି ପର୍ଯ୍ୟଟନ । ଛାଡ଼ିବ ଆଶ୍ରମ ଲକ୍ଷଣ ॥
ନାହିଁ ତାହାର ଅବଶେଷ । କର୍ମାଦି କରଣେ ବିଶେଷ ॥୨୮
ବାଳକ ପ୍ରାୟେ ଏ ସଂସାରେ । ଭ୍ରମଇ ଆଗ୍ରହ ବେଭାରେ ॥

---

୧. ବିରଳେ—ନିର୍ଜନ ସ୍ଥାନରେ। ୨. ଦୀର୍ଘିକା—ବଡ଼ ପୁଷ୍କରିଣୀ।
୩. ବସ୍ତୁଜ୍ଞାନ—ବାସ୍ତବ।

* ଶ୍ଳୋକ ୨୫ର ଅନୁବାଦ ନାହିଁ।

ଭଲେ ଜାଣଇ ସର୍ବଧର୍ମ । ଜଡ଼ର ପ୍ରାୟେ କରେ କର୍ମ ॥
ଅନ୍ତରେ ସର୍ବଧର୍ମ ଜାଣି । ବାତୁଳ ପ୍ରାୟେ କହେ ବାଣୀ ॥
ନିଗମ ନିଷ୍ଠାକୁ ଜାଣଇ । ନିୟତାଗ୍ରହ ନ କରଇ ॥୨୯
ନ କହେ କର୍ମ ବେଦମତେ । ନ ପଶି ପାଷଣ୍ଡଙ୍କ ପଥେ ॥
ପ୍ରାଣୀଙ୍କି ନ କରଇ ହିଂସା । ତେଜଇ ବାଦତର୍କ ଭାଷା ॥
ନ ଥାଇ ପ୍ରିୟ ପକ୍ଷପାତେ । ପ୍ରାଣୀଙ୍କ ଭଲମନ୍ଦ ମତେ ॥୩୦
କେବେହେଁ ପ୍ରାଣୀଙ୍କର ଚିତ୍ତେ । ଉଦ୍‌ବେଗ ନ ଦେବ ଯୁକତେ ॥
ବଞ୍ଛିବ ସର୍ବଲୋକ ହିତେ । ଉଦ୍‌ବେଗ ନୋହି କଦାଚିତେ ॥
କନ୍ଦଳେ ପର ଅପମାନେ । ବିବାଦ ନ ଚିନ୍ତିବ ମନେ ॥
ପଶୁଙ୍କ ପ୍ରାୟେ ରିପୁଭାବ । କେବେହେଁ କାହିଁ ନ କରିବ ॥
ଏକଇ ଆତ୍ମା ସର୍ବଭୂତେ । ଦେହ ବିକାର ନାନାମତେ ॥
ଚନ୍ଦ୍ର ଯେସନେ ଶୂନ୍ୟପଥେ । ଜଳେ ଦିଶଇ ନାନାମତେ ॥
ଅନେକ ଘଟ ଜଳ ମଧ୍ୟେ । ଯେସନେ ଦେଖି ନାନାଭେଦେ ॥୩୧,୩୨
ଲାଭ ଅଲାଭେ ସମଭାବ । ଦୁଃଖ ହରଷ ନ କରିବ ॥
ଅଦୃଷ୍ଟ[୧] ଦୁଃଖସୁଖ ହେତୁ । ଅଦୃଷ୍ଟ ବଶ ସର୍ବଜନ୍ତୁ ॥୩୩
ଉପାୟ ଆହାର କାରଣେ । ଚିନ୍ତିବ ଶରୀର ଧାରଣେ ॥
ଏ ଦେହ ଥିଲେ ଜ୍ଞାନ ପାଇ । ଜଳେ ଯେସନେ ଚନ୍ଦ୍ର ଛାଇ ॥
ଜ୍ଞାନେ ସକଳ ପାପ ନାଶେ । ନିର୍ବାଣ ମୁକତି ପ୍ରକାଶେ ॥୩୪
ଯେ ଅବା ଅନ୍ନ କ୍ଷୁଧାକାଳେ । ମିଳିବ ପୂର୍ବକର୍ମ ଫଳେ ॥
ଯେ ଶଯ୍ୟା କିବା ବସ୍ତ୍ରଲାଭ । ଦଇବେ ଯେ ଅବା ଘଟିବ ॥
ତାହା ସନ୍ତୋଷେ ଭୋଗ କରି । କର୍ମ ସାଧିବ ଦେହ ଧରି ॥୩୫
ସ୍ନାନ ଶଉଚ ଆଚମନ । ଯେ ନିତ୍ୟ ବିଧିର ବିଧାନ ॥
ଭାବ ଅଭାବ ଏକ କରି । ସାଧିବ ମୁନି ଦଣ୍ଡଧାରୀ ॥
ଯେ ମୁନି ନିତ୍ୟେ ଦଣ୍ଡ ଧରେ । ସେ ଭଲମନ୍ଦ ନ ବିଗ୍ରହେ ॥
କର୍ମ କରିବ ଇଚ୍ଛାମତେ । ଲୀଳାରେ ଈଶ୍ୱର ଯେମନ୍ତେ ॥୩୬

୧. ଅଦୃଷ୍ଟ—ପ୍ରାରବ୍ଧ ବା ଭାଗ୍ୟ ।

ଯେ ସ୍ୱର୍ଗବାସ ସୁଖଭୋଗ । ଅନ୍ତେ ଦୁରିତ ଦୁଃଖଯୋଗ ॥
ଏତେ ବିଗ୍ଚାରି ଚିତ୍ତ ସ୍ଥିରେ । ବୈରାଗ୍ୟ ଜନ୍ମେ ଯା ଶରୀରେ ॥
ଗୁରୁଚରଣ ସେବା କରି । ତାଙ୍କ ବଚନ ଶିରେ ଧରି ॥
ଗୁରୁଙ୍କୁ ବିଷ୍ଣୁ ପ୍ରାୟେ ମଣି । ସେବା କରିବ ଦୃଢ଼େ ପୁଣି ॥
ଗୁରୁବଚନ ଧରି ଚିତ୍ତେ । ମୋର ଭକତି ଦୃଢ଼ବ୍ରତେ ॥
ନିଶ୍ଚୟେ ମୋତେ ଆଶ୍ରେ କରି । ସୁଖେ ସେ ତରେ ଭବବାରି ॥୩୮,୩୯*
ଯଦି ସନ୍ନ୍ୟାସୀ ଯୋଗବଳେ । ଷଡ଼ଅଇରି ଇନ୍ଦ୍ରିମେଳେ ॥
ସଂସାର ନ ପାରଇ ଜିଣି । ଗୁରୁବଚନ ନ ପ୍ରମାଣି ॥
ବିଷୟେ ନୋହେ ବଇରାଗ । ପ୍ରଚଣ୍ଡ ଇନ୍ଦ୍ରିଗଣ ବେଗ ॥
ଅଶାନ୍ତି ଦେହେ ବହେ ନିତ୍ୟେ । ମିଥ୍ୟା ଆରମ୍ଭ ଦଣ୍ଡ ହସ୍ତେ ॥
କେବଳ ସନ୍ନ୍ୟାସୀ ଲକ୍ଷଣ । ତାରେ ହସନ୍ତି ଦେବଗଣ ॥
ସେ ନୋହେ ଭବଜଳୁଁ ପାର । ଆତ୍ମା ନିନ୍ଦିତ ଦୁରାଗ୍ରର ॥
ଉଭୟ ଲୋକ ତାର ନାଶ । ଜନେ କରନ୍ତି ଉପହାସ ॥
କେହି ନ କରେ ତାକୁ ରକ୍ଷା । ବିନାଶ ହେତୁ ତାର ଦୀକ୍ଷା ॥୪୦,୪୧
ଅହିଂସା ସନ୍ନ୍ୟାସ ଲକ୍ଷଣ । କୃଷ୍ଣ କହନ୍ତି ପୁଣ ପୁଣ ॥
ତପସ୍ୟା ବିବେକ ଯେ ଶାନ୍ତି । ବନସ୍ଥଜନର ଏ ଗତି ॥
ଗୃହୀର ଇଷ୍ଟି[୧] ଜୀବରକ୍ଷା । ବ୍ରହ୍ମଗ୍ଚାରୀର ଗୁରୁଦୀକ୍ଷା ॥୪୨
ତପ ଶଉଚ ମୋ ଭଜନ । ଏ ଆଦି ବ୍ରହ୍ମଚର୍ଯ୍ୟ କର୍ମ ॥
ପତ୍ନୀ ସଙ୍ଗମ ଋତୁକାଳେ । ଗୃହସ୍ଥ ଧର୍ମ ଏ ଶାସ୍ତ୍ରେ ॥
ଏ ଗ୍ଚାରିଭାଗେ ଧର୍ମଗୁଣ । କହିଲି ଆଶ୍ରମ ଲକ୍ଷଣ ॥୪୩
ଏଣୁ ସ୍ୱଧର୍ମେ ମୋର ପାଦେ । ଯେ ନର ଭଜେ ଅପ୍ରମାଦେ ॥
ସେ ମୋତେ ଦେଖେ ସର୍ବଭୂତେ । ଯେ ରୂପେ ଅଛି ମୁଁ ଜଗତେ ॥୪୪
ମୋର ଭକତି ବିନୁ ଆନେ । ସେ ନର କିଛିହିଁ ନ ଜାଣେ ॥

୧. ଇଷ୍ଟି—ଯଜ୍ଞ ।

* ଶ୍ଳୋକ ୩୭ର ଅନୁବାଦ ନାହିଁ ।

ଦୃଢ଼ ଭକତି ଯୋଗବଳେ । ପଶେ ମୋ ଚରଣ କମଳେ ॥
ମୁଁ ବ୍ରହ୍ମ ଉତ୍ପତ୍ତି ପାଳନ । ସଂସାର ପ୍ରଳୟ କାରଣ ॥
ସର୍ବଭୂତଙ୍କ ଆତ୍ମା ମୁହିଁ । ମୋର ଭଜନେ ମୋତେ ପାଇ ॥
ମୋର ଭକତି ବିନୁ ନର । ନୁହଇ ଭବଜଳୁଁ ପାର ॥୪୫-୪୭
ଉଦ୍ଧବ ପଚାରିଲୁ ଯେତେ । ଆଶ୍ରମଧର୍ମ ଶାସ୍ତ୍ରମତେ ॥
ତୁ ଏହା ଦୃଢ଼ଚିତ୍ତେ ଧର । ହସି କହନ୍ତି ଚକ୍ରଧର ॥୪୮
ସେ ହରି ଅଭୟ ଚରଣେ । ପାମର ଜଗନ୍ନାଥ ଭଣେ ॥
କେବଳ ଦାସ ଭାବେ ମତି । ଚରଣେ ଶରଣ ମୁଁ ନିତି ॥
ପରମଗତି ମୁକ୍ତି ଯେହୁ । ତା ବିନୁ ଅନ୍ୟ ଆଶ୍ରା କାହୁଁ ॥

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ଏକାଦଶସ୍କନ୍ଧେ ଭଗବଦୁଦ୍ଧବସଂବାଦେ ଯତିଧର୍ମନିର୍ଣ୍ଣୟୋ
ନାମ ଊନବିଂଶୋଽଧ୍ୟାୟଃ ।

❑❑❑

## ବିଂଶ ଅଧ୍ୟାୟ*

ଜ୍ଞାନାଦି ତ୍ୟାଗର ଉପାୟ । ବର୍ଣ୍ଣନ ବିଂଶତି ଅଧ୍ୟାୟ ॥

*ଶ୍ରୀ ଭଗବାନୁବାଚ*

କହନ୍ତି ପ୍ରଭୁ ଭଗବାନ । ଶୁଣ ହେ ଭକତ ପ୍ରଧାନ ॥
ଯେ ଜନ ଆତ୍ମା ତତ୍ତ୍ୱଜ୍ଞାନ । ଅନୁଭବରେ ବିଚକ୍ଷଣ ॥
ବିମଳମତି ଧୀରବାଣୀ । ଜଗତ ମାୟାମାତ୍ର ଜାଣି ॥
ସେ ଜ୍ଞାନ ଦେଇ ମୋ ଚରଣେ । ଭାବେ ଖଟିବ ଭୃତ୍ୟପଣେ ॥ ୧
ମୋତେ ବାଞ୍ଛନ୍ତି ଜ୍ଞାନୀଜନ । ମୁଁ ତାଙ୍କ ପ୍ରିୟ ଇଷ୍ଟ ଧନ ॥
ମୋର ଚରଣ ଶ୍ରେଷ୍ଠ ମଣେ । ଜ୍ଞାନବିଜ୍ଞାନ ଦୃଢ଼ମନେ ॥

* ମୂଳ ସଂସ୍କୃତ ଅନୁସାରେ ଊନବିଂଶ ଅଧ୍ୟାୟ ।

ଏଣୁ ଜ୍ଞାନୀ ମୋ ପ୍ରିୟତମ । କେହି ନୁହନ୍ତି ତାର ସମ ॥
ସେ ମୋତେ ଜ୍ଞାନବନ୍ଧେ ଧରେ । ସକଳ କର୍ମ ପରିହରେ ॥୨,୩
ତୀର୍ଥ ଗମନ ଜପ ଦାନ । ଯଜ୍ଞେ ଦେବତା ଆରାଧନ ॥
ଏ କୋଟି କୋଟି ବ୍ରତ ଧର୍ମ । ଏ ଆଦି ଯେତେ ପୁଣ୍ୟକର୍ମ ॥
ନାନାପ୍ରକାରେ ତପ କରି । ଜ୍ଞାନକଳାକୁ ନୋହେ ସରି ॥ ୪
ଉଦ୍ଧବ ଏହା ବୁଝି ମନେ । ତୁ ମୋତେ ଭଜ ତତ୍ତ୍ୱଜ୍ଞାନେ ॥
ମୋତେ ଭଜିଣ ଖଣ୍ଡ ଭ୍ରମ । ଏବେ ତୁ ଛାଡ଼ ସର୍ବଧର୍ମ ॥ ୫
ପୂର୍ବେ ଅଶେଷ ମୁନିଗଣ । ଜ୍ଞାନେ ସେବିଲେ ମୋ ଚରଣ ॥
ସଂଶୟ ଛାଡ଼ି ଶୁଦ୍ଧମନେ । ଗମିଲେ ବୈକୁଣ୍ଠଭୁବନେ ॥ ୬
ଉଦ୍ଧବ ଦେଖ ଏ ସଂସାର । ସ୍ୱଭାବେ ତ୍ରିଗୁଣ ବିକାର ॥
ଏ ସର୍ବ ମାୟା ନାନାମତେ । ଆଶ୍ରେ ଯେ କରିଅଛି ତୋତେ ॥
ଏ ମାୟା ପ୍ରଳୟେ ନ ଥାଇ । ପୂର୍ବେ ତା କେହି ନ ଜାଣଇ ॥
ମଧ୍ୟେ ବିଳସେ ନାନାରୂପେ । ଜଗନ୍ମୋହିନୀ ମାୟା କଳ୍ପେ ॥
ଏଣୁ ଏ ଆଦି ମଧ୍ୟ ଅନ୍ତ । କେବଳ ଜାଣ ମାୟାମାତ୍ର ॥ ୭
ଉଦ୍ଧବ କୃଷ୍ଣବାକ୍ୟ ଶୁଣି । ଜ୍ଞାନମହିମା ପରିମାଣି ॥
ଜ୍ଞାନ ବୈରାଗ୍ୟ କର୍ମ ଯେତେ । ପୁଚ୍ଛିଲା କୃଷ୍ଣ ପାଦଗତେ ॥(ଜ.)

*ଉଦ୍ଧବ ଉବାଚ*

ହେ ବିଶ୍ୱେଶ୍ୱର ନାରାୟଣ । ଅନାଦି ପୁରୁଷ ପୁରାଣ ॥
ତୁ ବିଶ୍ୱରୂପୀ ବିଶ୍ୱଦେହ । ଭକ୍ତି ଲକ୍ଷଣ ମୋତେ କହ ॥
ବିଶୁଦ୍ଧ ବିଜ୍ଞାନ କାରଣ । ଯାହା ବାଞ୍ଛନ୍ତି ମୁନିଗଣ ॥ ୮
ଘୋର ସଂସାରେ ମାୟାଭ୍ରମେ । ମୁହିଁ ତୃଷିତ ପଥଶ୍ରମେ ॥
ତୋହର କଥାମୃତ ମୋତେ । ପାନ କରାଅ ଶ୍ରୁତିପଥେ ॥
ତୋ ପାଦପଦ୍ମ ଛତ୍ର ପ୍ରାୟେ । ଶୀତଳ ମଧୁଧାରା ବହେ ॥
ତୋ ପାଦପଦ୍ମ ମୋର ଆଶା । ଭବାବ୍ଧି ତରଣେ ଭରସା ॥ ୯
ମୁଁ ମୂଢ଼ ନିଜପଥ ହୁଡ଼ି । ସଂସାରକୂପେ ଅଛି ପଡ଼ି ॥

ଏ କାଳସର୍ପ ମୋ ଶରୀରେ । କୋପେ ଦଂଶଇ ନିରନ୍ତରେ ॥
ଅଳପ ସୁଖେ ତୃଷ୍ଣା ଘୋର । କେମନ୍ତେ ହୋଇବି ଉଦ୍ଧାର ॥
ତୁ ନାଥ ଶରଣ ସୋଦର । ଏ କୂପୁଁ କୃପାରେ ଉଦ୍ଧର ॥
ତୋର ବଚନ ସୁଧାଧାରେ । ବରଷା କର ଶିରେ ମୋର ॥୧୦
ଏମନ୍ତ ଭକ୍ତବାକ୍ୟ ଶୁଣି । ହସି କହନ୍ତି ଚକ୍ରପାଣି ॥(ଜ.)

*ଶ୍ରୀ ଭଗବାନୁବାଚ*

ଶୁଣ ଭକତ ସାମରଥା । ଯେ ପୂର୍ବେ ଇତିହାସ କଥା ॥
କୁରୁପାଣ୍ଡବ ଯୁଦ୍ଧ ଅନ୍ତେ । ଏ କଥା ଭୀଷ୍ମର ଅଗ୍ରତେ ॥
ପାଣ୍ଡୁକୁମର ଯୁଧିଷ୍ଠିର । ଧର୍ମେ ସେ ଜିଣିଲା ସମର ॥
ଜ୍ଞାତି ବାନ୍ଧବ କୁଳକ୍ଷୟେ । ବ୍ୟାକୁଳ ସଂଶୟ ହୃଦୟେ ॥
ପୁଚ୍ଛିଲା ମୋର ବିଦ୍ୟମାନେ । ଯେ ପ୍ରଶ୍ନ ଭୀଷ୍ମ ସନ୍ନିଧାନେ ॥
ସେ ମୋକ୍ଷଧର୍ମ ଯାହା କହି । ଶ୍ରବଣେ ଶୁଣିଅଛି ମୁହିଁ ॥
ଏବେ ତୁ ସାବଧାନେ ଶୁଣ । ଭକ୍ତି ବୈରାଗ୍ୟ ମୁକ୍ତି ଜ୍ଞାନ ॥
ଭୀଷ୍ମ ବଦନୁଁ ଅଛି ଶୁଣି । ଶୁଣ କହିବା ପରିମାଣି ॥୧୧-୧୩
ପ୍ରକୃତି ପୁରୁଷ ମହତ । ଯେ ଅହଙ୍କାର ପଞ୍ଚଭୂତ ॥
ମାତ୍ର ଇନ୍ଦ୍ରିୟ ଏକାଦଶ । ତ୍ରିଗୁଣ ଘେନି ଅଷ୍ଟାବିଂଶ ॥
ଜଗତ କାରଣ ସମସ୍ତେ । ଶାସ୍ତ୍ରେ କହନ୍ତି ନାନାମତେ ॥
ଯେ ସର୍ବତତ୍ତ୍ୱେ ଦେଖେ ମୋତେ । ବିଗ୍ରହି ଜାଣିବା ସାକ୍ଷାତେ ॥
ସେ ତତ୍ତ୍ୱଜ୍ଞାନ ମୋର ମତ । ତା ବିନୁ କିଛି ନୋହେ ସତ୍ୟ ॥୧୪
ଏ ତତ୍ତ୍ୱଜ୍ଞାନ ପୁରାତନ । ଜଗତ ଉତ୍ପତ୍ତି କାରଣ ॥
ଜନ୍ମ ମରଣ ଏ ଜଗତେ । ଦୁଃଖ ସନ୍ତୋଷ ଆଦି ଯେତେ ॥
ଆଦ୍ୟନ୍ତ ମଧ୍ୟ ପରିମାଣି । ଏ ସର୍ବ ମିଥ୍ୟା ବୋଲି ଜାଣି ॥
ଯାହାକୁ ଆଦି ମଧ୍ୟ ଅନ୍ତେ । ବିନାଶ ନ ଦେଖି ଜଗତେ ॥
ସେ ସତ୍ୟ ଜ୍ଞାନତତ୍ତ୍ୱ ଜାଣ । ଅଧିକ ମିଥ୍ୟା ପରିମାଣ ॥୧୫,୧୬
ନୟନେ ଦେଖି ଶୁଣି କର୍ଣ୍ଣେ । ମହତ ବାକ୍ୟେ ଅନୁମାନେ ॥

ବିଗ୍ରରେ ନୋହେ ଯେ ପ୍ରମାଣ । ଏଣୁ ଜଗତ ମିଥ୍ୟା ଜାଣ ॥
କର୍ମର ଫଳ ଏ ଜଗତ । କର୍ମ ସରିଲେ ହୋଏ ହତ ॥
ସ୍ଥାବରୁ ବ୍ରହ୍ମଲୋକ ଯାଏ । କର୍ମ ସରିଲେ ହୋନ୍ତି କ୍ଷୟେ ॥
ଏଣୁ ଅନିତ୍ୟ ପରିମାଣି । ବିରକ୍ତ ଭାବେ ରହେ ପ୍ରାଣୀ ॥୧୭,୧୮
ପୂର୍ବେ ମୁଁ କହିଥିଲି ତୋତେ । ଭକତିଯୋଗ ହିଁ ଯେମନ୍ତେ ॥
ଯେ ଭକ୍ତି ମୁକ୍ତିର କାରଣ । ପୁଣି କହିବା ବୀର ଶୁଣ ॥୧୯
ମୋହର କଥାମୃତ ବାଣୀ । ଶ୍ରଦ୍ଧାଚିତ୍ତରେ ନିତ୍ୟେ ଶୁଣି ॥
ବଦନେ କରିବ କୀର୍ତ୍ତନ । ସୁସ୍ୱରଗୀତେ ଅନୁକ୍ଷଣ ॥
ମୋର ପୂଜାରେ ଏକମତି । କରିବ ନାନାମତେ ସ୍ତୁତି ॥୨୦
ଆଦରେ ସେବା ତତପର । ସାଷ୍ଟାଙ୍ଗେ କରି ନମସ୍କାର ॥
ଆବର ଯେ ମୋର ଭକତ । ତାହାର ପୂଜାକର୍ମେ ରତ ॥
ମୋତେ ଦେଖିବ ସର୍ବଭୂତେ । ନିରତେ ଥିବ ପ୍ରାଣୀହିତେ ॥୨୧
ମୋର କାରଣେ କର୍ମ ଯେତେ । ଆଦରେ କରୁଥିବ ନିତ୍ୟେ ॥
ମୋର ମହିମା ଯେତେ ଗୁଣ । କୀର୍ତ୍ତନ କରୁଥିବ ପୁଣ ॥
ଅଧିକ କର୍ମ କରି ଯେତେ । ଅନ୍ତରେ ସମର୍ପିବ ମୋତେ ॥
ଆଶା ନ କରି କର୍ମଫଳେ । ଶରଣ ମୋ ପାଦକମଳେ ॥୨୨
କର୍ମେ ମିଳିବ ଯେତେ ଭୋଗ । ମୋ ପ୍ରୀତି ଅର୍ଥେ ପରିତ୍ୟାଗ ॥
ମୋ ପ୍ରୀତି ଅର୍ଥେ କରି ପୁଣ୍ୟ । ଯେ ଅବା ଯଜ୍ଞ ତପ ଦାନ ॥
ଅର୍ପିଣ କରି ସର୍ବ ମୋତେ । ବ୍ରହ୍ମ-ଆନନ୍ଦମୟ ଚିତ୍ତେ ॥
ଦେହ ଜୀବନ ଦେଇ ମୋତେ । ବନ୍ଦିବ ମୋର ପାଦଗତେ ॥୨୩
ଏ ସର୍ବ ଭକତି ଉପାୟେ । ଯେ ଅବା ସାଧେ ନିଜ ଦେହେ ॥
ତାର ଭକତି ଅପ୍ରମାଦେ । ନିଶ୍ଚଳ ହୁଏ ମୋର ପାଦେ ॥
ତାର ସାଧନା ସିଦ୍ଧି ଯେତେ । ମୋ ତହୁଁ ନାହିଁ ନା ଜଗତେ ॥୨୪
ଯେ ପ୍ରାଣୀ ମୋହର ଚରଣେ । ଦଣ୍ଡେ ନିମିଷେ କିବା କ୍ଷଣେ ॥
ମନ ନିଶ୍ଚଳ କରେ ଯେବେ । ଜ୍ଞାନ ବୈରାଗ୍ୟ ଲଭେ ତେବେ ॥

ମୋ ପାଦଭକ୍ତି ବୋଲି ଧର୍ମ । ଦେଖାଏ ଆତ୍ମତତ୍ତ୍ୱଜ୍ଞାନ ॥
ହୃଦୟେ ଭକତି ଉଦୟେ । ବୈରାଗ୍ୟ ଜନ୍ମାଏ ବିଷୟେ ॥
ଅଣିମା ଆଦି ଅଷ୍ଟନିଧି । ନିକଟେ ଥାନ୍ତି ନିରବଧି ॥୨୫-୨୭
ଏମନ୍ତ କୃଷ୍ଣବାକ୍ୟ ଶୁଣି । ଉଦ୍ଧବ ଯୋଡ଼ି ବେନି ପାଣି ॥
ବୋଲଇ କୃଷ୍ଣମୁଖ ଚାହିଁ । ଭୋ ନାଥ ଶୁଣ ଭାବଗ୍ରାହୀ ॥(ଜ.)

*ଉଦ୍ଧବ ଉବାଚ*

ତୋହର ଅଭୟ ଚରଣେ । ମୁହିଁ ପୁଚ୍ଛଇ ଦାସପଣେ ॥
ଯମ ନିୟମ ଶମ ଦମ । କେତେ ପ୍ରକାରେ ଯଥାକ୍ରମ ॥
ତିତିକ୍ଷା ଧୃତି ତପ ଦାନ । କହ ହେ ପ୍ରଭୁ ଭଗବାନ ॥
ଶଉର୍ଯ୍ୟ ରତ ସତ୍ୟ ତ୍ୟାଗ । ଧନ ଦକ୍ଷିଣା ଯଜ୍ଞ ଭଗ ॥
ପୁରୁଷମାନଙ୍କର ବଳ । କି ଦୟା ଲାଭ ଆଦିମୂଳ ॥
କି ପରାବିଦ୍ୟା ଲଜ୍ଜା ଶିରୀ । କି ଦୁଃଖ ସୁଖ ନରହରି ॥୨୮-୩୦
କେ ମୂର୍ଖ କି ରୂପେ ପଣ୍ଡିତ । କେ ସାଧୁମାର୍ଗ କେ କୁପଥ ॥
କାହାକୁ ବୋଲି ସ୍ୱର୍ଗଲୋକ । କେ ଅବା ଅଟଇ ନରକ ॥
ଧନାଢ୍ୟ ଜାଣିବା କେମନ୍ତେ । କେ ଦୁଃଖୀ ଦରିଦ୍ର ଜଗତେ ॥
କାହାକୁ ବୋଲି ବନ୍ଧୁ ଘର । କୃପଣ କେ ଅବା ଈଶ୍ୱର ॥
ଏ ଆଦି ପଚାରଇ ଯେତେ । ଭୋ ନାଥ କହ ଦୟାଚିତ୍ତେ ॥
ମୋ ଚିତ୍ତେ ସଂଶୟ ପ୍ରମାଣୁ । ଏ ପ୍ରଶ୍ନ ପଚାରିଲି ତେଣୁ ॥
କି ଅବା ଘଟେ ବିପରୀତେ । ଭୋ ନାଥ କହ ଦୟାଚିତ୍ତେ ॥୩୧,୩୨
ପୁରୁଷସିଂହ ଚକ୍ରପାଣି । ଏମନ୍ତ ଭୃତ୍ୟ ମୁଖୁଁ ଶୁଣି ॥
ଚିତ୍ତେ ସକଳ ଅବଧାରି । କହନ୍ତି ପ୍ରଭୁ ଦଇତ୍ୟାରି ॥(ଜ.)

*ଶ୍ରୀ ଭଗବାନୁବାଚ*

ଶୁଣ ଉଦ୍ଧବ ତୋଷଚିତ୍ତେ । ଯେ ପ୍ରଶ୍ନ ପଚାରିଲୁ ମୋତେ ॥
ବଚନ ମଧ୍ୟେ ସତ୍ୟବାଣୀ । ନିର୍ଲୋଭ ପରଧନେ ଜାଣି ॥
ଲଜ୍ଜା ସକଳ-ସଙ୍ଗ-ତ୍ୟାଗ । ଧନ ସଞ୍ଚୟେ ବଇରାଗ୍ୟ ॥

ମଉନ ବ୍ରହ୍ମଚର୍ଯ୍ୟ ଗୁଣ । ସ୍ଥଇର୍ଯ୍ୟ ଆସ୍ତିକ ଲକ୍ଷଣ ॥
ଜୀବେ ଅହିଂସା ଭୟ କ୍ଷମା । ଯମ ଦ୍ୱାଦଶ ଏ ମହିମା ॥୩୩
ବାହ୍ୟ ଅନ୍ତର ଶୌଚ ହୋମ । ତପ ଜପ ମୋ ପୂଜା କର୍ମ ॥
ଆର୍ଯ୍ୟସେବା ତୀର୍ଥଗତି । ଶ୍ରଦ୍ଧା ଯେ ପୂଜିବା ଅତିଥି ॥
ସକଳ ଚେଷ୍ଟା ପରହିତେ । ସନ୍ତୋଷ ଅବଲମ୍ବ ଚିତ୍ତେ ॥
ନିୟମ ଦ୍ୱାଦଶ ଏ ଜାଣ । ଏଣେ ଜୀବର ପରିତ୍ରାଣ ॥୩୪
ଯମ ନିୟମ ବେନିପଥେ । ଯେବା ଆଚରେ ଶୁଦ୍ଧଚିତ୍ତେ ॥
ଯମରେ ମୋକ୍ଷସଙ୍ଗ ହୋଇ । ନିୟମେ କାମନା ଲଭଇ ॥୩୫
ମୋ ଦେହେ ନିଷ୍ଠା ବୁଦ୍ଧି ଶମ । ଇନ୍ଦ୍ରିୟ ସଂଯମଟି ଦମ ॥
ଜିହ୍ୱା ଉପସ୍ଥ ଜୟ ଧୃତି । ତିତିକ୍ଷା ସର୍ବଦୁଃଖେ ଶାନ୍ତି ॥୩୬
ପରକୁ ଦଣ୍ଡତ୍ୟାଗ ଦାନ । ତପ ସର୍ବକାମ ବର୍ଜନ ॥
ନିଜ ସ୍ୱଭାବ ଯେବେ ଜିଣି । ଶଉର୍ଯ୍ୟ ବୋଲି ତାକୁ ଜାଣି ॥
ସମାନଦୃଷ୍ଟି ସର୍ବଭୂତେ । ଏ ସତ୍ୟ ପଦ ମୋର ମତେ ॥୩୭
ପ୍ରିୟ ଆବର ସତ୍ୟ ଯେହି । କବି ବୋଲନ୍ତି ଋତ ସେହି ॥
ସକଳ କର୍ମଫଳ ତ୍ୟାଗ । ଶଉଚ ଲକ୍ଷଣ ସ୍ୱଭାବ ॥
ସଂସାରେ ସନ୍ନ୍ୟାସ ଲକ୍ଷଣ । ଉତ୍ତମ ତ୍ୟାଗ ଏ କାରଣ ॥୩୮
ଧନାଢ୍ୟ ବୋଲି ଏ ଶୟଲେ । ଯେ ନିତ୍ୟେ ଇଷ୍ଟଧର୍ମ ପାଳେ ॥
ମୁଁ ଯଜ୍ଞରୂପୀ ହୃଷୀକେଶ । ଦକ୍ଷିଣା ଜ୍ଞାନ ଉପଦେଶ ॥
ସୁଦୃଢ଼େ ପବନ ଧାରଣ । ପରମ ବଳ ଏ ଲକ୍ଷଣ ॥୩୯
ଭଗ ମୋ ଅଇଶ୍ୱର୍ଯ୍ୟ ଭାବ । ମୋର ଭକତି ବଡ଼ ଲାଭ ॥
ପ୍ରାଣୀ ବିଷୟେ ଭେଦବୁଦ୍ଧି । ନ କରେ ସେ ବିଦ୍ୟା ପ୍ରସିଦ୍ଧି ॥
ନିନ୍ଦିତ କର୍ମେ ଯେ ଡରଇ । ଉଦ୍ଧବ ଜାଣ ଲଜ୍ଜା ସେହି ॥୪୦
ସକଳ ଭାବେ ଅନପେକ୍ଷ । ଏ ଶିରୀ ଲାଭଟି ପ୍ରତ୍ୟକ୍ଷ ॥
ସମେ ଯେ ଦୁଃଖସୁଖ ମଣି । ସେ ମହାସୁଖୀ ନିତ୍ୟେ ଭଣି ॥
ନିରତେ କାମଭୋଗେ ସୁଖୀ । ତାହାକୁ ବୋଲି ମହାଦୁଃଖୀ ॥
ଯେ ଆତ୍ମା ବନ୍ଧ-ମୋକ୍ଷ ଜାଣେ । ସେ ପ୍ରାଣୀ ପଣ୍ଡିତ ବଖାଣେ ॥୪୧

ଦେହ କଳତ୍ର ବନ୍ଧୁ ଘର । ଏଣେ ଯେ କରେ ଅହଙ୍କାର ॥
ତାହାକୁ ମୂର୍ଖ ବୋଲି ଜାଣି । ହସି କହନ୍ତି ଚକ୍ରପାଣି ॥
ମୋତେ ଭଜଇ ଯେ ଯେମନ୍ତେ । ଉତ୍ତମ ପଥ ସେ ଜଗତେ ॥
ତେଣେ ଚଞ୍ଚଳ ଯାର ଚିତ୍ତ । ଉଦ୍ଧବ ଜାଣ ସେ କୁପଥ ॥
ଯଦି ଉଦୟ ସତ୍ତ୍ୱଗୁଣ । ତାହାକୁ ସ୍ୱର୍ଗ ବୋଲି ଜାଣ ॥୪୨
ଯାର ଉଦୟ ତମୋଗୁଣ । ସେ ପ୍ରାଣୀ ନରକ ଲକ୍ଷଣ ॥
ପ୍ରାଣୀ ପରମବନ୍ଧୁ ମୁହିଁ । ଗୁରୁଙ୍କ ପ୍ରାୟ ହିତ ବହି ॥
ଉଦ୍ଧବ ଏ ଉତ୍ତମ ଘର । ଅଟେ ମନୁଷ୍ୟ କଳେବର ॥
ମୋ ସର୍ବଗୁଣେ ଯାର ମନ । ତାର ସମୀପେ ସର୍ବଧନ ॥୪୩
ମୋ ଭାବେ ଚିତ୍ତ ଯାର ନାହିଁ । ସଂସାରେ ଦରିଦ୍ରଟି ସେହି ॥
ଅଜିତ ଇନ୍ଦ୍ରିୟ ଯାହାର । ସଂସାରେ କୃପଣ ସେ ନର ॥
ତ୍ରିଗୁଣ ସଙ୍ଗ ଯାର ନାହିଁ । ଉଦ୍ଧବ ଈଶ୍ୱରଟି ସେହି ॥୪୪
ଯେ ପ୍ରଶ୍ନ କଲୁ ବୀର ତୁହି । କହିଲି ବୁଝ ମନଦେଇ ॥
ଅଧିକ ବିଶେଷ ବର୍ଣ୍ଣନ । ପ୍ରସ୍ତାବେ ନାହିଁ ପ୍ରୟୋଜନ ॥
ସକଳ ଭାବେ ଗୁଣ ଦୋଷ । ଉଦ୍ଧବ ଦେଖିବାଟି ଦୋଷ ॥
ଗୁଣ ଦୋଷ ହିଁ ନ ଦେଖଇ । ଉଦ୍ଧବ ଗୁଣ ସେ ବୋଲାଇ ॥୪୫
ବୋଲଇ ଦାସ ଜଗନ୍ନାଥ । ଶ୍ରୀଏକାଦଶେ ଭାଗବତ ॥
ଉଦ୍ଧବ ପୁଚ୍ଛିଲେ ଯେମନ୍ତ । ଅଚ୍ୟୁତ କହିଲେ ତେମନ୍ତ ॥

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଏକାଦଶସ୍କନ୍ଧେ ଭଗବଦୁଦ୍ଧବସଂବାଦେ ଶ୍ରେୟୋଭେଦନିର୍ଣ୍ଣୟୋ ନାମ ବିଂଶୋଽଧ୍ୟାୟଃ ।

❑❑❑

# ଏକବିଂଶ ଅଧ୍ୟାୟ*

ଭକତି ଜ୍ଞାନ କର୍ମଯୋଗେ । ଯେ ଅଧିକାରୀ ଯେଉଁ ମାର୍ଗେ ॥
ତହିଁରେ ଯେବା ଗୁଣ ଦୋଷ । ବିସ୍ତର ଅଧ୍ୟା ଏକବିଂଶ ॥

ଉଦ୍ଧବ କୃଷ୍ଣମୁଖ ଗ୍ରହିଁ । ବୋଲଇ ଶିରେ କର ଦେଇ ॥(ଜ.)

*ଉଦ୍ଧବ ଉବାଚ*

ଭୋ ନାଥ ବେଦ ତୋର ବାଣୀ । ବିଧି ନିଷେଧ ମାର୍ଗେ ଭଣି ॥
ସର୍ବ ବିଷୟ ସର୍ବ ଭେଦ । କହଇ ଗୁଣ ଦୋଷ ବାଦ ॥
ସ୍ୱର୍ଗ ନରକ ବେନି ମାର୍ଗ । ବିଧି ନିଷେଧ କର୍ମ ଭୋଗ ॥
କର୍ମ ସାଧିଲେ ବେନିମତେ । ଅନ୍ତେ ଗମନ ଯଥାପଥେ ॥
ଯେ ମାର୍ଗେ ଗୁଣ ଦୋଷ ସାର । ତେଣେ କି ତୁଟଇ ସଂସାର ॥
ଏ ବେଦ ଜଗତ ଈଶ୍ୱର । ସଂସାର-ଚକ୍ର ମୂଳାଧାର ॥
ଏ ବେଦ ସର୍ବଭୂତ ଆଖି । ବାହ୍ୟ ଅନ୍ତରେ କର୍ମ ସାକ୍ଷୀ ॥
ନାଶଇ ଗୁଣଦୋଷ ଭେଦ । ଏ ବିନା କାହିଁ ମୋକ୍ଷପଦ ॥
ତୋ ମୁଖୁଁ ପୂର୍ବେ ମୁହିଁ ଶୁଣି । ଏ କଥା ମନେ ପରିମାଣି ॥
ସଂଶୟ ହେଲା ମୋର ଚିତ୍ତେ । ଏଣୁ ମୁଁ ପଚ୍ଚରଇ ତୋତେ ॥୧-୫
ଏମନ୍ତ ଉଦ୍ଧବ ବଚନ । ଶୁଣି କହନ୍ତି ଭଗବାନ ॥(ଜ.)

*ଶ୍ରୀ ଭଗବାନୁବାଚ*

ଉଦ୍ଧବ ଏକମନେ ଶୁଣ । ଯେ ଯୋଗତ୍ରୟ ଲୋକତ୍ରାଣ ॥
ଜ୍ଞାନ କରମ ଭକ୍ତି ଘେନି । ଏମନ୍ତ ଯୋଗମାର୍ଗ ତିନି ॥
ଏ ତିନିପଥୁଁ ଅନ୍ୟ ପଥେ । ଉପାୟ ନ ଦେଖି ଜଗତେ ॥
ଏ କଥା ଶୁଣ ମନ ଦେଇ । ଉତ୍ତମ ଶିଷ୍ୟେ ଏହା କହି ॥
ଏ ତିନିଯୋଗ ତୋର ଆଗେ । ଶୁଣ କହିବା ଭେଦଭାବେ ॥ ୬

* ମୂଳ ସଂସ୍କୃତ ଅନୁସାରେ ବିଂଶ ଅଧ୍ୟାୟ ।

କର୍ମର ଫଳ ତ୍ୟାଗ କରି । ବିଷ୍ଣୁର ଭାବ ଚିତ୍ତେ ଧରି ॥
ଦିନ ବଞ୍ଚଇ ଦୃଢ଼ଭାବେ । ସେ ଅଧିକାରୀ ଜ୍ଞାନଯୋଗେ ॥
ଯାହାର କର୍ମଭୋଗ ଚିତ୍ତେ । ନିବର୍ତ୍ତି ନୋହେ କଦାଚିତେ ॥
ତାହାର କର୍ମଯୋଗ ସାର । ବେଦ ବିହିତ ଯେ ବେଭାର ॥
ତାହାକୁ ବୋଲି କର୍ମଯୋଗୀ । ସେ କର୍ମଯୋଗେ ସୁଖଭୋଗୀ ॥ ୭
ବିଷୟରସ ଥାଇ ଚିତ୍ତେ । ବୈରାଗ୍ୟ ସମ୍ଭବେ କିଞ୍ଚିତେ ॥
ମୋ ନାମ ଶ୍ରବଣ କୀର୍ତ୍ତନେ । ଶ୍ରଦ୍ଧା ଉପୁଜେ ଯାର ମନେ ॥
ସେ ଭକ୍ତିଯୋଗେ ଅଧିକାରୀ । କେବେହେଁ ନୁହଇ ସଂସାରୀ ॥
ମୁଁ ତାକୁ ହୁଅଇ ସଦୟ । ତାହାର ସୁବୁଦ୍ଧି ଉଦୟ ॥
ସକଳ ସିଦ୍ଧି ସେ ସାଧଇ । ତାହାର କର୍ମବନ୍ଧ ନାହିଁ ॥ ୮
ଯାବତ ଜ୍ଞାନ ନୋହେ ଚିତ୍ତେ । କର୍ମ ସାଧିବ ଲୋକମତେ ॥
ମୋର ଅମୃତକଥା ପାନେ । ଶ୍ରଦ୍ଧା ନୁହଇ ଯେତେଦିନେ ॥
ତାବତ ବେଦ ଅଧିକାରେ । କର୍ମ କରିବ ଏ ଶରୀରେ ॥
ଏ ତିନିଯୋଗ ବୀର ତୋତେ । କହିଲି ସ୍ୱକର୍ମ ଉଚିତେ ॥ ୯
ସ୍ୱଧର୍ମ ଭାବେ ଏ ଜଗତେ । ଯଜ୍ଞାଦି କର୍ମ କରେ ଯେତେ ॥
ସେ କର୍ମଫଳ ଆଶା ତେଜେ । କେବଳ ମୋ ଚରଣେ ଭଜେ ॥
ଉଦ୍ଧବ ରହେ ସେ ନିଶ୍ଚିନ୍ତେ । ନ ଗମେ ଦୁଃଖସୁଖ ପଥେ ॥
ସ୍ୱର୍ଗ ସମ୍ପଦେ ଇଚ୍ଛା ନାହିଁ । ନରକେ ପଡ଼ିବ ସେ କାହିଁ ॥୧୦
ମୋ ଭାବେ ରହେ ସେ ନିଶ୍ଚିନ୍ତ । ବିକର୍ମେ ନ ଭ୍ରମେ ତା ଚିତ୍ତ ॥
ମୁହିଁ ବସଇ ତାର ଅଙ୍ଗେ । ସକଳ ସିଦ୍ଧି ଥାନ୍ତି ସଙ୍ଗେ ॥
ଉଦ୍ଧବ ଚିତ୍ତେ ଅନୁମାନ । ଏ ମୋ ବିଶୁଦ୍ଧ ତତ୍ତ୍ୱଜ୍ଞାନ ॥
ଜ୍ଞାନରୁ ଭକତି ଉଦୟେ । ଏଣୁ ଏ ଧନ୍ୟ ନରଦେହ ॥୧୧
ଏଣୁ ଯେ ସ୍ୱର୍ଗବାସୀଜନେ । ନିତ୍ୟେ ଚିନ୍ତନ୍ତି ଦୁଃଖମନେ ॥
ଭାରତଭୂମି ମଧ୍ୟେ ଯାଇ । ମନୁଷ୍ୟଦେହ ଆମ୍ଭେ ପାଇ ॥
ଭକତି ଜ୍ଞାନେ ଅନୁକ୍ଷଣେ । ଭଜିବୁଁ କୃଷ୍ଣର ଚରଣେ ॥

ନରକବାସୀ ଏହିମତେ । ନିତ୍ୟେ ଚିନ୍ତନ୍ତି ହୃଦଗତେ ॥
ଦୁର୍ଲଭ ମନୁଷ୍ୟଶରୀର । ନରକ ନିସ୍ତାରଣ ଦ୍ୱାର ॥
ଆମ୍ଭେ ପାଇବୁଁ ତାହା କାହିଁ । ପୂର୍ବେ ଅର୍ଜିଲା ପୁଣ୍ୟ ନାହିଁ ॥
ଏମନ୍ତେ ସ୍ୱର୍ଗେ ନର୍କେ ଥାଇ । ନିତ୍ୟେ ଚିନ୍ତନ୍ତି ଚିତ୍ତେ ଧ୍ୟାୟି ॥
କର୍ମ ସାଧନା ନାହିଁ ତହିଁ । ଏଣୁ ବାଞ୍ଛନ୍ତି ନରଦେହୀ ॥୧୨
ମନୁଷ୍ୟେ ସାଧି କର୍ମଯୋଗ । ସ୍ୱର୍ଗ ନରକ ବେନି ଭୋଗ ॥
ଏ ବୋଲ ବୁଝି ବୁଧଜନେ । ଏ ବେନି ଦେଖନ୍ତି ସମାନେ ॥
ସଂସାର ଈଶ୍ୱରର ମାୟା । ଚିତ୍ତେ ଚିନ୍ତନ୍ତି ନିତ୍ୟେ ଏହା ॥
ସ୍ୱର୍ଗ-ନରକ ବେନିପଥେ । କେବେହେଁ ନ କଳ୍ପନ୍ତି ଚିତ୍ତେ ॥୧୩
ମନୁଷ୍ୟ ଦେହେ ମୂଢ଼ ନରେ । ଅଜ୍ଞାନେ ଭ୍ରମନ୍ତି ସଂସାରେ ॥
ଯେ ଏ ଦୁର୍ଲଭ ଦେହ ବହି । ଆତ୍ମାର ଗତି ନ ଜାଣଇ ॥
ବିଷୟ ରସେ କରେ ଆଶ । ଏ ଦେହେ ପ୍ରୟୋଜନ କିସ ॥
ଯେ ଦେହ ନରକେ ନିପାତେ । ତାହା ନ ଇଚ୍ଛି କଦାଚିତେ ॥
ଏଣୁ ଏ ନରଦେହ ପାଇ । ଯାବତ ମୃତ୍ୟୁ ନ ଘଟଇ ॥
ତାବତ ଜ୍ଞାନ ବଇରାଗ୍ୟେ । ମୋର ଭକତି ଯୋଗମାର୍ଗେ ॥
ମରଣ ମୁଖୁଁ ବେଗେ ତର । ମନୁଷ୍ୟଦେହ ନୋହେ ଚିର ॥
ଏ ଦେହ ସର୍ବସିଦ୍ଧି ହେତୁ । ସଂସାର-ସିନ୍ଧୁ ପାର ସେତୁ ॥୧୪
ଏ ଦେହବୃକ୍ଷେ ହଂସ ବସେ । ଅଜ୍ଞାନେ ଫଳଲୋଭ ଆଶେ ॥
ବୃକ୍ଷ ଆବୋରି ଯମଦୂତେ । ଅମୋଘ ଖଡ୍‌ଗ ଧରି ହସ୍ତେ ॥
ରାତ୍ର ଦିବସ କାଟି ବଳେ । ବୃକ୍ଷ ଉପାଡ଼ନ୍ତି ସମୂଳେ ॥
ଏଣୁ ଏ ବୃକ୍ଷେ ହଂସପକ୍ଷୀ । ଯମକିଙ୍କର ଘାତ ଲକ୍ଷି ॥
ଏ ଫଳଲୋଭ ଛାଡ଼ି ମନେ । ସୁଜ୍ଞାନେ ରହେ ନିଜ ସ୍ଥାନେ ॥୧୫
ରାତ୍ର ଦିବସ କାଳଦୂତେ । ଆୟୁଷ ହରନ୍ତି ନିରତେ ॥
ଏ ବୋଲ ବୁଝି ବୁଧ ନରେ । ଆକୁଳେ କମ୍ପନ୍ତି ଅନ୍ତରେ ॥
ଏ ଦେହଧର୍ମ ଦୂର କରି । ସକଳ ଚେଷ୍ଟା ପରିହରି ॥
ଶାନ୍ତି ସମାଧି ପୂର୍ଣ୍ଣଜ୍ଞାନେ । ଥାନ୍ତି ନିର୍ଗୁଣ ଆତ୍ମଧ୍ୟାନେ ॥୧୬

ସର୍ବଶରୀର ମଧ୍ୟେ ସାର । ଦୁର୍ଲଭ ନର କଳେବର ॥
ସୁଲଭ ନାବରୂପେ ଘାଟେ । ବନ୍ଧନ ଭବସିନ୍ଧୁ ତଟେ ॥
ଏ ନାବେ ଗୁରୁ କର୍ଣ୍ଣଧାର । ମୁହିଁ ଅନୁକୂଳ ସମୀର ॥
ଏମନ୍ତ ନାବ ଥାଉଁ କୂଳେ । ଯେବା ନ ତରେ ଭବଜଳେ ॥
ସେ ନର ହୀନ ମୂଢ଼ମତି । ତାହାକୁ ବୋଲି ଆତ୍ମଘାତୀ ॥
ସଂସାରକୂପେ ସେ ପତିତ । ଦୁର୍ଲଭ ଦେହେ ସେ ବଞ୍ଚିତ ॥୧୭
ଏଣୁ ନିବୃତ୍ତଚିତ୍ତେ ଯୋଗୀ । ସର୍ବ ଆରମ୍ଭ ପରିତ୍ୟାଗି ॥
ଅଭ୍ୟାସ ବଳେ ଅନ୍ତର୍ଗତେ । ମନ ରୁନ୍ଧିବ ଦୃଢ଼ଚିତ୍ତେ ॥୧୮
ଏ ମନ ସ୍ୱଭାବେ ଚଞ୍ଚଳ । କେବେହେଁ ନୁହଇ ନିଶ୍ଚଳ ॥
ପବନ ଗତି ଅନୁରୋଧେ । ସମେ ସାଧନ ଦୃଢ଼ବନ୍ଧେ ॥
ପବନ ଦ୍ୱାରେ ମନ ଥୋଇ । ଆସନ ଦୃଢ଼ବନ୍ଧେ ଦେଇ ॥
ଅଭ୍ୟାସେ ବଶ ହୋନ୍ତି ତାର । ପ୍ରାଣ ଇନ୍ଦ୍ରିୟ ଅହଙ୍କାର ॥
ଚଞ୍ଚଳ ମନ ଏଣେ ଧରି । ସାଧିବ ସତ୍ତ୍ୱଗୁଣେ ଭରି ॥
ପରମଯୋଗ ଏ ସାଧନ । ଅଭ୍ୟାସେ ମନ ନିରୋଧନ ॥
ଚଞ୍ଚଳ ତୁରଙ୍ଗମ ଯେହ୍ନେ । କ୍ରମେ ସୁସାଧ୍ୟ ଦିନେ ଦିନେ ॥
ଅଳପ ଅଳପ ଅଭ୍ୟାସେ । ମନପବନ ସାଧିବ ସେ ॥୧୯-୨୧
ନିରତେ ତତ୍ତ୍ୱେ ଦେହ ବହି । ସଂସାରେ ସାକ୍ଷୀପ୍ରାୟେ ହୋଇ ॥
ଦେଖଇ ଜନ୍ତୁଙ୍କ ମରଣ । ଭବସାଗରେ ସଞ୍ଚରଣ ॥
ପ୍ରସନ୍ନ ହୋଏ ଯେବେ ମନ । ଅସତ୍ୟ ଦେଖେ ତ୍ରିଭୁବନ ॥୨୨
ଗୁରୁବଚନେ ଚିତ୍ତ ସ୍ଥିର । ବୈରାଗ୍ୟ ବିଷୟେ ତାହାର ॥
ନିରତେ ହୋଇ ସ୍ଥିରମନା । କ୍ରମେ ସେ ଖଣ୍ଡେ ଦୁର୍ବାସନା ॥୨୩
ସଙ୍କଳ୍ପ ତୁଟେ ନିରବଧି । ଯମାଦି ଯୋଗପଥ ସାଧି ॥
ମନକୁ ତତ୍ତ୍ୱଜ୍ଞାନେ ଆଣି । ଭକତିଯୋଗ ପରିମାଣି ॥
ମୋ ରୂପ କରି ଉପାସନା । କୀର୍ତ୍ତନ ଅର୍ଚ୍ଚନ ବନ୍ଦନା ॥
ମନ ସଂଯମ କରି ହୃଦେ । ନିଶ୍ଚଳେ ଦେଇ ମୋର ପାଦେ ॥

ଆନନ୍ଦେ ଭ୍ରମଇ ଶଯ୍ୟଲେ । ଯେବେ ସେ ଦୁଷ୍ଟ ସଙ୍ଗମେଳେ ॥
ନିନ୍ଦିତ କର୍ମମାନ କରେ । ସେ ପାପ ମୋର ଧ୍ୟାନ ହରେ ॥
ଏ ବିନୁ ଅନ୍ୟ ପ୍ରାୟଶ୍ଚିତ୍ତେ । ପାପ ନ ଯାଏ କଦାଚିତେ ॥୨୪,୨୫
ଯେ ଯାହା ଅଧିକାର କର୍ମ । ଏ ବିନେ ଅନ୍ୟ ଯେ ଅଧର୍ମ ॥
ମୋ ନାମ ଶ୍ରବଣ କୀର୍ତ୍ତନେ । ଶ୍ରଦ୍ଧା ଉପୁଜେ ଯାର ମନେ ॥
ନିବୃତ୍ତେ ସର୍ବକର୍ମ ତେଜେ । କେବଳ ଦୃଢ଼େ ମୋତେ ଭଜେ ॥
ସଙ୍କଳ୍ପ ଭୋଗ ଦୁଃଖମୟେ । ଯେବେ ଛାଡ଼ନ୍ତେ ସୁଖୀ ନୋହେ ॥
ଯେବା ମିଳିବ ଅକସ୍ମାତେ । ଆନନ୍ଦେ ସମର୍ପିବ ମୋତେ* ॥୨୬-୨୮
ପୀରତି କରି ମୋ ଚରଣେ । ଭାବେ ଭଜିବ ଅନୁକ୍ଷଣେ ॥
ସୁଦୃଢ଼େ ଭକତ ସମାଜେ । ମୁଁ ତାର ହୃଦୟ ପଙ୍କଜେ ॥
ବସଇ କାମ ଦୂର କରି । ନିର୍ମଳ ଜ୍ୟୋତି ରୂପ ଧରି ॥
ଯେବେ ସକଳଭୂତେ ଏକେ । ମୁଁ ବସିଥିଲା ପ୍ରାୟେ ଦେଖେ ॥
କାମ ନ ରହେ ତାର ଦେହେ । ସଂସାରୁ ତରେ ଏ ଉପାୟେ ॥
ସଂଶୟ ଗ୍ରନ୍ଥି ତାର ହୃଦେ । ମୁହିଁ ଛେଦଇ ଅପ୍ରମାଦେ ॥
ସକଳ କର୍ମ ତତକ୍ଷଣେ । ଦହଇ ମୋର ସୁମରଣେ ॥
ମୁହିଁ ଅଖିଳ ଆତ୍ମା ଅଟେ । ମୋର ଦର୍ଶନେ ସର୍ବ ତୁଟେ ॥
ଏ ଭାବ ବୁଝି ନିରବଧି । ଯତ୍ନେ ଭକତି ଯୋଗ ସାଧି ॥୨୯,୩୦
ଏଣୁ ଭକତିଯୋଗ ଯୁକ୍ତେ । ଯେ ଯୋଗୀ ଭଜେ ଏକଚିତ୍ତେ ॥
ସେ ମହାଶୟ ଏ ଜଗତେ । ଜ୍ଞାନ ବୈରାଗ୍ୟ ଅବା କେତେ ॥୩୧

---

* ଅର୍ଥାତ୍ ଜ୍ଞାନୀ ଓ ଭକ୍ତ ପକ୍ଷେ ନିଜ ନିଜ ଅଧିକାରରେ ନିଷ୍ଠା ହିଁ ଧର୍ମ। ଏ ବିନୁ ଅନ୍ୟ କର୍ମ ଅଧର୍ମ। ଏଣୁ ଭଗବାନଙ୍କ ନାମଗୁଣାଦି ଶ୍ରବଣ-କୀର୍ତ୍ତନରେ ଶ୍ରଦ୍ଧା କରୁଥିବା ଲୋକ ଯଦି ବୈଦିକ ଓ ଲୌକିକ କର୍ମ ସମୂହ ବା ସ୍ତ୍ରୀ ପୁତ୍ରାଦି ବିଷୟ ସକଳ ଦୁଃଖପ୍ରଦ ଜାଣି ସୁଦ୍ଧା ତାହା ଛାଡ଼ି ନ ପାରେ, ତେବେ ତହିଁରେ ଆସକ୍ତ ନ ହୋଇ ସମସ୍ତ ଭୋଗ୍ୟ ବସ୍ତୁ ଭଗବଦର୍ପଣ କରି ଭଜନରତ ହେବା ଉଚିତ।

ଏଣୁ ସଂସାରେ ଯୋଗୀଜନ । ନିର୍ବାଣପଦ ତପ ଦାନ ॥
ଜ୍ଞାନ ବୈରାଗ୍ୟ ଦୂର କରି । ମୋର ଭକତି ଅନୁସରି ॥
ସର୍ବ ସଂଶୟ ଦୂର କରି । ମାୟା ସଂସାରୁ ଯାନ୍ତି ତରି ॥
ଏଣୁ ଭକତ ମୋର ଯେବେ । କଳ୍ପଇ ସ୍ୱର୍ଗ ଅପବର୍ଗେ ॥
ଆଉ ଅଧିକ ବାଞ୍ଛା ଯେତେ । ତା ପାଦେ ଖଟନ୍ତି ସମସ୍ତେ ॥୩୨,୩୩
ଏଣୁ ଯେ ମୋ ଭାବ ଜାଣଇ । ତାର କୈବଲ୍ୟ ଇଚ୍ଛା ନାହିଁ ॥
ମୁହିଁ ସମ୍ପଦ ଦେଲେ ତାରେ । ତକ୍ଷଣେ ଦୂରେ ପରିହରେ ॥୩୪
ସକଳଭାବେ ସେ ଉଦାର । ନିରପେକ୍ଷ ଯେ ଜ୍ଞାନ ତାର ॥
ଏଣୁ ନିଷ୍କାମ ତାର ମତି । ସେ ଲଭେ ଏକାନ୍ତ ଭକତି ॥୩୫
ମୋର ଭକତ ଯେଉଁ ନର । ଶୁଭ ଅଶୁଭ ନାହିଁ ତାର ॥
ତାହାର ନାହିଁ ଗୁଣ ଦୋଷ । ମୋହର ଚରଣେ ବିଶ୍ୱାସ ॥୩୬
ଏ ରୂପେ ଭକ୍ତିଯୋଗ ପଥେ । ଯେ ପ୍ରାଣୀ ଆଶ୍ରେ କରେ ମୋତେ ॥
ସର୍ବ ସଙ୍କଳ୍ପ ତାରେ ମିଳେ । ସେ ମୋତେ ଭଜଇ ନିଶ୍ଚଳେ ॥
ଏଣୁ ମୁଁ ତୋହର ବଚନେ । ଜ୍ଞାନ ବୈରାଗ୍ୟ ଅନୁମାନେ ॥
କହିଲି ଭକତି ଲକ୍ଷଣ । ଏବେ ହୋ ସାବଧାନେ ଶୁଣ ॥୩୭
ପାମର ହୀନ ଜଗନ୍ନାଥ । ଗୀତ ପ୍ରବନ୍ଧେ ଭାଗବତ ॥
ଯାହା କହିଲି ଜନହିତେ । ସୁଜନେ ଶୁଣ ଏକଚିତ୍ତେ ॥
ଉଦ୍ଧବ ମାଧବ ସଂବାଦ । ଶୁଣନ୍ତେ ନ ଲାଗେ ପ୍ରମାଦ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ଏକାଦଶସ୍କନ୍ଧେ ଭଗବଦୁଦ୍ଧବସଂବାଦେ ଯୋଗତ୍ରୟବର୍ଣ୍ଣନଂ
ନାମ ଏକବିଂଶୋଽଧ୍ୟାୟଃ ।

❑❑❑

# ଦ୍ୱାବିଂଶ ଅଧ୍ୟାୟ*

ଦ୍ୱାବିଂଶେ ଦ୍ରବ୍ୟ ଦେଶ କାଳ । ଶୁଦ୍ଧ ଅଶୁଦ୍ଧର ବିଗ୍ରହ ॥

*ଶ୍ରୀ ଭଗବାନୁବାଚ*

କୃଷ୍ଣ କହନ୍ତି ବୀର ଶୁଣ । ଏ ମୋର ଭକତି ଲକ୍ଷଣ ॥
ଜ୍ଞାନ ବୈରାଗ୍ୟ ଏଥୁଁ ଜାତ । ଏଣୁ ତତ୍ତ୍ୱଜ୍ଞାନ ପ୍ରାପତ ॥
ଏ ମାର୍ଗ ତେଜି କ୍ଷୁଦ୍ରପଥେ । ଯେ ପ୍ରାଣୀ ଭଜନ୍ତି ଜଗତେ ॥
କାମେ ଚଞ୍ଚଳ ଚିତ୍ତେ ରାଗ । ଏଣୁ ସେ କରେ ନାନା ଭୋଗ ॥
ସେ ଗତାଗତ ପଥେ ଭ୍ରମେ । ଜନ୍ମମରଣ ଦୁଃଖ ଶ୍ରମେ ॥
ତାହାର ଦୁଃଖ ମାତ୍ର ସାର । କେବେହେଁ ନ ତୁଟେ ସଂସାର ॥ ୧
ଭକତି ଜ୍ଞାନ ଯେ ବିଗ୍ରହେ । ସେ ଗୁଣଦୋଷ ନ ସୁମରେ ॥
ଏ ଦୋଷଗୁଣ କର୍ମଯୋଗେ । ବିଗ୍ରହ କରି ବେଦମାର୍ଗେ ॥
ଯେ ବର୍ଣ୍ଣେ ଯେ ଧର୍ମ ବିଗ୍ରହ । ଯେ ବିଧି ଯାର ଅଧିକାର ॥
ନିୟତ କର୍ମ ବିଲଂଘନେ । ବିଗ୍ରହି ଦୋଷ ବେଦଜ୍ଞାନେ ॥ ୨
ଦ୍ରବ୍ୟେ ନ ବସେ ଦୋଷ-ଗୁଣ । ଶୁଦ୍ଧ-ଅଶୁଦ୍ଧ ବିଗ୍ରହଣ ॥
ଆଗ୍ରହ ମୂଳେ ଧର୍ମ ଜାତ । ଧର୍ମେ ଧାରଣ ଏ ଜଗତ ॥
ଏଣୁ ଧାର୍ମିକ ପ୍ରାଣୀଙ୍କର । ନିଗମ ଦେଖାଏ ଆଗ୍ରହ ॥
ଉଦ୍ଧବ ଭକ୍ତିଯୋଗେ ମୋର । ନାହିଁ ନିଗମେ ଅଧିକାର ॥୩,୪
ପୃଥିବୀ ଅଗ୍ନି ବାୟୁ ଜଳ । ଆକାଶ ମିଶି ପଞ୍ଚ ଠୁଳ ॥
ଏ ପଞ୍ଚଭୂତ ଦେହ ଯେତେ । ବ୍ରହ୍ମାଦି ସ୍ଥାବର ପର୍ଯ୍ୟନ୍ତେ ॥
ସମାନ ଦ୍ରବ୍ୟେ ନାନାଭେଦେ । ବ୍ରାହ୍ମଣେ ବିଗ୍ରହନ୍ତି ବେଦେ ॥
ଏ ନାମ ରୂପ ଗୁଣ ଦୋଷ । ନିଗମ ବଚନେ ପ୍ରକାଶ ॥୫,୬
ଏ ହେତୁ ଲୋକବ୍ୟବହାର । ବିବିଧ କଳ୍ପନା ବିଗ୍ରହ ॥

* ମୂଳ ସଂସ୍କୃତ ଅନୁସାରେ ଏକବିଂଶ ଅଧ୍ୟାୟ ।

ଯେ ଦେଶ କାଳ ଆଦି ଦ୍ରବ୍ୟ । ବେଦ ବିପ୍ର ହେ ଉଦ୍ଧବ ॥
ଯେ ତହିଁ ଗୁଣ ଦୋଷ ବିଧି । କର୍ମ ସଂକୋଚେ ଏ ପ୍ରସିଦ୍ଧି ॥ ୭
ଯେ ଦେଶେ କୃଷ୍ଣମୃଗସାର । ନ ଦେଖି ବିପ୍ରଭକ୍ତ ନର ॥
ସେ ଦେଶେ ପୁଣ୍ୟ ଲେଶ ନାହିଁ । ତହିଁ ରହିବା ନ ଯୋଗାଇ ॥
ଥିଲେହେଁ କୃଷ୍ଣମୃଗ ସାର । ଯେବେ ନ ଥାଇ ସାଧୁ ନର ॥
ସେ ଦେଶ ଦେଶରେ ଅସାର । ନାହିଁ ସୁକର୍ମେ ଅଧିକାର ॥
ଅଙ୍ଗ ବଙ୍ଗ କଳିଙ୍ଗ ଦେଶ । ସେ ନୋହେ ସଂସ୍କାର ବିଶେଷ* ॥
ଊଷରଭୂମି ମ୍ଳେଚ୍ଛେ ଯହିଁ । ସେ ଦେଶ ପତିତ ବୋଲାଇ ॥ ୮
କହିଲି ଦେଶଶୁଦ୍ଧି ଗୁଣ । ଏବେ ତୁ କାଳଶୁଦ୍ଧି ଶୁଣ ॥
ବିଶୁଦ୍ଧ କାଳେ କର୍ମ କଲେ । ସେ କର୍ମଫଳ ଧରେ ଭଲେ ॥
ଏଣୁ ଅଶୁଦ୍ଧ ଦେଶ କାଳେ । କର୍ମ କରନ୍ତି ଯେବା ବଳେ ॥
ତାହାଙ୍କ କର୍ମଫଳ ନାହିଁ । ଅଶୁଦ୍ଧ ଦୋଷେ ନାଶ ଯାଇ ॥
ଏଣୁ ପଣ୍ଡିତ ଜ୍ଞାନ ଗୁଣେ । ବିଶୁଦ୍ଧ ଦେଶେ ଶୁଭକ୍ଷଣେ ॥
ବିପ୍ରୁରି କର୍ମ ସେ କରନ୍ତି । ଅଶୁଦ୍ଧ କାଳ ବିବର୍ଜନ୍ତି ॥ ୯

---

* 'ଅଙ୍ଗ ବଙ୍ଗ କଳିଙ୍ଗ......ସଂସ୍କାର ବିଶେଷ' ଏତିକି ଅଂଶ ମୂଳ ସଂସ୍କୃତାନୁଗତ ନୁହେଁ। ଏହା ଶ୍ରୀଧରସ୍ୱାମୀଙ୍କ ଟୀକା ଅନୁକରଣରେ ଓଡ଼ିଆ ଭାଗବତରେ ସ୍ଥାନିତ ହୋଇଛି। କଳିଙ୍ଗ ଦେଶ ବିଶେଷ ସଂସ୍କାରିତ ହୋଇ ନ ଥିଲେହେଁ ଏହା ଅପବିତ୍ର ଦେଶ ନୁହେଁ। କାରଣ ଶ୍ରୀମଦ୍‌ଭାଗବତ ଅନୁସାରେ ଯେଉଁ ଯେଉଁ ଦେଶରେ ଭଗବାନ ଶ୍ରୀହରିଙ୍କ ଅର୍ଚ୍ଚାବିଗ୍ରହ ପ୍ରପୂଜିତ, ସେହି ଦେଶ ପରମ କଲ୍ୟାଣକାରୀ ଅଟେ—**'ଯତ୍ର ଯତ୍ର ହରେରର୍ଚ୍ଚା ସ ଦେଶଃ ଶ୍ରେୟସାଂ ପଦମ୍'** (୭।୧୪।୨୯)। ଉତ୍କଳ ପ୍ରଦେଶରେ ସ୍ୱୟଂ ପ୍ରଭୁ ଜଗନ୍ନାଥ ବିରାଜିତ ହୋଇ ଦାରୁବ୍ରହ୍ମରୂପରେ ଆବହମାନ କାଳରୁ ପୂଜିତ ହୋଇ ଆସୁଛନ୍ତି। ଏହାଛଡ଼ା ଅନେକ ଭକ୍ତ ଓ ସନ୍ଥଙ୍କ ଧର୍ମ ପ୍ରଚାର, ବିଶେଷତଃ କଳିପାବନାବତାର ଶ୍ରୀଚୈତନ୍ୟ ମହାପ୍ରଭୁଙ୍କର ପୁରୁଷୋତ୍ତମ କ୍ଷେତ୍ରରେ ଦୀର୍ଘକାଳ ଅବସ୍ଥାନ ତଥା ତାଙ୍କର ଭକ୍ତିରସ ମନ୍ଦାକିନୀର ପ୍ରବାହ ଦ୍ୱାରା ବହୁ ପରିମାଣରେ ପ୍ରଭାବିତ ହୋଇଥିବାରୁ ଏ ଦେଶ ପବିତ୍ର ଅଟେ।

ଏଣୁ ସକଳ ଦ୍ରବ୍ୟଗତେ । ବିଗ୍ରହି ଶୁଦ୍ଧାଶୁଦ୍ଧ ମତେ ॥
ବିଶୁଦ୍ଧ ଦ୍ରବ୍ୟ ଘେନି କାଳେ । କର୍ମ ସାଧନ୍ତି ଏ ଶଯ୍ୟଳେ ॥
ଯେ ଦ୍ରବ୍ୟ ଯେଣେ ଶୁଦ୍ଧ ହୋଇ । ଶୁଣ ଉଦ୍ଧବ ମନଦେଇ ॥
କେତେହେଁ ଦ୍ରବ୍ୟ ଏ ଶଯ୍ୟଳେ । ପବିତ୍ର ହୋନ୍ତି ଶୁଦ୍ଧଜଳେ ॥
କେତେହେଁ ବ୍ରାହ୍ମଣ ବଚନେ । ପବିତ୍ର ହୋନ୍ତି ବିଦ୍ୟମାନେ ॥
କେତେହେଁ ସଂସ୍କାର ବିଶେଷେ । ପବିତ୍ର ହୋନ୍ତି ଶୁଦ୍ଧଦେଶେ ॥
କେତେହେଁ ଅଶୁଦ୍ଧ ସଙ୍ଗତେ । ଅଶୁଦ୍ଧ ବୋଲାନ୍ତି ଜଗତେ ॥
ପତିତ ଅନ୍ତ୍ୟ[୧] ଯାହା ଛୁଇଁ । ସେ ପୁଣି ଅଶୁଦ୍ଧ ବୋଲାଇ ॥
କେତେହେଁ ଜଳ ବୃଷ୍ଟିକାଳେ । ଦୂଷିତ ହୋନ୍ତି ଏ ଶଯ୍ୟଳେ ॥
ସେ ପୁଣି ଶୁଦ୍ଧ ଦରଶନେ । ଅଶୁଦ୍ଧ ହୋଏ କେ ବଚନେ ॥
ସେ ପୁଣି ପବିତ୍ର ସମୟେ । ସ୍ୱଭାବ ଗୁଣେ ଶୁଦ୍ଧ ହୋଏ ॥
ଅଶୌଚକାଳେ ଦ୍ରବ୍ୟ ଯେତେ । ଅଶୁଦ୍ଧ ହୋନ୍ତି ଶାସ୍ତ୍ରମତେ ॥
ଶୁଦ୍ଧ ଅଶୁଦ୍ଧ ଏହିରୂପେ । ବିଗ୍ରହ କରି ବେଦକଳ୍ପେ ॥୧୦,୧୧
ଗ୍ରହଣ ରବି ଚନ୍ଦ୍ର ଯେବେ । ସ୍ନାନେ ପବିତ୍ର ହୋନ୍ତି ତେବେ ॥
ଧାନ୍ୟ କାମିନୀ ବୃକ୍ଷ ଫଳେ । ପବିତ୍ର ହୋନ୍ତି ଯଥାକାଳେ ॥
ସୂର୍ଯ୍ୟ କିରଣେ ଦ୍ରବ୍ୟ ତିନି । ପବିତ୍ର ଅସ୍ଥି ଚର୍ମ ଭୂମି ॥
ଧାତୁବିକାର ରସଦ୍ରବ୍ୟ । ଅନଳେ ପବିତ୍ର ଏ ସର୍ବ ॥
ଜଳ ସିଞ୍ଚନେ ଭୂମି ପଥ । ତକ୍ଷଣେ ହୁଅଇ ପବିତ୍ର ॥
ଗୋମୟଜଳ ସମାର୍ଜନେ । ପବିତ୍ର ଚତ୍ୱର[୨] ଅଙ୍ଗଣେ ॥
ମନୁଷ୍ୟଦେହ ପଶି ଜଳେ । ପବିତ୍ର ହୋଏ ସ୍ନାନକାଳେ ॥୧୨,୧୩
ଶୁଣିଲୁ ଦ୍ରବ୍ୟଶୁଦ୍ଧି ତୁହି । ଶୁଣ କର୍ତ୍ତାର ଶୁଦ୍ଧି କହି ॥
ସଂସ୍କାର ତପ ଜପ ଦାନ । ଏ ସର୍ବ ପବିତ୍ର ବିଧାନ ॥
ଯେତେ ଏ ବିବିଧ ପ୍ରକାରେ । ପବିତ୍ର ବାହ୍ୟ କଳେବରେ ॥

---

୧. ଅନ୍ତ୍ୟ—ଅନ୍ତ୍ୟଜ ବା ହୀନ ଜାତି । ୨. ଚତ୍ୱର—ଆବାସ, ଚଉତରା ।

ମୋର ସ୍ମରଣ ଯେହୁ କରେ । ସେ ଶୁଦ୍ଧ ଅନ୍ତରେ ବାହାରେ ॥
ଯେ ନିତ୍ୟେ ମୋ ନାମ ସୁମରି । ସେ ସର୍ବ କର୍ମେ ଅଧିକାରୀ ॥୧୪
ଗୁରୁବଚନେ ମନ୍ତ୍ରତନ୍ତ୍ର । ନ୍ୟାସେ ଶୋଧନ ସର୍ବଗାତ୍ର ॥
ମୋହର ନାମ ଉଚ୍ଚାରିଲେ । ସକଳେ ଶୁଦ୍ଧ ହୋନ୍ତି ଭଲେ ॥
ଏମନ୍ତ ଶୁଦ୍ଧତନୁ ଧରି । ବିଶୁଦ୍ଧ ଦ୍ରବ୍ୟେ କର୍ମ କରି ॥
ପରମ ଧର୍ମ ତେବେ ସାଧେ । ମୋରେ ସମର୍ପେ ଅପ୍ରମାଦେ ॥
ଏଣୁ ବିଶୁଦ୍ଧକର୍ମ କଲେ । ପବିତ୍ର ହୋନ୍ତି କଳେବରେ ॥
ଯଥାର୍ଥ ଫଳ ସେ ଲଭନ୍ତି । ଯେବା ଏମନ୍ତ ନ କରନ୍ତି ॥
ସେ କର୍ମ ଅଧର୍ମ ସଂଯୁତ । ତାହାକୁ ବୋଲି ବିପରୀତ ॥
ସେ ଫଳ ବିପରୀତେ ପାଇ । ଯେଣୁଟି ତହିଁ ଦୋଷ ଥାଇ ॥୧୫
ବିଧି ନିଷେଧ ବିସ୍ମରଣେ । ଏଣୁ ସମ୍ଭାଦି ଦୋଷଗୁଣେ ॥
ଯେ ଯାହା କୁଳ ବ୍ୟବହାର । ନ ଘଟେ ଗୁଣ ଦୋଷ ତାର ॥୧୬
ଯେବେ ଅଶୁଦ୍ଧ କର୍ମ ଦୋଷେ । ତାହାର ଚିତ୍ତେ ପାପ ମିଶେ ॥
ସହଜେ ପାପକର୍ମ କରେ । ଯେ କର୍ମେ ପୂର୍ବପୁଣ୍ୟ ହରେ ॥
ଦେହ ଅନ୍ତରେ ପାପଫଳେ । ଜନମ ପତିତ ଗ୍ରଣ୍ଡାଳେ ॥
ନିନ୍ଦିତ ବୃତ୍ତି ତା ଜୀବନ । ବଞ୍ଚଇ କରି ସୁରାପାନ ॥
ସ୍ୱଭାବେ ପାପୀ ପ୍ରାଣୀଙ୍କର । ନିନ୍ଦିତ ନୋହେ ପାପାଗ୍ରର ॥
ପଙ୍କେ ପଡ଼ିଲେ ଯେହ୍ନେ ପ୍ରାଣୀ । ପଙ୍କିଳ ବୋଲି ତାକୁ ଜାଣି ॥୧୭
ଏଣୁ ସେ କର୍ମର ସକାଶେ । ବନ୍ଧନ ହୁଅଇ ବିଶେଷେ ॥
ସେହି ସକାଶୁଁ ତା ନିବୃତ୍ତି । ବନ୍ଧନ ଉଶ୍ୱାସ କରନ୍ତି ॥
ଏଣୁ ନିର୍ମଳ କର୍ମ ଗୁଣ । ଅଶେଷ ଦୋଷ ନିବାରଣ ॥୧୮
ଶୁଣ ଉଦ୍ଧବ କହୁଁ ତୋତେ । ବିଷୟେ ଧ୍ୟାନ ଯାର ଚିତ୍ତେ ॥
ବିଷୟ ଭୋଗେ ସେ ବନ୍ଧନ । ବଢ଼ଇ କାମ୍ୟକର୍ମେ ମନ ॥
କାମ ଜନ୍ମିଲେ ତାର ଫଳ । ବଢ଼ଇ ବିରୋଧ କନ୍ଦଳ ॥୧୯
କନ୍ଦଳୁଁ କ୍ରୋଧ ହୋଏ ଜାତ । ଏଣୁ ତା ଜ୍ଞାନ ହୋଏ ହତ ॥

ହୃଦୟେ ତମଗୁଣ ବସେ । ତାର ଚେତନା ବଳେ ଧ୍ୱଂସେ ॥
ଚେତନା ହତେ ହତଜ୍ଞାନ । ତେବେ ଶରୀର ହୋଏ ଶୂନ୍ୟ ॥
ବୁଦ୍ଧି ବିହୀନେ ମୂଢ଼ଜନ । ସେ ହୋଏ ମୂର୍ଚ୍ଛିତ ସମାନ ॥
ବର୍ତ୍ତଇ ମୃତ ଶବ ପ୍ରାୟେ । ଜୀବ ପରମ ଜ୍ଞାନ ନୋହେ ॥୨୦,୨୧
ବୃକ୍ଷର ପ୍ରାୟେ ସେ ଜୀଅଇ । ପାପବଲ୍‌କଳ ମଧ୍ୟେ ଥାଇ ॥
ଯେ ତାର ନାସିକା ପବନ । କମାର ଭାତିର[୧] ସମାନ ॥
ବିଷୟ ସଙ୍ଗେ ଏତେ ଗୁଣ । ଉଦ୍ଧବ ସାବଧାନେ ଶୁଣ ॥୨୨
ଏଣୁ ଏ ନିଗମ ବଚନ । ଯେ ଫଳଶ୍ରୁତି ଶୁଣି କର୍ଣ୍ଣ ॥
କର୍ଣ୍ଣରୋଚନ ମାତ୍ର ସାର । କେବେହେଁ ନୋହେ ଭବୁଁ ପାର ॥
ନ ଲଭେ ପରିତ୍ରାଣ ଗତି । ବେଦବଚନେ ଫଳ ଚିନ୍ତି ॥
ବେଦର ତତ୍ତ୍ୱ ଯେ ନ ଜାଣେ । ସେ ଫଳଶ୍ରୁତି ପରିମାଣେ ॥
ରୋଗ ବିନାଶ ହେତୁ ଯେହ୍ନେ । ଔଷଧ ବୈଦ୍ୟର ବଚନେ ॥
ଖଣ୍ଡ ଶାକର ହସ୍ତେ ଘେନି । ପୁତ୍ରକୁ ଯେସନେ ଜନନୀ ॥
ବୋଲଇ ମଧୁର ବଚନ । ତୁ ବେଗେ କର ଏହା ପାନ ॥
ଏ ଖଣ୍ଡ ଦେବି ତୋତେ ମୁହିଁ । ଭକ୍ଷଣ ନ କଲେ ନ ଦେଇ ॥
ଏ ଫଳଶ୍ରୁତି ଏହିମତେ । ମୂର୍ଖକୁ ଭଣ୍ଡାଇ ଜଗତେ ॥
ନାନା ପ୍ରକାରେ ପ୍ରବର୍ତ୍ତାଇ । ପୁତ୍ରକୁ ମାତା ପ୍ରାୟ ହୋଇ ॥୨୩
ଏଣୁ ଏ ଜନ୍ମଇ ଜଗତେ । ବେଦବଚନେ କର୍ମପଥେ ॥
ଆକୁଳ ହୃଦୟେ ନିରତେ । ଭ୍ରମଇ ପୁତ୍ର ଦାରା ଅର୍ଥେ ॥
ଏ ଧନ ସୁତ ପରିବାର । ଅନର୍ଥ କାରଣ ବେଭାର ॥
ଭ୍ରମଇ ମାୟା ଜଡ଼ ଘୋରେ । ଆତ୍ମାର ଗତି ନ ସୁମରେ ॥
ଆପଣା ଅର୍ଥଭୋଗ ଚିନ୍ତି । ନିଗମମାର୍ଗେ ସେ ଭ୍ରମନ୍ତି ॥

---

୧. ଭାତି—ପବନ ଦେବା ନିମନ୍ତେ କମାରଶାଳରେ ବ୍ୟବହୃତ ଚମଡ଼ା ଥଳିବିଶେଷ ।

ଏ ବେଦ ଅର୍ଥ ଯେବେ ଜାଣେ । ଚିତ୍ତେ ପଣ୍ଡିତ ପରିମାଣେ ॥
ତେବେ କି ଭ୍ରମଇ ସଂସାରେ । ଜନ୍ମମରଣ ଦୁଃଖ ଘୋରେ ॥୨୪,୨୫
ଏଣୁ ଯେ ପ୍ରାଣୀ କୁପଣ୍ଡିତ । ନ ଜାଣେ ବେଦପଥ ତତ୍ତ୍ୱ ॥
ପୁଷ୍ପକୁ ଫଳ ପ୍ରାୟ ମଣି । ଶ୍ରୁତିବଚନ ପରିମାଣି ॥
ନିରତେ ଭ୍ରମେ ପୁଷ୍ପବାସେ । ଫଳ ଭକ୍ଷଣ ଲୋଭ ଆଶେ ॥
ଏଣୁ ଅଜ୍ଞାନୀ ଅବିବେକ । ଭ୍ରମଇ ଇହ ପରଲୋକ ॥୨୬,୨୭
ଯାହାଙ୍କ ଇଷ୍ଟ ଫଳଶ୍ରୁତି । ସେ ପ୍ରାଣୀ ମୋତେ ନ ଜାଣନ୍ତି ॥
ବସଇ ପ୍ରାଣୀ ହୃଦଗତେ । ଜୀବନ ରୂପେ ମୁଁ ସାକ୍ଷାତେ ॥
ମୋତେ ନ ଚିନ୍ତି ଜଡ଼ମତି । ଅମୃତ ମଣେ ଫଳଶ୍ରୁତି ॥
ଏଣୁ ଭ୍ରମଇ ମାୟାମୋହେ । କେବଳ ଆକୁଳ ହୃଦୟେ ॥୨୮
ଉଦ୍ଧବ ଶୁଣ ତତ୍ତ୍ୱ କହି । ମୋର ସମ୍ମତ ମାର୍ଗ ଏହି ॥
ତତ୍ତ୍ୱ ନ ବୁଝି ବେଦପଥେ । ଫଳ ଭୁଞ୍ଜନ୍ତି କୁପଣ୍ଡିତେ ॥
ହିଂସା ନ ଛାଡ଼େ ଯେବେ ହୃଦେ । ଶ୍ରୁତିବଚନ ଅନୁବାଦେ ॥
ଯଜ୍ଞେ ହିଂସନ୍ତି ପଶୁଗଣ । ଅନାସ୍ଥା କରି ତତ୍ତ୍ୱଜ୍ଞାନ ॥
ଦେବତା ପିତୃଯଜ୍ଞ କରି । ହିଂସାରେ ଭ୍ରମେ ଜୀବ ମାରି ॥୨୯,୩୦
ଭ୍ରମଇ ଇହ ପରଲୋକେ । ଦୃଷ୍ଟି ଶ୍ରବଣ ମାତ୍ର ସୁଖେ ॥
ଫଳ କାରଣେ ପଶୁ ମାରେ । ଯେସନେ ଦ୍ୟୂତେ[୧] ଧନ ହାରେ ॥
ଧନର ଲୋଭେ ନିଜ ଧନ । ଦ୍ୟୂତରେ ହରାଇ ଯେସନ ॥
ସଙ୍କଳ୍ପେ କରେ ଧନ ନାଶ । ଯେସନେ ବଣିଜାର[୨] ଆଶ ॥
କିଣଇ ନିଜ ଧନ ଦେଇ । ଅଧିକ ଆଶେ ଲୋଭ ବହି ॥୩୧
ରଜ ତାମସ ଗୁଣ ବହି । ଅଜ୍ଞାନେ ଚେତନା ହରାଇ ॥
ବାସବ ଆଦି ଦେବଗଣେ । ଯଜ୍ଞେ ପୂଜଇ ଅନୁକ୍ଷଣେ ॥
ଆତ୍ମାର ଗତି ନ ବିଗ୍ମରେ । ସ୍ୱର୍ଗଫଳକୁ ଇଚ୍ଛା କରେ ॥
ନାନାପ୍ରକାରେ ଲୋଭ ଚିତ୍ତେ । ପିତୃ ଦେବତା ପୂଜେ ନିତ୍ୟେ ॥

---

୧. ଦ୍ୟୂତ—ଜୁଆଖେଳ । ୨. ବଣିଜାର—ବଣିକ ।

ସ୍ୱର୍ଗେ ବସଇ ଦିନାକେତେ । ପୁଣି ସେ ସ୍ୱର୍ଗଭୋଗ ଅନ୍ତେ ॥
ଜନ୍ମ ହୁଅଇ ମହୀତଳେ । ଧନ ସମ୍ପଦ ମହାକୁଳେ ॥
ଉତ୍ତମପୁର ସ୍ୱର୍ଗ ପ୍ରାପ୍ତେ । ପୁଣି ଭୁଞ୍ଜଇ ନରଦେହେ ॥
ଏହି ପ୍ରକାରେ ଚିନ୍ତା କରି । ପଶୁଙ୍କୁ ହିଂସେ ଯଜ୍ଞ କରି ॥
ପୁଷ୍ପର ଠାରେ ଫଳବୁଦ୍ଧି । ଏ ଘେନି ଭ୍ରମେ ନିରବଧି ॥
କର୍ମ ଆକୁଳେ ଲୋଭ ଜଡ଼େ । ଏଣୁ ଭ୍ରମଇ ଚିତ୍ତ ଦୃଢ଼େ ॥
ଚିତ୍ତ ସଙ୍କଳ୍ପ ଭୋଗଭରେ । ଗୁରୁ ବ୍ରାହ୍ମଣ ନିନ୍ଦା କରେ ॥
ମୋର ଭକତି ଆଉ କାହିଁ । ମୋ କଥା କର୍ଣ୍ଣେ ନ ଶୁଣଇ ॥୩୨-୩୪
ଶ୍ରୁତି ଯେ କହେ ତିନିଖଣ୍ଡ । ଜ୍ଞାନ ଦେବତା* କର୍ମକାଣ୍ଡ ॥
ସେ ବେଦୁଁ କର୍ମ ଉତପତ୍ତି । ପରମବ୍ରହ୍ମ ତାର ଗତି ॥
ବ୍ରହ୍ମ ପରୋକ୍ଷେ ପରମୁଖେ । ସେ ବେଦ କହୁଥାନ୍ତି ସୁଖେ ॥
ଜ୍ଞାନ ନ କହି ସେ ସାକ୍ଷାତେ । ଘର ଦେଖାଇ ଦ୍ୱାର ପଥେ ☫ ॥
ସେ ସର୍ବବେଦ ବ୍ରହ୍ମମୟେ । ସ୍ୱଭାବେ ସମୁଦ୍ରର ପ୍ରାୟେ ॥
ଦୁର୍ବୋଧ ଅଟେ ଗତି ତାର । ବେଦର ନାହିଁ ଅନ୍ତ ପାର ॥
ଦେଖ ମୁଁ ସର୍ବେ ଅଛି ପୂରି । ଅନନ୍ତଶକ୍ତି ରୂପ ଧରି ॥
ଜଗତ ମୋ ତହୁଁ ପ୍ରକାଶେ । ଅନ୍ତେ ମୋହର ତହିଁ ମିଶେ ॥
ଏଣୁ ଅନନ୍ତ ବେଦଗତି । ନାନାପ୍ରକାରେ ଫଳଶ୍ରୁତି ॥
ତାହାର ସୂକ୍ଷ୍ମ ସ୍ଥୂଳ ଗତି । କେ ବୁଝି ପାରିବ ସୁମତି ॥୩୫,୩୬

* ଏଠାରେ 'ଦେବତା' ଶବ୍ଦ ଉପାସନାକାଣ୍ଡ ଅର୍ଥରେ ଗ୍ରହଣୀୟ ।

☫ ଅର୍ଥାତ୍ ଶ୍ରୁତି(ବେଦ)ରେ ତିନୋଟି କାଣ୍ଡ ଅଛି—ଜ୍ଞାନକାଣ୍ଡ, ଉପାସନାକାଣ୍ଡ ଓ କର୍ମକାଣ୍ଡ। ବ୍ରହ୍ମ ଓ ଆତ୍ମାର ଏକତ୍ୱ ପ୍ରତିପାଦନ ହିଁ ଏହି କାଣ୍ଡଗୁଡ଼ିକର ବିଷୟବସ୍ତୁ। ବେଦମାନେ ଏବଂ ଅନ୍ୟ ମନ୍ତ୍ରଦ୍ରଷ୍ଟା ଋଷିମାନେ ପ୍ରତ୍ୟକ୍ଷରୂପେ ସେହି ଜ୍ଞାନକୁ ବ୍ୟକ୍ତ ନ କରି, ଘର ପରିବର୍ତ୍ତେ ଦ୍ୱାର ଦେଖାଇବା ଭଳି ପରୋକ୍ଷରୂପେ ପ୍ରକାଶ କରିଥାନ୍ତି। କାରଣ ଏହାକୁ ଠିକ୍‌ଭାବେ ଗ୍ରହଣ କରିବାର ଯୋଗ୍ୟତା ସମସ୍ତଙ୍କର ନ ଥାଏ। ଅନ୍ତଃକରଣ ଶୁଦ୍ଧ ହେଲାପରେ ହିଁ ସେମାନଙ୍କ ଉକ୍ତିର ପ୍ରକୃତ ମର୍ମ ବୁଝି ହୁଏ।

ଷଡ଼ଚକ୍ର ଭେଦି ଉଦୟେ । ଏଣୁ ବୋଲାଇ ବ୍ରହ୍ମମୟେ ॥
ମୃଣାଳସୂତ୍ର ପ୍ରାୟ ହୋଇ । ଶବଦ ରୂପେ ମୁଁ ଅଛଇ ॥
ଯେସନେ ଉର୍ଣ୍ଣନାଭିଂ[1] ସୂତ୍ର । ହୃଦରୁ କରଇ ନିର୍ମିତ ॥
ଆକାଶ ଶବ୍ଦରୂପ ଧରି । ସମାନରୂପେ ଅଛି ପୂରି ॥
ବ୍ୟାପେ ପଞ୍ଚାଶ ବର୍ଣ୍ଣ[2]ଭେଦେ । ନାନା ପ୍ରକାରେ ସ୍ୱରନାଦେ ॥୩୭-୪୦
ଗାୟତ୍ରୀ ପଙ୍‌କ୍ତି ଅନୁଷ୍ଟୁପ । ଉଷ୍ଣିକ ବୃହତୀ ତ୍ରିଷ୍ଟୁପ ॥
ନାନା ପ୍ରକାର ଛନ୍ଦ ଭାଷେ । କହେ ବିବିଧ ଉପଦେଶେ ॥
କି ଅବା କହେ ବ୍ରହ୍ମମୁଖେ । କି ଅବା କଳ୍ପନା ବିପାକେ ॥
ଏମନ୍ତେ ବିବିଧ କଳ୍ପନା । ଏ ବେଦ ବ୍ରହ୍ମର ରଚନା ॥
କେ ଅଛି ବେଦ ବୁଝିବାରେ । ଶରୀର ଧରି ଏ ସଂସାରେ ॥
ମୁହିଁ ସେ ବେଦତତ୍ତ୍ୱ ଜ୍ଞାତା । ମୋ ତହୁଁ କେହୁ ସାମରଥା ॥
ନାନା ପ୍ରକାରେ ନାନା ଭେଦେ । ମୁହିଁ ଯେ ଅଛି ବେଦ ମଧ୍ୟେ ॥
ଯେ ମୋତେ ନ ଭଜେ ଜଗତେ । ମାୟା ଦେଖାଉଥାଇ ନିତ୍ୟେ ॥
ଏଣୁ ନ ବୁଝେ ବେଦଗତି । ଅଜ୍ଞାନ ମୋହେ ଜଡ଼ମତି ॥
ବିଧି ନିଷେଧ ତର୍କବଳେ । ନାନା ବିକଳ୍ପ ଏ ଶୟଳେ ॥୪୧-୪୩
କହିଲେ ଯଶୋଦାଙ୍କ ସୁତ । ନାନା ପ୍ରକାରେ ବେଦତତ୍ତ୍ୱ ॥
ସେ ହରି ଅଭୟ ଚରଣେ । ବ୍ରାହ୍ମଣ ଜଗନ୍ନାଥ ଭଣେ ॥
ପାମର ବୁଦ୍ଧି ତୁଚ୍ଛ ଭାଷା । କେବଳ କୃଷ୍ଣରେ ଭରସା ॥

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଏକାଦଶସ୍କନ୍ଧେ ଭଗବଦୁଦ୍ଧବସଂବାଦେ ବେଦତତ୍ତ୍ୱକଥନଂ ନାମ ଦ୍ୱାବିଂଶୋଽଧ୍ୟାୟଃ ।



୧. ଉର୍ଣ୍ଣନାଭି—ବୁଢ଼ିଆଣୀ । ୨. ବର୍ଣ୍ଣ—ବର୍ଣ୍ଣମାଳାର ଅକ୍ଷର ।

# ତ୍ରୟୋବିଂଶ ଅଧ୍ୟାୟ*

ପୁରୁଷ ପ୍ରକୃତି ବିଗ୍ରହ । ଜନମ ମରଣ ପ୍ରକାର ॥
ତତ୍ତ୍ୱମାନଙ୍କର ନିର୍ଣ୍ଣୟ । ବର୍ଣ୍ଣନ ତ୍ରୟୋବିଂଶୋଧ୍ୟାୟ ॥

*ଉଦ୍ଧବ ଉବାଚ*

ଉଦ୍ଧବ ଶିରେ ଦେଇ କର । ବୋଲଇ ଶୁଣ ଦାମୋଦର ॥
ବେଦ ବିଗ୍ରହ ତତ୍ତ୍ୱ ଜାଣି । ଯେବେ ସଂସାରୁ ତରେ ପ୍ରାଣୀ ॥
ସେ ତତ୍ତ୍ୱ ଏକ ଅବା କେତେ । କହ କେଶବ ମୋ ଅଗ୍ରତେ ॥
ତ୍ରି ନବ ଏକାଦଶ ପଞ୍ଚ । ଶୁଣିଛି ତୁମ୍ଭେ କହିଅଛ ॥ ୧
ନାନା ପ୍ରକାରେ ମୁନିଗଣେ । କହନ୍ତି ତତ୍ତ୍ୱ ବିଗ୍ରହଣେ ॥
କେ ଷଟ ସପ୍ତ ଗ୍ରହିଭଣେ । କେ ଏକାଦଶ ପରିମାଣେ ॥
କେ ପଞ୍ଚବିଂଶ ଷଡ଼ବିଂଶ । କେହୁ କହନ୍ତି ସପ୍ତଦଶ ॥
କାହାର ମତେ ତ୍ରୟୋଦଶ । କେ ଅବା ନବ କେ ଷୋଡ଼ଶ ॥
ଏ ସର୍ବ ସତ୍ୟ ଅବା କେତେ । ପ୍ରସ୍ତାବେ ପୁଚ୍ଛିଲଇଁ ତୋତେ ॥
ଏମନ୍ତେ ଉଦ୍ଧବ ବଚନ । ଯେ ତାର ଚିତ୍ତଗତ ଭ୍ରମ ॥
ଶୁଣି କହନ୍ତି ଚକ୍ରପାଣି । ଶୁଣ ହୋ ମୁନିଗଣ ବାଣୀ ॥ ୨,୩

*ଶ୍ରୀ ଭଗବାନୁବାଚ*

ମୁନି କହନ୍ତି ସର୍ବସ୍ଥାନେ । ଯେ ଅବା ଯେତେ ଅନୁମାନେ ॥
କେବେହେଁ ନୋହେ ଦୁର୍ଘଟନ । ସେ ସତ୍ୟ ଏ ତିନିଭୁବନ ॥ ୪
ସଂସାରେ ମୁନିଗଣ ଚିତ୍ତ । ମୋର ମାୟାରେ ବିମୋହିତ ॥
ନାନା ପ୍ରକାରେ ତର୍କବଳେ । ତତ୍ତ୍ୱ ବଖାଣନ୍ତି ଶୟଳେ ॥
କୁତର୍କ ବିବାଦ ପ୍ରକାରେ । ତତ୍ତ୍ୱ ବିଗ୍ରହନ୍ତି ସଂସାରେ ॥
ଏଣୁ ବଚନ ଏହାଙ୍କର । ବୁଝ ତୁ ଅନେକ ପ୍ରକାର ॥

* ମୂଳ ସଂସ୍କୃତ ଅନୁସାରେ ଦ୍ୱାବିଂଶ ଅଧ୍ୟାୟ ।

ମୁଁ ଯାହା କହିଅଛି ତୋତେ । ସଂସାରେ ତତ୍ତ୍ୱ ମାତ୍ର ଏତେ ॥
ମୁନିଏ ବିବାଦେ ଏମନ୍ତେ । ତର୍କ କରନ୍ତି ଯେଝାମତେ ॥୫,୬
ଶୁଣ ଉଦ୍ଧବ ସାଧୁ ଧୀର । ଏ ତତ୍ତ୍ୱମାନଙ୍କ ବିଗ୍ରହ ॥
ଅନ୍ୟୋଽନ୍ୟେ ପ୍ରବେଶ ସେ ହୋଇ । କାର୍ଯ୍ୟକାରଣ ରୂପେ ଥାଇ ॥
ସେ ପରସ୍ପରେ ମିଶାମିଶି । ଘଟ ମୃତ୍ତିକା ପ୍ରାୟ ଦିଶି ॥
ଜାଣିଲେ ଏକରୂପ ସେହି । ବିକଳ୍ପେ ନାନାରୂପ ହୋଇ ॥୭,୮
ଯେ ପୂର୍ବାପର ତତ୍ତ୍ୱଙ୍କର । ଉଣା ଅଧିକେ ଯେ ବିଗ୍ରହ ॥
ପଣ୍ଡିତଗଣେ ବାଦ ଚିନ୍ତି । ଯେତେ ବା କହିଣ ଅଛନ୍ତି ॥
ମୁନିବଚନ ସୁଘଟନ । ତେଣୁ ସେ ନୁହଇ ଖଣ୍ଡନ ॥ ୯
ସ୍ୱଭାବେ ମୋର ମାୟା ଘେନି । ଯୁକ୍ତି କରନ୍ତି ଯେତେ ମୁନି ॥
ତାଙ୍କ ବଚନ ମହୀତଳେ । ମୁହିଁ ସ୍ଥାପଇ ସୁନିଶ୍ଚଳେ ॥
ଏଣୁ ଯେ ତତ୍ତ୍ୱଜ୍ଞ ପୁରୁଷ । ଦିଅନ୍ତି ଜ୍ଞାନ ଉପଦେଶ ॥୧୦
ଈଶ୍ୱର ପୁରୁଷଙ୍କ ଗାତ୍ରେ । ବିଭେଦ ନାହିଁ ତିଳମାତ୍ରେ ॥
ବିକଳ୍ପେ କଳ୍ପନା ଗୋଚରେ । ଜୀବ ପରମ ଭେଦ କରେ ॥
ଯୁକ୍ତି କରନ୍ତି ଶ୍ରୁତିଭେଦେ । ପଣ୍ଡିତ ସ୍ୱଭାବ ବିବାଦେ ॥
ତଥାପି ତାହାଙ୍କ ବଚନ । ମୁହିଁ ଯେ କରଇ ସ୍ଥାପନ ॥୧୧
ପ୍ରକୃତି ଭେଦ ତିନିଗୁଣ । ତତ୍ତ୍ୱରେ ନୁହନ୍ତି ଗଣନ ॥
କାଳ ସ୍ୱଭାବ ଯେ ଈଶ୍ୱର । ତ୍ରିଗୁଣୁଁ ଅଟନ୍ତି ସେ ପର ॥
ତାହାର ସର୍ବଶକ୍ତି ଭାବେ । ତା ତହୁଁ ତ୍ରିଗୁଣ ସମ୍ଭବେ ॥
ତେଣୁ ଏ ସଂସାରେ ଉକତ । ଯେ ସୂତ୍ର ନାମ ମହତତ୍ତ୍ୱ ॥୧୨,୧୩
ପୁରୁଷ ପ୍ରକୃତି ମହତ । ଅହଙ୍କାର ନଭ ମରୁତ ॥
ତେଜ ସହିତେ ଆପ କ୍ଷିତି । ଏ ନବତତ୍ତ୍ୱର ଗଣତି ॥୧୪
ଚକ୍ଷୁ ନାସିକା ଚର୍ମ କର୍ଣ୍ଣ । ଜିହ୍ୱା ଇନ୍ଦ୍ରିୟ ପଞ୍ଚଜ୍ଞାନ ॥
ବଚନ ଗୁଦ ପାଦ ପାଣି । ଉପସ୍ଥ ପଞ୍ଚକର୍ମ ଘେନି ॥
ଉଭୟକର୍ତ୍ତା ମନ ମିଶି । ଏ ରୂପେ ଏକାଦଶ ଭାଷି ॥୧୫

ଶବ୍ଦ ସ୍ପରଶ ରୂପ ରସ । ଗନ୍ଧ ଏ ପାଞ୍ଚ ପରକାଶ ॥
ଜ୍ଞାନ ଇନ୍ଦ୍ରିୟର ଏ ଅର୍ଥ । ଏମନ୍ତେ ପଞ୍ଚବିଂଶ ତତ୍ତ୍ୱ ॥
ଜୀବ ପରମ ଭେଦ କଲେ । ଷଡ଼ବିଂଶତି ହୋଏ ଭଲେ ॥୧୬
କାର୍ଯ୍ୟକାରଣରୂପୀ ଯେହି । ପ୍ରକୃତି ବୋଲି ତାକୁ କହି ॥
ପୁରୁଷ ଅବ୍ୟକ୍ତ ଅଟଇ । କେବଳ ଦୃଷ୍ଟି ମାତ୍ର ଦେଇ ॥୧୭
ସେ ଦୃଷ୍ଟିଯୋଗେ ହୋଇ ଜାତ । ମହତ ଆଦି ସର୍ବତତ୍ତ୍ୱ ॥
ପ୍ରକୃତି ବଳେ ହୋଇ ରୁଣ୍ଡ । ସୃଜନ୍ତି ଅଶେଷ ବ୍ରହ୍ମାଣ୍ଡ ॥୧୮
ଜୀବ ପରମ ପଞ୍ଚଭୂତ । କେ ବୋଲେ ଏହି ସପ୍ତତତ୍ତ୍ୱ ॥୧୯
ଜୀବ ପରମ ଏକ ମାନି । କେହି ବା ଷଡ଼ତତ୍ତ୍ୱ ଗଣି ॥୨୦
ତେଜ ଆବର ଜଳ ଅନ୍ନ । ଆତ୍ମାରୁ ଏ ଯେ ଉତପନ୍ନ ॥
ଏ ତହୁଁ ଆନ ସବୁ ଜାତ । ଏଣୁ କେ ବୋଲେ ତ୍ରିତତ୍ତ୍ୱ ॥୨୧
କର୍ମ ଇନ୍ଦ୍ରିୟ ପଞ୍ଚଭୂତ । ଆବର ପଞ୍ଚତନମାତ୍ର ॥
ମନ ପରମ ଆତ୍ମା ଘେନି । କେ ସପ୍ତଦଶ ତତ୍ତ୍ୱ ଭଣି ॥୨୨
ମନ ଆତ୍ମାକୁ ଏକ ମାନି । କେହୁ ଷୋଡ଼ଶ ତତ୍ତ୍ୱ ଗଣି ॥
କର୍ମ ଇନ୍ଦ୍ରିୟ ପଞ୍ଚଭୂତ । ଜୀବ ପରମ ମନସ୍ତତ୍ତ୍ୱ ॥
ଏ ରୂପେ ତ୍ରୟୋଦଶ ତତ୍ତ୍ୱ । କେହି ବା ବୋଲନ୍ତି ଏମନ୍ତ ॥୨୩
ଜୀବ ପରମ ମନ ତିନି । ଏକଇ ଆତ୍ମା କେହୁ ମାନି ॥
ପଞ୍ଚଇନ୍ଦ୍ରିୟ ପଞ୍ଚଭୂତ । କେ ବୋଲେ ଏକାଦଶ ତତ୍ତ୍ୱ ॥
ମନ ବୁଦ୍ଧି ଯେ ଅହଙ୍କାର । ପଞ୍ଚ ମହାଭୂତ ଆବର ॥
ପୁରୁଷ ଘେନି କେହୁ ମୁନି । ନବତତ୍ତ୍ୱ ଯେ ପରିମାଣି ॥୨୪
ଏମନ୍ତ ମୁନିଙ୍କ ବଚନେ । ଯେ ତତ୍ତ୍ୱ ଘଟେ ଅନୁମାନେ ॥
ଶାସ୍ତ୍ର ବିଗ୍ରରନ୍ତି ସଂସାରେ । ଏମନ୍ତେ ଅନେକ ପ୍ରକାରେ ॥
ନ୍ୟାୟ ବଚନ ଯୁକ୍ତି ମୂଳ । କର୍ଣ୍ଣେ ଶୁଣିତେ କୁତୂହଳ ॥
ପଣ୍ଡିତମାନଙ୍କ ବଚନ । କେବେହେଁ ନୋହେ ଦୁର୍ଘଟନ ॥୨୫
ଏମନ୍ତ ଗୁଣମୟବାଣୀ । ଉଦ୍ଧବ କୃଷ୍ଣମୁଖୁଁ ଶୁଣି ॥
ପୁଣି ସଂଶୟ କରି ମନେ । ପୁଚ୍ଛଇ କୃଷ୍ଣ ସନ୍ନିଧାନେ ॥(ଜ.)

*ଉଦ୍ଧବ ଉବାଚ*

ପ୍ରକୃତି ପୁରୁଷ ସ୍ୱଭାବେ । ଏକୁ ଆରେକ ଭିନ୍ନ ଯେବେ ॥
ଆଶ୍ରେ କରନ୍ତି ଅନ୍ୟୋଅନ୍ୟେ । ନିତ୍ୟେ ବସନ୍ତି ଏକସ୍ଥାନେ ॥
ପୁରୁଷ ପ୍ରକୃତିର ଦେହେ । ବସଇ ଜୀବନ ପରାୟେ ॥
ପ୍ରକୃତି ପୁରୁଷ ନ ଛାଡ଼େ । ଏଣୁ ସେ ଥାନ୍ତି ଏକ ଜଡ଼େ ॥
କେମନ୍ତେ ଦେହୁଁ ଆତ୍ମା ଭିନ୍ନ । ସମ୍ଭବୁ ନାହିଁ ମୋର ମନ ॥୨୬
ଏ ଚିତ୍ତସଂଶୟ ମୋହର । ଛେଦ ହେ କମଳାର ବର ॥
ଗୋବିନ୍ଦ କମଳଲୋଚନ । ପରମ ପୁରୁଷ ଉତ୍ତମ ॥
ତୋର ମାୟାରେ ଜୀବ ଯେତେ । ମୋହେ ଯନ୍ତ୍ରିତ ଏ ଜଗତେ ॥୨୭
ଯାହାକୁ ହେଉ ତୁ ସଦୟ । ଜ୍ଞାନ ତା ହୃଦରୁ ଉଦୟ ॥
ତୁ ଜାଣୁ ତୋର ମାୟାଗତି । ଅପରେ ତାହା ନ ଜାଣନ୍ତି ॥୨୮
ଏମନ୍ତେ ଉଦ୍ଧବ ବଚନ । ଶୁଣି କହନ୍ତି ଭଗବାନ ॥(ଜ.)

*ଶ୍ରୀ ଭଗବାନୁବାଚ*

ପୁରୁଷ ପ୍ରକୃତି ତ୍ରିଗୁଣ । ସଂଯୋଗ ବିଯୋଗ କାରଣ ॥
ପୁରୁଷ ବିନା ପ୍ରକୃତିର । ପ୍ରକାଶ ନୁହଇ ଗୋଚର ॥
ରବି ବିହୀନେ ଚକ୍ଷୁ ଯେହ୍ନେ । ତେମନ୍ତେ ପୁରୁଷ ବିହୀନେ ॥
ରବି ଯେସନେ ସ୍ୱପ୍ରକାଶ । ଉଦ୍ଧବ ତେମନ୍ତ ପୁରୁଷ ॥
ପୁରୁଷ ପ୍ରକୃତି ଏ ଭିନ୍ନ । ଏକ ବିହୀନେ ଅନ୍ଧ ଆନ ॥
ମୋର ବିମୁଖ ପ୍ରାଣୀଙ୍କର । ଏ କଥା ନୁହଇ ଗୋଚର ॥
ତୁ ଏହା ଦୃଢ଼ଚିତ୍ତେ ଧର । ଶୁଣି ଉଦ୍ଧବ ଯୋଡ଼ି କର ॥
ବୋଲଇ ବିନୟ ବଚନେ । ଭୋ ନାଥ ହେବ ସାବଧାନ ॥
ତୋର ବିମୁଖ ଯେତେ ପ୍ରାଣୀ । ତାହାଙ୍କୁ ନିଜ କର୍ମ ଆଣି ॥
ନାନା ଯୋନିରେ ଜାତ କରେ । ତେଣୁ ଶରୀର ପ୍ରାଣୀ ଧରେ ॥
ଭ୍ରମନ୍ତି ନାନା କର୍ମପଥେ । ଦୁରିତ ଦୁଃଖ ଭୋଗ ଅର୍ଥେ ॥
ଶରୀର ଧରନ୍ତି କେମନ୍ତେ । ଛାଡ଼ନ୍ତି ନିଜ କର୍ମ ଅନ୍ତେ ॥

ନାନା ବିପାକେ ଭୁଞ୍ଜେ କର୍ମ । ଗତ ଆଗତ ପଥଶ୍ରମ ॥
ଭୋ ନାଥ ଭକତବତ୍ସଳ । କରୁଣାସିନ୍ଧୁ ଆଦିମୂଳ ॥
ନମୋ ଗୋବିନ୍ଦ ଦାମୋଦର । କହ ସଂଶୟ ଯାଉ ମୋର ॥୨୯-୩୫
ଉଦ୍ଧବ ବାକ୍ୟେ ଯଦୁନାଥ । ଜୀବର ଗତି ପରମାର୍ଥ ॥
କହନ୍ତି ଉଦ୍ଧବକୁ ଗ୍ରହିଁ । ଶୁଣ ହୋ ଏକଚିତ୍ତ ହୋଇ ॥
ମନଟି ହୋଇ କର୍ମମୟ । ନାନାପ୍ରକାରେ ସୃଜେ ଦେହ ॥
ପ୍ରାଣୀ ଜୀବନ ଅନ୍ତକାଳେ । ମନ ଇନ୍ଦ୍ରିୟ ପଞ୍ଚମେଳେ ॥
ପ୍ରାଣ ସଙ୍ଗତେ ଛାଡ଼ି ବେଗେ । କର୍ମାନୁସାରେ ଜନ୍ମ ଲଭେ ॥
ଏ ଆତ୍ମା ମନ ପଛେ ପଛେ । ସ୍ୱଭାବେ ବୁଲଇ ପ୍ରତ୍ୟକ୍ଷେ ॥
ଏଣୁ ସେ ମନ ଥାଇ ଯହିଁ । ଏ ଜୀବ ଆତ୍ମା ମିଳେ ତହିଁ ॥୩୬
ଏ ଆତ୍ମା ଅହଙ୍କାରେ ବନ୍ଦୀ । ଅଦୃଷ୍ଟବଶ ନିରବଧି ॥
ଏଣୁ ଏ ନାନା ମନୋରଥେ । ବିଷୟ ଧ୍ୟାୟି ଅବିରତେ ॥
ବେଦବଚନେ କର୍ମ କରେ । ଶୋକ ହରଷେ ସେ ବିହରେ ॥
ଧ୍ୟାନେ ଚିନ୍ତଇ ସ୍ୱର୍ଗବାସ । ଦେବତ୍ୱ ଇନ୍ଦ୍ରପଣେ ଆଶ ॥
ଭୂମିରେ ଚିନ୍ତେ ରାଜପଦ । ନାନାପ୍ରକାର ଭୋଗେ ସଧ ॥
ଏମନ୍ତେ ଚିନ୍ତଇ ନିରତେ । ମନ ଭ୍ରମାଇ ନାନାପଥେ ॥
ଏମନ୍ତ ମନ ଯହିଁ ରହେ । ଜ୍ଞାନ ହରାଏ ସର୍ବ ଦେହେ ॥
ମନ ବାସନା ଜୀବ ସଙ୍ଗେ । କର୍ମ ମିଳଇ ତାର ଆଗେ ॥
ଯେବେ ସେ ଅନ୍ୟ ଦେହେ ପଶେ । ଏକାନ୍ତେ ମନ ତହିଁ ମିଶେ ॥
ଆତ୍ମା ସଙ୍ଗତେ ରହେ ସ୍ଥିରେ । ପୂର୍ବଶରୀର ସେ ପାସୋରେ ॥
ଲଭଇ ନୂଆ ଦେହେ ସଙ୍ଗେ । ତେବେ ପାସୋରେ ପୂର୍ବଅଙ୍ଗେ ॥
ଜୀବ ସଙ୍ଗତେ ଚଳେ ପ୍ରାଣ । ଏମନ୍ତେ ଲଭଇ ମରଣ ॥୩୭,୩୮
ପୂର୍ବଶରୀର ପରିତ୍ୟାଗି । ନୂତନ ଦେହେ ଅନୁରାଗୀ ॥
ସେ ଦେହେ ରହେ ଆତ୍ମାଭାବେ । ପ୍ରାଚୀନ ପ୍ରକୃତି ସ୍ୱଭାବେ ॥
ଜୀବର ଜନ୍ମ ଏ ପ୍ରକାର । ଶରୀରୁ ଶରୀରେ ସଞ୍ଚାର ॥

ଏ ଜୀବ ସ୍ୱପ୍ନ ମନୋରଥେ । ଯେ ରୂପେ ଭ୍ରମୁଥାଏ ନିତ୍ୟେ ॥
ନିଦ୍ରା ଅବସାନେ ସଚେତେ । ଯେ ରୂପେ ପାସୋରଇ ଚିତ୍ତେ ॥
ସେହି ପ୍ରକାରେ ପୂର୍ବଦେହ । ପାସୋରେ ପାଇ ନୂଆ ଦେହ ॥୩୯,୪୦
ଏ ଆତ୍ମା ନିର୍ମଳ ସ୍ୱଭାବେ । ମନର ବଶ ହୋଏ ଯେବେ ॥
ଉତ୍ତମ ମଧ୍ୟମ ଅଧମ । ଗତି ଲଭଇ କରି କର୍ମ ॥
କୁପୁତ୍ର ବଶେ ସାଧୁଜନେ । ଲଭନ୍ତି ମନ୍ଦଗତି ଯେହ୍ନେ ॥୪୧
ଏ ଦେହ ଜନ୍ମ ମୃତ୍ୟୁ ଦୁଇ । କ୍ଷଣକୁ କ୍ଷଣ ନିତ୍ୟେ ପାଇ ॥
କାଳର ଅତି ସୂକ୍ଷ୍ମ ଗତି । ଏଣୁ ନ ପାରେ କେହି ଚିହ୍ନି ॥
ଜନ୍ମ ମରଣ ଦୁଇ ମତ । ବିଗ୍ରହରେ ନୁହଇ ଏ ସତ୍ୟ ॥
ଜନ୍ମାଦି ମରଣ ପର୍ଯ୍ୟନ୍ତେ । ଜୀବର ଭ୍ରମ ବୋଲି ଏତେ ॥
ଏ ବେନିମାର୍ଗ ଅନୁସରି । ଉଦ୍ଧବେ କହନ୍ତି ମୁରାରି ॥୪୨
ଯେସନେ ଦୀପର ଅନଳ । ବୃକ୍ଷର ଫଳ ସ୍ରୋତଜଳ ॥
ବୟସ ଅବସ୍ଥା ବିକାର । ସେ ରୂପେ ସର୍ବ ପ୍ରାଣୀଙ୍କର ॥
ଅଗ୍ନିରେ ଦୀପ ବୃଦ୍ଧି କରି । ନଦୀରେ ଜଳକୁ ଆବୋରି ॥
ବୋଲନ୍ତି କ୍ଷୟ ବୃଦ୍ଧି ଦୁଇ । ଜଳର ଅଗ୍ନିର ହୁଅଇ ॥
ସେ ରୂପେ ଆତ୍ମା ଦେହେ ମାନି । ଜନ୍ମ ମରଣ ଅଭିମାନୀ ॥୪୩,୪୪
ମର୍ତ୍ତ୍ୟେ ମନୁଷ୍ୟ ଦେହ ବହି । ଦେବତା ହୋଇଲେ ମରଇ ॥
ଯେସନେ ଅଗ୍ନି ଦାରୁ ସଙ୍ଗେ । ହୁଅଇ ସଂଯୋଗ ବିଯୋଗେ ॥
ଜନ୍ମମରଣ ତାକୁ ମାନି । ଏ ରୂପେ କହନ୍ତି ଅଜ୍ଞାନୀ ॥୪୫
ଗର୍ଭେ ପ୍ରବେଶ ଜନ୍ମ ବୃଦ୍ଧି । ବାଳୁତ ପଞ୍ଚମ ଅବଧି ॥
କୁମାର ଅବସ୍ଥା ଷୋଡ଼ଶ । ଯୌବନ ତ୍ରିଶ ବରଷ ॥
ମଧ୍ୟମ ବୟସ ଷାଠିଏ । ଜରା ମରଣ ନବ ହୋଏ ॥
ଏ ମନୋରଥମୟ ଦେହ । ଯେ ଉଚ୍ଚନୀଚ ଗୁଣମୟ ॥
ଅବସ୍ଥା ଭେଦେ ଜନ୍ମ ମୃତ୍ୟୁ । ବିବେକ ଜ୍ଞାନେ ଜାଣି ହେତୁ ॥
ଛାଡ଼ିଲେ ଦେହେ ଆତ୍ମାଭାବ । ମଣଇ ଆତ୍ମାକୁ ବିଲଗ ॥୪୬,୪୭

ଦେହରୁ ଦେହ ହୋଇ ଜାତ । ହୁଅଇ ପିତାପୁତ୍ର ମତ ॥
ଆତ୍ମାର ଜନ୍ମମୃତ୍ୟୁ ନାହିଁ । ଦେହରୁ ବିଲକ୍ଷଣ ସେହି ॥୪୮
ଯେସନେ ବୀଜୁଁ ବୃକ୍ଷ ଜାତ । ସେ ବୀଜ ପୁଣି ବୃକ୍ଷେ ସ୍ଥିତ ॥
ବିପାକେ ଜନ୍ମମୃତ୍ୟୁ ନାହିଁ । ବୀଜର ଜନ୍ମମୃତ୍ୟୁ କାହିଁ ॥
ବୃକ୍ଷରୁ ବୀଜ ବିଲକ୍ଷଣେ । ସେ ରୂପେ ଦେହୁଁ ଆତ୍ମା ଭିନ୍ନ ॥୪୯
ମାୟା ଶରୀରେ ଅପଣ୍ଡିତ । ଆତ୍ମାକୁ କରଇ ସଂଯୁତ ॥
ତତ୍ତ୍ୱ ବିଷୟେ ମୂଢ଼ପଣେ । ସଂସାର ସତ୍ୟ ବୋଲି ମଣେ ॥୫୦
ସତ୍ତ୍ୱଗୁଣରୁ ଋଷି ଦେବ । ରଜରୁ ଅସୁର ମାନବ ॥
ତମୁଁ ତିର୍ଯ୍ୟକ ଭୂତ ଜାତ । କର୍ମ ଭ୍ରମଣ ତିନିମତ ॥୫୧
ଯେସନେ ନୃତ୍ୟ ଗୀତ ତାନ । ଦେଖି ଶିଶୁର ହୋଏ ମନ ॥
ତାହାର ପ୍ରାୟ ନାଚେ ଗାଏ । ସେ ରୂପେ ଆତ୍ମା ଥାଇ ଦେହେ ॥୫୨
ନିଶ୍ଚଳ ବୃକ୍ଷ ଛାୟା ଯେହ୍ନେ । ଚଞ୍ଚଳ ଜଳର କମ୍ପନେ ॥
ଭ୍ରମିଲେ ନେତ୍ର ପ୍ରାଣୀଙ୍କର । ଭ୍ରମଇ ଯେହ୍ନେ ଭୂମଣ୍ଡଳ ॥
ସ୍ୱପ୍ନେ ଅନର୍ଥ ଦେଖି ଯେତେ । ଜନ୍ମ ମରଣ ଏହିମତେ ॥
କେବେହେଁ ନୁହଇ ଏ ସତ୍ୟ । ଏ ମୋର ମାୟା ବିକଳ୍ପିତ ॥୫୩-୫୫
ଏଣୁ ତୁ ଭ୍ରମ ପରିହର । ଚଞ୍ଚଳ ଚିତ୍ତ ସ୍ଥିର କର ॥
ଏଣୁ ଏ ଲୋକଧର୍ମ ଯେତେ । ମିଥ୍ୟା ବିଗ୍ରହି ଘେନ ଚିତ୍ତେ ॥୫୬
ଯେ ଅବା ସ୍ତୁତି ଅପମାନ । ଏ ବେନି ଚିତ୍ତେ ତୁ ନ ଘେନ ॥
କେ ଅବା କରେ ଅପମାନ । ଭର୍ତ୍ସନ ତର୍ଜନ ତାଡ଼ନ ॥
କେ ଅବା କରେ ନିନ୍ଦା ସ୍ତୁତି । କେ ଉପହାସେ ବା ହସନ୍ତି ॥
କେ ଅବା ବଳେ ଧନ ନାଶେ । କେ ମାରେ କେବା ବାନ୍ଧେ ରୋଷେ ॥
ଭୋଜନପାତ୍ରେ ଧୂଳି ଦ୍ୟନ୍ତି । କେ ବଳେ ତୋଳି କଗ୍ରଡ଼ନ୍ତି ॥
ତଥାପି ଧୀର ମହାଶୟ । ନିଷ୍କାମ ଗଭୀର ହୃଦୟ ॥
ଯେ ପ୍ରାଣୀ ନିନ୍ଦା ସ୍ତୁତି ସହେ । ଅଦୃଷ୍ଟ ମାନି ସ୍ଥିର ରହେ ॥
ଈଶ୍ୱରନିଷ୍ଠ ତତପରେ । ଆତ୍ମାକୁ ଆପଣେ ଉଦ୍ଧରେ ॥୫୭,୫୮

ଉଦ୍ଧବ ଉବାଚ

ଉଦ୍ଧବ କୃଷ୍ଣ ମୁଖୁଁ ଶୁଣି । ବୋଲଇ ଶୁଣ ଚକ୍ରପାଣି ॥
ଏ ବଡ଼ ସଂଶୟ ମୋ ଚିତ୍ତେ । ଏମନ୍ତ କେ ଅଛି ଜଗତେ ॥
କେ ପାରେ ଏତେ ଦୁଃଖ ସହି । ମଞ୍ଚେ ମନୁଷ୍ୟ ଦେହ ବହି ॥
ଯାହାର ମର୍ମ ଅଭ୍ୟନ୍ତର । ଭେଦଇ କୁବଚନ ଶର ॥
ସେ ଚିତ୍ତ ନିବାରିବ ସହି । ଏମନ୍ତ ପ୍ରାଣୀ ନ ଦେଖଇ ॥
ଯେ ଅବା ସର୍ବଶାସ୍ତ୍ର ମତେ । ଯୋଗ ଅଭ୍ୟାସି ଦୃଢ଼ଚିତ୍ତେ ॥
ସେହି ଭ୍ରମଇ ଏ ଜଗତେ । ନିନ୍ଦା ସ୍ତବନ ବେନି ପଥେ ॥
ସ୍ତୁତି ନିନ୍ଦନ ଯେ ପ୍ରକାର । ଯେ ଦୁଷ୍ଟ ବଚନ ପ୍ରହାର ॥
ଯେବା ଅଛନ୍ତି ସାଧୁଜନେ । ତୋର ଚରଣ ସୁଧା ପାନେ ॥
ଚିତ୍ତ ଆନନ୍ଦେ ଭୋଳ ମତି । ଏ କର୍ମ ସେ ଅବା ସହନ୍ତି ॥
ଏ ବଡ଼ ଭ୍ରମ ମୋର ଚିତ୍ତେ । ଭୋ ନାଥ ସହିବି କେମନ୍ତେ ॥୫୯,୬୦
ବୋଲଇ ଦାସ ଜଗନ୍ନାଥ । ପ୍ରାକୃତବନ୍ଧେ ଭାଗବତ ॥
ଉଦ୍ଧବ ପୁଚ୍ଛେ କୃଷ୍ଣ ପାଶେ । ସୁଜନେ ରସ ଏହି ରସେ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଏକାଦଶସ୍କନ୍ଧେ ଭଗବଦୁଦ୍ଧବସଂବାଦେ ତତ୍ତ୍ୱସଂଖ୍ୟାଦିବିଗ୍ରହୋ ନାମ ତ୍ରୟୋବିଂଶୋଽଧ୍ୟାୟଃ ।

## ଚତୁର୍ବିଂଶ ଅଧ୍ୟାୟ*

ମନ ସଂଯମେ ତିରସ୍କାର । ସହିବା ଉପାୟ ବିସ୍ତର ॥
ଭିକ୍ଷୁଗୀତାର ଇତିହାସେ । ବର୍ଣ୍ଣିତ ଅଧ୍ୟା ଚତୁର୍ବିଂଶେ ॥

ଦୟାସାଗର ଚକ୍ରପାଣି । ଉଦ୍ଧବ ମୁଖୁଁ ବାକ୍ୟ ଶୁଣି ॥
ବୋଲନ୍ତି ସତ୍ୟ ତୋ ବଚନ । ଏମନ୍ତ ଅଛି କେବା ଜନ ॥

* ମୂଳ ସଂସ୍କୃତ ଅନୁସାରେ ତ୍ରୟୋବିଂଶ ଅଧ୍ୟାୟ ।

କେ ଚିତ୍ତ ଧରି ପାରେ ସ୍ଥିରେ । ଦୁର୍ଜନ ବଚନ ପ୍ରହାରେ ॥
ଯେ ପାରେ ଏତେ ଦୁଃଖ ସହି । ସେ ପ୍ରାଣୀ ତ୍ରିଭୁବନେ ନାହିଁ ॥
ସମରେ ରିପୁବାଣ ଘାଏ । ଯେବେ ରୁଧିର ବହେ ଦେହେ ॥
ଯେ କ୍ଷତ୍ରିବୃତ୍ତି ଆଚରନ୍ତି । ସେ ଦୁଃଖ ମନେ ନ ଧରନ୍ତି ॥
ଦୁର୍ଜନ କୁବଚନ ବାଣ । ମର୍ମ ବିଦାରେ ତତକ୍ଷଣ ॥୧-୩
ଏବେ ତୁ ଶୁଣ ହୋ ବିଶ୍ୱାସେ । ଯେ ପୁଣ୍ୟକଥା ଇତିହାସେ ॥
ଯେଣୁ ତୁ ମୋହର ବିଶ୍ୱାସ । ତେଣୁ ମୁଁ କରିବି ପ୍ରକାଶ ॥ ୪
ପୂର୍ବେ ହୋ ଅବନ୍ତୀ ନଗରେ । ଥିଲା ଦୁର୍ଜନ ବିପ୍ରବରେ ॥
ଦମ୍ଭ ଆରମ୍ଭ କାମ ଲୋଭ । ନିରତେ ମନେ କ୍ରୋଧଭାବ ॥
କଦର୍ଯ୍ୟ ବୁଦ୍ଧି ତାର ହୀନ । ନାନା ପ୍ରକାରେ ସଞ୍ଚେ ଧନ ॥
କୃଷି ବାଣିଜ୍ୟ କର୍ମ କରେ । ବଞ୍ଚଇ ପର ଅପକାରେ ॥୫,୬
ଜ୍ଞାତି ଅତିଥି ବନ୍ଧୁ ଯେତେ । ମଧୁର ବାକ୍ୟେ ଶୁଦ୍ଧଚିତ୍ତେ ॥
ତାଙ୍କୁ ନ ସେବେ କଦାଚିତେ । ତିଳେ ନ ରହେ ପରହିତେ ॥
କଦର୍ଯ୍ୟ ଦୁଷ୍ଟ ବ୍ୟବହାରୀ । ଦୁଃଶୀଳମତି ଦୁରାଗ୍ରହୀ ॥
ପୁତ୍ର ଦୁହିତା ଦାସ ଦାସୀ । ଏହାଙ୍କୁ ନ ପୋଷେ ଆଶ୍ୱାସି ॥
ଆପଣେ ନ ଭକ୍ଷଇ ଭଲେ । ପ୍ରାଣୀଙ୍କି ନ ଦିଏ ମାଗିଲେ ॥୭,୮
ଯକ୍ଷର ପ୍ରାୟେ ରଖେ ଧନ । ଧନେ ଆକୁଳ ନିତ୍ୟେ ମନ ॥
ସେ ବିପ୍ର ବଞ୍ଚିତ ଜୀବନ । ଏମନ୍ତେ ଗଲା କେତେ ଦିନ ॥
ଅନ୍ନ ନ ପାଇ ଦାରାସୁତ । କ୍ରୋଧ ହୋଇଲେ ବନ୍ଧୁ ମିତ୍ର ॥
ନ କରି ଯଜ୍ଞ ଧର୍ମକର୍ମ । ଧନ ରକ୍ଷଣେ ତାର ମନ ॥
ଧର୍ମକୁ କରି ଅନାଦର । ନାଶିଲା ପୂର୍ବପୁଣ୍ୟ ତାର ॥୯,୧୦
ପୁତ୍ର କାମିନୀ ପରିବାର । ଯେ ଅବା ଦାସଦାସୀ ତାର ॥
ସକଳେ ଭାଳି ଏକଚିତ୍ତେ । ଧନ ହରିଲେ ତା ଗୁପତେ ॥
ଅନଳେ ଗଲା କିଛି ପୋଡ଼ି । ବଣିଜନାବ ଜଳେ ବୁଡ଼ି ॥
ଚଉର୍ଯ୍ୟେ କିଛି ଧନ ଗଲା । ରାଜାହିଁ କିଛି ବହି ନେଲା ॥
ସଞ୍ଚିତ ଧନ ଯେତେ ଥିଲା । ଏମନ୍ତେ ନାନାରୂପେ ଗଲା ॥୧୧

ନିର୍ଦ୍ଧନ ଦେଖି ଦାରାସୁତେ । ବନ୍ଧୁବାନ୍ଧବ ତାର ଯେତେ ॥
ଦାସୀ ସେବକ ପରିଜନେ । ଛାଡ଼ି ଚଳିଲେ ଅନ୍ୟସ୍ଥାନେ ॥
ଏମନ୍ତେ ବିପ୍ର ଦୁଃଖଚିତ୍ତେ । ରାତ୍ର ଦିବସ ଭାଳେ ନିତ୍ୟେ ॥
ବିକଳ ଚିତ୍ତେ ନିତ୍ୟେ କାନ୍ଦେ । ନିର୍ଦ୍ଧନେ ବାନ୍ଧବ ବିଚ୍ଛେଦେ ॥୧୨
ଏମନ୍ତେ ଚିନ୍ତା ଶୋକଭରେ । ପଡ଼ିଲା ତିନିତାପ ଜ୍ୱରେ ॥
ଭାଳଇ ଅତି ଭୟଚିତ୍ତେ । ମୁଁ ଏବେ ବଞ୍ଚିବି କେମନ୍ତେ ॥
ଏମନ୍ତେ ଭାଳୁ ଭାଳୁ ଦିନେ । ବୈରାଗ୍ୟ ଉପୁଜିଲା ମନେ ॥୧୩
ବୋଲଇ ଆତ୍ମା ଅନୁସରି । ବିଫଳେ ଅଛି ଦେହ ଧରି ॥
ଧିକ ଜୀବନ ଜନ୍ମ ମୋର । ବ୍ୟର୍ଥ ଏ ବିପ୍ର କଳେବର ॥
ଆପଣା ଦୋଷେ ମୁଁ ବିନାଶ । ହେଲେ ସକଳ କଲି ନାଶ ॥
ଆପଣା ହସ୍ତେ ମନ ସୁଖେ । ଅନଳ ଦେଲି ନିଜ ମୁଖେ ॥
ମୋ ନିଜ କର୍ମର ବିପାକେ । ବଞ୍ଚିତ ହେଲି ନରଲୋକେ ॥
ପୁତ୍ର କଳତ୍ର ପରିବାର । ବନ୍ଧୁବାନ୍ଧବ ଯେତେ ମୋର ॥
ଏହାଙ୍କୁ ଦୁଃଖ ଦେଇ ଚିତ୍ତେ । ଧନ ସଞ୍ଚିଲି ମୁଁ ନିରତେ ॥
ତେଜିଲି ଧର୍ମ କାମ ଭୋଗ । ସକଳ ସୁଖେ ମୁଁ ବିଯୋଗ ॥
ସେ ଧନେ ହେଲି ମୁଁ ନିରାଶ । ଉଭୟଲୋକ କଲି ନାଶ ॥
ଦୁଃଖେ ସଞ୍ଚିତ ଯେତେ ଧନ । ସେ ନୋହେ ସୁଖେ ପ୍ରୟୋଜନ ॥
ବଞ୍ଚିତ ହେଲି ନରଲୋକେ । ଏବେ ମୁଁ ପଡ଼ିବି ନରକେ ॥୧୪,୧୫
କୁଷ୍ଠ ଯେସନେ ରୂପ ନାଶେ । ଲୋଭ ତେମନ୍ତ ଗୁଣ ଯଶେ ॥୧୬
ଅର୍ଜନେ ସାଧନେ ସଞ୍ଚୟେ । ଧନ ସେ ସର୍ବ ଦୁଃଖମୟେ ॥୧୭
ଚଉର୍ଯ୍ୟ ହିଂସା ମିଥ୍ୟା ଦମ୍ଭ । ଭେଦ ବଇର ମଦ ଗର୍ବ ॥
କାମ କ୍ରୋଧ ଯେ ଅବିଶ୍ୱାସ । ସ୍ପର୍ଦ୍ଧା ବ୍ୟସନ* ଯେ ବିଶେଷ ॥
ଏ ପଞ୍ଚଦଶ ଦୋଷ ଧନେ । ଏଣୁ ପଣ୍ଡିତ ସାଧୁଜନେ ॥

* 'ବ୍ୟସନ' ଶବ୍ଦରେ କାମୁକତା, ଜୁଆଖେଳ ଓ ମଦ୍ୟପାନ ଅନ୍ତର୍ନିହିତ ଅଟେ ।

ଧନ ସଞ୍ଚୟ ଦୂର କରି । ନିୟତ କର୍ମକୁ ଆବୋରି ॥
ଧୀରେ ରହନ୍ତି ସମଚିତ୍ତେ । ଧନ୍ୟ ଜୀବନ ଏ ଜଗତେ ॥୧୮,୧୯
ଧନର ଦୋଷ ଆର ଯେତେ । କହିବା ଶୁଣ ଏକଚିତ୍ତେ ॥
ତାତ ଜନନୀ ଭ୍ରାତା ସୁତ । ସୁହୃଦ ବାନ୍ଧବ କଳତ୍ର ॥
ଏହାଙ୍କୁ ଦେଖି ରିପୁ ପ୍ରାୟେ । ଧନ ସଞ୍ଚୟ ନିତ୍ୟେ ଧ୍ୟାୟେ ॥
ଭେଦ ଉପୁଜେ ବନ୍ଧୁକୁଳେ । ଧନ ସଞ୍ଚୟନ ବ୍ୟାକୁଳେ ॥
ବିଚ୍ଛେଦ କରେ ଦାରା ସୁତ । କଦର୍ଯ୍ୟ ବୋଲନ୍ତି ଜଗତ ॥
ଧନ ଏ ସକଳ କାରଣ । କୃପଣେ ମର୍ଯ୍ୟାଦା ଲଂଘନ ॥
ଅଳପ ଧନର କାରଣେ । ବଇର ବଢ଼େ ଅନୁକ୍ଷଣେ ॥
ସ୍ୱଜନ ବନ୍ଧୁ କୁଳଭେଦେ । କନ୍ଦଳ ବାଦ ଅନୁବାଦେ ॥୨୦,୨୧
ମନୁଷ୍ୟ ଦେହେ ଜନ୍ମ ହୋଇ । ବ୍ରାହ୍ମଣ ତନୁ ମୁହିଁ ପାଇ ॥
ସ୍ୱର୍ଗେ ବାଞ୍ଛନ୍ତି ଦେବଗଣେ । ମନୁଷ୍ୟ ଦେହ ଅନୁକ୍ଷଣେ ॥
ମୁଁ ଏ ଦୁର୍ଲଭ ଦେହ ପାଇ । ନିନ୍ଦିତ କର୍ମ କରିଲଇଁ ॥
ଏ ଜନ୍ମ କଲି ଅନାଦର । ଧନ ସଞ୍ଚୟ ଧିକ ମୋର ॥୨୨
ମନୁଷ୍ୟ ଦେହ ଭୂମିଭାଗେ । ସାଧଇ ସ୍ୱର୍ଗ ଅପବର୍ଗେ ॥
ସେ ଦେହେ ଅନର୍ଥର ଘର । ଧନ ସାଧଇ କେବା ନର ॥୨୩
ଯେ ଦେବ ପିତୃ ଋଷିଗଣେ । ସେବା ନ କରେ ମୂଢ଼ପଣେ ॥
ଯକ୍ଷର ପ୍ରାୟେ ରଖେ ଧନ । ଲଂଘଇ ଜ୍ଞାତି ବନ୍ଧୁଜନ ॥
ସଞ୍ଚେ ଦେହକୁ କ୍ଳେଶ ଦେଇ । ସେ ପ୍ରାଣୀ ନରକେ ପଡ଼ଇ ॥୨୪
ସ୍ୱଭାବେ ବୟସ ସରିଲା । ଏ ଜନ୍ମ ବିଅର୍ଥେ ମୋ ଗଲା ॥
ଜାଣଇଁ ଅସତ୍ୟ ଜଗତ । ଈଶ୍ୱରମାୟାରେ ମୋହିତ ॥
ଏ ଧନ ଅର୍ଥେ କେ ପଣ୍ଡିତ । ବ୍ୟର୍ଥ ବ୍ୟାକୁଳ ଲୋଭଗ୍ରସ୍ତ ॥
ଏଣୁ କି କାର୍ଯ୍ୟ ଧନଧାନ୍ୟେ । ଭାଳଇ ବ୍ୟର୍ଥ ପ୍ରୟୋଜନେ ॥
ମରଣ ମୁଖେ ଏବେ ପଡ଼ି । ଭାଳଇ ନିଜ ପଥ ହୁଡ଼ି ॥୨୫-୨୭
ଏବେ ଜାଣିଲି ମୋର ଭାଗ୍ୟ । ଗୋବିନ୍ଦ କଲେ ଅନୁରାଗ ॥

ଏ ମୋର ପୂର୍ବ ପୁଣ୍ୟ ଦଶା । ତେଜିଲି ଧନ ଜନ ଆଶା ॥
ଚଞ୍ଚଳମନ ହୃଦେ ରୁନ୍ଧି । ଏବେ ସାଧିବି ସର୍ବସିଦ୍ଧି ॥
ହରି ଚରଣେ ଦେଇ ମତି । ଖଣ୍ଡିବି ଅଶେଷ ଦୁର୍ଗତି ॥୨୮,୨୯
ପୂର୍ବେ ଖଟ୍ୱାଙ୍ଗ ନୃପବର । ଦେବଙ୍କୁ କରି ଉପକାର ॥
ପୁଣି ସେ ଆସି ମହୀତଳେ । ମୁହୂର୍ତ୍ତେ ମାତ୍ର ପୁଣ୍ୟବଳେ ॥
ଭାବେ ଆରାଧି ଚକ୍ରଧର । ଭବସାଗରୁ ହେଲା ପାର ॥୩୦
ଏବେ ମୁଁ ସର୍ବ ଆଶା ଛେଦି । ନାନା ପ୍ରକାରେ ତପ ସାଧି ॥
ସଂସାରୁ ତରିବି ଯେମନ୍ତେ । ଏମନ୍ତ ଭାବି ଦୃଢ଼ଚିତ୍ତେ ॥
ନିଶ୍ଚଳ ଶାନ୍ତ ଦାନ୍ତ ଚିତ୍ତେ । ତପସ୍ୱୀଜନଙ୍କର ମତେ ॥
ପୃଥିବୀ କରି ପର୍ଯ୍ୟଟନ । ଗିରି ଦୁର୍ଗମ ଘୋରବନ ॥
ଗୁପତ ଅବଧୂତ ବେଶେ । ବୁଲଇ ପୁର ଗ୍ରାମ ଦେଶେ ॥
ସ୍ୱଭାବେ ଦିଶେ କୁଘଟନ । ବୃଦ୍ଧ ଭିକ୍ଷୁକ ସେ ବ୍ରାହ୍ମଣ ॥
ଗ୍ରାମେ ବୁଲଇ ଭିକ୍ଷା ଆଶେ । ମଳିନ ଅବଧୂତ ବେଶେ ॥
ଅତି ମଳିନ ଅତି କ୍ଷୀଣ । ଦିଶଇ ଜାତିବର୍ଣ୍ଣହୀନ ॥୩୧,୩୨
ଗୁପତ ଦେଖି ତାର ଚିହ୍ନ । ଲୋକେ କରନ୍ତି ଅପମାନ ॥
ତାହାକୁ ଦୁଷ୍ଟଗଣେ ବେଢ଼ି । କେ ଧାଇଁ ମୁଣ୍ଡେ କର ତାଡ଼ି ॥
କେ ଦଣ୍ଡ କମଣ୍ଡଳୁ ବଳେ । ଘେନି ପଳାନ୍ତି କୁତୂହଳେ ॥
କେ ଯଜ୍ଞସୂତ୍ର କନ୍ଧୁଁ ଫେଡ଼େ । କେ ପୃଷ୍ଠେ ମାରନ୍ତି ଗ୍ରପୋଡ଼େ ॥
କେ କନ୍ଥା ଚିରିକରି ବଳେ । ଭୟେ ପଳାନ୍ତି ଏକମେଳେ ॥
ପୁଣି ରହନ୍ତି ଦୂରେ ଯାଇ । ନାନା ଭର୍ତ୍ସନେ ଗାଳି ଦେଇ ॥
କେ ହସି କରତାଳି ଦେଇ । ଗୁପତେ ତାର ପଛେ ଥାଇ ॥୩୩,୩୪
ଭିକ୍ଷା ମାଗିଲେ ଅନ୍ନପାଣି । ତାହାକୁ ଲୋକେ ଦ୍ୟନ୍ତି ଆଣି ॥
ଯେବେ ଭୁଞ୍ଜଇ ନଦୀତୀରେ । କେ ମୂତେ ଭିକ୍ଷାର ଉପରେ ॥
କେ ମୁଖେ ଅଧୋବାୟୁ ଛାଡ଼େ । କେ ହସି କରେ କର ତାଡ଼େ ॥
କେ ମାରି ଆନକୁ ଦେଖାଇ । ହସନ୍ତି ତାର ମୁଖ ଗ୍ରହିଁ ॥
ତର୍ଜନ ଗର୍ଜନ କେ କରେ । କେ ରଜ୍ଜୁ ବାନ୍ଧନ୍ତି ପୟରେ ॥୩୫-୩୭

କେ ଅବା ପୂର୍ବେ ତାକୁ ଚିହ୍ନି । କହନ୍ତି ସାତ ପାଞ୍ଚ ଘେନି ॥
ଏହାର ନାଶଗଲା ଧନ । କୋପେ ଛାଡ଼ିଲେ ବନ୍ଧୁଜନ ॥
ଦେଖ କପଟ ଧର୍ମବେଶ । ଜଗତେ ବୋଲାଇ ସନ୍ନ୍ୟାସ ॥
ଦେଖ ବୁଲଇ ଅଧୋମୁଖେ । ଚକ୍ଷୁ ମେଲିଣ ସର୍ବଦେଖେ ॥
ରାତ୍ରେ ପଶିବ କାର ଘରେ । ଚୋରି କରିବ ଅଭ୍ୟନ୍ତରେ ॥
ଏହାକୁ ମାରି କର ଦୂର । ଦଣ୍ଡେ ନ ଥାଉ ଆମ୍ଭ ପୁର ॥
ଦେଖ ମଉନ ମୁଖେ ରହେ । ଜଳେ ଯେସନେ ବକ ଚ୍ହେଁ ॥
ଆଜ କରିବ ଏହୁ ଚୋରି । ଦୂର କରାଅ ଯାକୁ ମାରି ॥
ଏମନ୍ତେ ଦୁଷ୍ଟଗଣେ ମିଳି । ହସନ୍ତି ଦେଇ କରତାଳି ॥
ଭୟେ କରାଇ ତାକୁ ତ୍ରାସ । କରନ୍ତି ହାସ ପରିହାସ ॥୩୮-୪୧
ଏମନ୍ତେ ସର୍ବ ବାକ୍ୟ ଶୁଣେ । ଧଇର୍ଯ୍ୟ ଅବଲମ୍ବ ଗୁଣେ ॥
କେବେହେଁ ମନେ ନୋହେ ଦୁଃଖୀ । ପୂର୍ବ ଅର୍ଜିତ କର୍ମ ଲକ୍ଷି ॥
ଯେ ଅବା ଯେତେବେଳେ ହୋଏ । ଗୋରୁଙ୍କ ପ୍ରାୟେ ସର୍ବ ସହେ ॥୪୨
ଅଦୃଷ୍ଟ ମାନି କହେ କଥା । କେ ଅଛି ଦୁଃଖସୁଖଦାତା ॥
ଗ୍ରହ ଦେବତା କାଳ କର୍ମ । ଆତ୍ମା କି ଅବା କେହି ଜନ ॥
ନୁହନ୍ତି ସୁଖଦୁଃଖଦାତା । ମନଟି ପରମ କରତା ॥
ଜନ୍ମମରଣ ବେନିପଥେ । ଯେ ମନ ଭ୍ରମାଏ ନିରତେ ॥୪୩
ମନ ସେ ତ୍ରିଗୁଣ ସୃଜଇ । ତ୍ରିଗୁଣେ କର୍ମ ସଞ୍ଚରଇ ॥
କର୍ମେ ତ୍ରିଲୋକେ ଦେହ ପାଇ । ତିର୍ଯ୍ୟକ ନର ଦେବ ହୋଇ ॥୪୪
ଏଣୁ ମନର ଏ ସଂସାର । ସଂସାରୁ ବିଲଗ ଈଶ୍ୱର ॥
ଈଶ୍ୱର ବସେ ସାକ୍ଷୀରୂପେ । କର୍ମ କରାଏ ନାନାରୂପେ ॥
କର୍ମରେ ସଙ୍ଗ ନାହିଁ ତାର । ଜ୍ଞାନରେ ଚେଷ୍ଟା ଯେଣୁ ତାର ॥
ମନ ତାହାର ସଙ୍ଗେ ମିଶେ । ଲିଙ୍ଗଶରୀରେ ଜୀବ ବସେ ॥
କର୍ମ କରଇ ଗୁଣବଳେ । ସଂସାରେ ବନ୍ଧନ ନିଶ୍ଚଳେ ॥
ଏଣୁ ଏ ମନର ସଂଯମ । ପରମ ଜ୍ଞାନର କାରଣ ॥୪୫

ଦାନ ସ୍ୱଧର୍ମ ଯେ ନିୟମ । ସୁବ୍ରତ କର୍ମ କିବା ଯମ ॥
ଏ ସର୍ବ ମନର ସଂଯମ । ମନ ସଂଯମ ପରଜ୍ଞାନ ॥୪୬
ମନ ସଂଯମ ଅଟେ ଯାର । କି କାର୍ଯ୍ୟ ଦାନାଦିରେ ତାର ॥
ମନ ଆୟତ୍ତ ଯାର ନୋହି । ଦାନାଦି କର୍ମେ କିବା ହୋଇ ॥୪୭
ଏଣୁ ଯେ ମନ ବଶ କରେ । ସର୍ବ ଇନ୍ଦ୍ରିୟ ସେ ସଂହରେ ॥
ମନର ବଶ ଯେବା ହୋଇ । ଇନ୍ଦ୍ରିୟେ ଅର୍ଥେ ସେ ଭ୍ରମଇ ॥
ଯୋଗୀଏ ଯୋଗବଳ ଧରି । ବଳେ ଇନ୍ଦ୍ରିୟେ ବଶ କରି ॥
ମନ ଅବଶେ ଯୋଗଭ୍ରଷ୍ଟ । ଏଣୁ ଏ ମନ ଅଟେ ଶ୍ରେଷ୍ଠ ॥
ଯେ ତାକୁ ବଶ କରିପାରେ । ସର୍ବ ଇନ୍ଦ୍ରିୟ ଜୟ କରେ ॥୪୮
ଦୁର୍ଜୟ ଶତ୍ରୁ ଅଟେ ମନ । ତାକୁ ନ ଜିଣି ଯେବା ଜନ ॥
ଉଦାସୀ ମିତ୍ର ଶତ୍ରୁ ଆନ । ବିଗ୍ରହରେ ମୂଢ଼ ସେହୁ ଜନ ॥୪୯
ମନ କଳ୍ପିତ ଦେହ ପାଇ । ମୁହିଁ ମୋହର ଚିତ୍ତେ ଧ୍ୟାଇ ॥
ଅନ୍ୟୋନ୍ୟ ଶତ୍ରୁ ମିତ୍ର ଚିନ୍ତି । ଅପାର ସଂସାରେ ଭ୍ରମନ୍ତି ॥୫୦
ଯେ ପ୍ରାଣୀ ଆତ୍ମାକୁ ନ ଜାଣେ । ସେ ରିପୁ ମିତ୍ର ପରିମାଣେ ॥
ମାୟା ସଂସାରେ ଜ୍ଞାନ ହାରି । ଜୀବକୁ ଜୀବ ହିଂସା କରି ॥
ସ୍ୱଭାବେ ଜୀବ ନିର୍ବିକାର । ଦୋଷ ଅଦୋଷ ନାହିଁ ତାର ॥
ଆପଣା ହସ୍ତେ ଜିହ୍ୱା ଛେଦି । କେ ତାର ଅଛି ପ୍ରତିବାଦୀ ॥୫୧
ଦେବତା ବଶେ ସର୍ବଭୂତେ । ଇନ୍ଦ୍ରିୟେ ଅଭେଦ ସ୍ୱରୂପେ ॥
କୋପଇ ଏକ ଅଙ୍ଗେ ଥାଇ । ଅପର ଅଙ୍ଗେ ପ୍ରହାରଇ ॥
ଏ ଦୁଃଖସୁଖ ବିଗ୍ରହିଲେ । ଲାଗଇ ନାହିଁ ଆତ୍ମାତୁଲେ ॥୫୨
ଯେବେ ବୋଲିବା ଗ୍ରହଦୋଷେ । ପ୍ରାଣୀ ବନ୍ଧନ ଗୁଣ ପାଶେ ॥
ଏ ଅନୁମାନ ସତ୍ୟ ନୋହେ । ଗ୍ରହ କି ମାରେ ଗ୍ରହ ଦେହେ ॥୫୪*
ଏ ଦୁଃଖସୁଖ ହେତୁ କର୍ମ । ବିଗ୍ରହ କଲେ ହୁଏ ଭ୍ରମ ॥
ସ୍ୱଭାବେ ଦେହ ଜଡ଼ମୟ । ସ୍ଫଟିକ ମୃତ୍ତିକାର ପ୍ରାୟ ॥

* ଶ୍ଲୋକ ୫୩ ର ଅନୁବାଦ ନାହିଁ ।

ଆତ୍ମା ପରମହଂସ ରୂପେ । ନିତ୍ୟେ ବସଇ ନାନାବୃକ୍ଷେ ॥
ଏ ଆତ୍ମା ବ୍ରହ୍ମ ସୂକ୍ଷ୍ମସାର । ନିର୍ମଳ ନିତ୍ୟ ନିରାକାର ॥
ଏଣୁ ଏ ଦୁଃଖସୁଖ ପାଇ । ଏ ଅନୁମାନ ନ ଘଟଇ ॥୫୫
ଯେବେ ବୋଲିବା ନ୍ୟାୟେ ଅଛି । କାଳହିଁ ଦୁଃଖସୁଖ ଲେଖି ॥
ଫଳଇ ଦେହେ ଯଥାକାଳେ । ବୃଦ୍ଧ ତରୁଣ କିବା ବାଳେ ॥
ତେବେ ଆତ୍ମାର କିବା ଦୁଃଖ । ଆତ୍ମା ସ୍ୱଭାବେ କାଳରୂପ ॥୫୬
ଏଣୁ ଦୁଃଖସୁଖ ବିଗ୍ରହେ । ନ ଘଟେ ନିଜ କିବା ପରେ ॥
ଯେଣୁ ଏ ଅନିତ୍ୟ ସଂସାରେ । ପ୍ରାଣୀ ବନ୍ଧନ ଅହଙ୍କାରେ ॥
ଏଣୁ ଏ ମାନ ଅପମାନ । ନ ଘେନେ ଆତ୍ମଜ୍ଞାନୀ ଜନ ॥
ଶତ୍ରୁ ବାନ୍ଧବ ନିଜ ପର । ଏ ଦୁଃଖସୁଖ ଭ୍ରମ ମୋର ॥୫୭
ପୂର୍ବେ ଯେ ମହାଋଷିଗଣେ । ପରମ ଆତ୍ମନିଷ୍ଠା ଜ୍ଞାନେ ॥
ତରିଲେ ଏ ଘୋର ସଂସାର । ମୁଁ ଏବେ କରି ସେ ବିଗ୍ରହ ॥
ଗୋବିନ୍ଦପାଦେ ସେବା କରି । ଘୋର ସଂସାରୁ ଯିବି ତରି ॥୫୮

*ଶ୍ରୀ ଭଗବାନୁବାଚ*

ଏତେ ବିଗ୍ରହି ବିପ୍ର ମନେ । ଚିତ୍ତ ନିରୋଧି ଯୋଗଧ୍ୟାନେ ॥
ହରିଚରଣ କଲା ସାର । ତେଜିଲା ମାନ ଅହଙ୍କାର ॥
ନିର୍ମଳ ଚିତ୍ତ ମୋ ଚରଣେ । ବୁଲେ ଅବନୀ ପର୍ଯ୍ୟଟନେ ॥
ମୋର ପଦାରବିନ୍ଦ ଧ୍ୟାନେ । କିଛି ନ ଜାଣେ ରାତ୍ରଦିନେ ॥
ଫିଟିଲା ଅଶେଷ ବନ୍ଧନ । ମୋହର ପାଦେ ହେଲା ଲୀନ ॥୫୯
ଉଦ୍ଧବ ଏହା ମନେ ଧର । ସର୍ବ ସଂଶୟ ପରିହର ॥
ନିର୍ମଳ ଚିତ୍ତ ମୋର ପାଦେ । ସମର୍ପି ରହ ତୁ ଆନନ୍ଦେ ॥୬୧*
ଏ ଭିକ୍ଷୁଗୀତା ଇତିହାସେ । ତୋ ଆଗେ କହିଲି ବିଶ୍ୱାସେ ॥
ଏ ଗୁଣମୟ ବ୍ରହ୍ମଜ୍ଞାନ । ଯେ କରେ ଶ୍ରବଣ ପଠନ ॥
ଅଶେଷ ଦୋଷ ତାର ହରେ । ନ ପଡ଼େ ଭବପଙ୍କ ଘୋରେ ॥
ହରଇ କାମ କ୍ରୋଧ ଦୋଷେ । ନ ଲାଗେ ଦୁଃଖ ଶୋକ ପ୍ରାସେ ॥୬୨

* ଶ୍ଲୋକ ୬୦ ର ଅନୁବାଦ ନାହିଁ ।

କହଇ ବିପ୍ର ଜଗନ୍ନାଥ । ଶ୍ରୀ ଏକାଦଶେ ଭାଗବତ ॥
ଉଦ୍ଧବେ କହେ ନାରାୟଣ । ସୁଜନେ ସାବଧାନେ ଶୁଣ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ଏକାଦଶସ୍କନ୍ଧେ ଭଗବଦୁଦ୍ଧବସଂବାଦେ ଭିକ୍ଷୁଗୀତା
ନାମ ଚତୁର୍ବିଂଶୋଽଧ୍ୟାୟଃ ।

# ପଞ୍ଚବିଂଶ ଅଧ୍ୟାୟ*

ପଚିଶେ ସୃଷ୍ଟି ବିବରଣ । ସାଂଖ୍ୟମତର ଯେ ବିଧାନ ॥

*ଶ୍ରୀ ଭଗବାନୁବାଚ*

ବୋଲନ୍ତି ପ୍ରଭୁ ନାରାୟଣ । ଉଦ୍ଧବ ସାବଧାନେ ଶୁଣ ॥
ତୁ ଅଟୁ ଭକତ ପ୍ରଧାନ । କହିବା ସାଂଖ୍ୟଯୋଗ ପୁଣ ॥
ଯେ ଜ୍ଞାନ ଜାଣି ବିଜ୍ଞଜନ । ଛାଡ଼ନ୍ତି ବିକଳ୍ପ ସମ୍ଭ୍ରମ ॥ ୧
ପ୍ରଥମ ସୃଷ୍ଟିର ଅଗ୍ରତ । ଯେ ଜ୍ଞାନ ବିକଳ୍ପ ରହିତ ॥
ପରମବ୍ରହ୍ମ ମାତ୍ର ଥିଲେ । ସେ ଯେବେ ସୃଷ୍ଟି ଆରମ୍ଭିଲେ ॥
ସେ କାଳେ ବିବେକ ପ୍ରଧାନେ । ସୃଷ୍ଟିରେ ପ୍ରବର୍ତ୍ତିଲେ ଜନେ ॥
ଅଭେଦଜ୍ଞାନେ ବ୍ରହ୍ମଭାଗେ । ଲୋକେ ଗମିଲେ ଯୋଗମାର୍ଗେ ॥
ଆଦି ଗଣନା ସତ୍ୟଯୁଗେ । ସେ ବ୍ରହ୍ମ ହୋଇ ବେନିଭାଗେ ॥୨,୩
ପ୍ରକୃତି ରୂପେ ଏକ ଅଂଶ । ଦ୍ୱିତୀୟେ ପୁରୁଷ ପ୍ରକାଶ ॥
ଯେ ଭାଗ ପ୍ରକୃତି ରୂପିଣୀ । ସୃଷ୍ଟିପାଳନ ସଂହାରିଣୀ ॥
ସେ ଭାଗ ଜଡ଼ରୂପା ହୋଇ । ଈଶ୍ୱରବଶେ କ୍ଷୋଭ ପାଇ ॥
ତେଣୁ ସେ ବ୍ରହ୍ମ ବେନିଖଣ୍ଡ । ସଂଯୋଗେ ଜନ୍ମିଲା ବ୍ରହ୍ମାଣ୍ଡ ॥
ବ୍ରହ୍ମାଣ୍ଡ ମଧ୍ୟେ ତିନିଗୁଣ । ଜନ୍ମିଲା ପ୍ରକୃତି କାରଣ ॥
ତ୍ରିଗୁଣ ସତ୍ତ୍ୱ ରଜ ତମ । ଯେ କ୍ରିୟାଶକ୍ତି ଉପାଦାନ ॥

* ମୂଳ ସଂସ୍କୃତ ଅନୁସାରେ ଚତୁର୍ବିଂଶ ଅଧ୍ୟାୟ ।

ସେ ସୂତ୍ର ତ୍ରିଗୁଣେ ଜଡ଼ିତ । ତହୁଁ ଉପୁଜିଲା ମହତ ॥
ମହତେ ତ୍ରିଗୁଣ ବିକାର । ତହୁଁ ଜନ୍ମିଲା ଅହଙ୍କାର ॥୪-୬
ସେ ପୁଣି ହୋଏ ତିନିଅଂଶ । ସାତ୍ତ୍ୱିକ ରାଜସ ତାମସ ॥
ପଞ୍ଚତନ୍ମାତ୍ର ଇନ୍ଦ୍ରିଗଣ । ମନର ପରମ କାରଣ ॥
ତାମସ ଅହଙ୍କାରୁ ଜାତ । ହୋଇଲେ ପଞ୍ଚ ମହାଭୂତ ॥
ମଧ୍ୟେ ଅହଙ୍କାର ରାଜସ । ଜନ୍ମିଲେ ଇନ୍ଦ୍ରି ଏକାଦଶ* ॥
ଅନ୍ତେ ଯେ ଥିଲା ସତ୍ତ୍ୱଗୁଣ । ତହୁଁ ଜନ୍ମିଲେ ଦେବଗଣ ॥୭,୮
ଏ ସର୍ବେ ଜନ୍ମି ଏକମେଳେ । କ୍ଷଣେ ନ ରହନ୍ତି ନିଶ୍ଚଳେ ॥
ମୁହିଁ ତାହାଙ୍କ ହୃଦେ ଯାଇ । ପଶିଲି ଗୁରୁ ପ୍ରାୟେ ହୋଇ ॥
ତେବେ ସମସ୍ତେ ହୋଇ ଠୁଣ୍ଡ । ଏକତ୍ରେ ସୃଜିଲେ ବ୍ରହ୍ମାଣ୍ଡ ॥
ଦିଶଇ ହେମମୟ ଅଣ୍ଡ । ମୋର ବିହାର କ୍ରୀଡ଼ାଭାଣ୍ଡ ॥ ୯
ଅଶେଷ ଜଳେ ସେ ଭାସଇ । ସଲିଳ ବିମ୍ବ ପ୍ରାୟେ ହୋଇ ॥
ମୁଁ ପୁଣି ପଶି ତାର ମଧ୍ୟେ । ନିଦ୍ରା ପ୍ରସାରିଲି ଆନନ୍ଦେ ॥
ମୋ ନାଭିକମଳୁଁ କମଳ । ଜନ୍ମିଲା ଅତ୍ୟନ୍ତ କୋମଳ ॥
ତହୁଁ ସେ ବ୍ରହ୍ମା ଅବତରେ । ଯେ ଯୋଗବଳେ ସୃଷ୍ଟି କରେ ॥୧୦
ସେ ରଜୋଗୁଣେ ଜାତ ହୋଇ । ବିଶେଷେ ମୋର ଆଜ୍ଞା ପାଇ ॥
ଶତେ ବରଷ ଦେବମତେ । ତପ ସାଧିଲା ସେ ନିରତେ ॥
ସେ ତପେ ମନ ମୋର ତୋଷି । ମୁଁ ପୁଣି ତାର ଦେହେ ପଶି ॥
ସେ ମୋର ନିଗମ ବଚନେ । ସୃଷ୍ଟି କରଇ ଅନୁମାନେ ॥
ସ୍ୱଭାବେ ବ୍ରହ୍ମା ପ୍ରଜାପତି । ବେଦବଚନେ ତାର ମତି ॥
ବ୍ରହ୍ମାଣ୍ଡ ମଧ୍ୟେ ତପୋବଳେ । ସର୍ଜିଲା ଭୁବନମଣ୍ଡଳେ ॥
ଦ୍ୱିସପ୍ତଲୋକ ଅଧ ଉର୍ଦ୍ଧ୍ୱେ । ସର୍ଜିଲା ବେଦବାକ୍ୟ ଛନ୍ଦେ ॥୧୧
ସ୍ୱର୍ଗ ସୃଜିଲା ପ୍ରଜାପତି । ଯେ ଲୋକେ ଦେବଗଣ ସ୍ଥିତି ॥
ପୁଣି ଗ୍ରହିଁଲା ଅଧୋମୁଖେ । ମନୁଷ୍ୟ ସୃଜିଲା ଭୂଲୋକେ ॥
ଏ ବେନିଲୋକ ସୃଜି ଅନ୍ୟେ । ପୁଣି କଳ୍ପିଲା ମଧ୍ୟଶୂନ୍ୟେ ॥

* ଏକାଦଶ ଇନ୍ଦ୍ରିୟ, ଯଥା—ପଞ୍ଚକର୍ମେନ୍ଦ୍ରିୟ, ପଞ୍ଚଜ୍ଞାନେନ୍ଦ୍ରିୟ ଓ ମନ ।

ତାହାକୁ ଭୁବଲୋକ ଭଣେ । ଯହିଁ ରହନ୍ତି ଭୂତଗଣେ ॥
ଏ ତିନିଲୋକର ଉପରେ । ପୁଣି ବିଧାତା ସୃଷ୍ଟି କରେ ॥
ସିଦ୍ଧ ପୁରୁଷେ ଯହିଁ ଥାନ୍ତି । ଯୋଗୀନ୍ଦ୍ରେ ଯହିଁ ସଞ୍ଚରନ୍ତି ॥୧୨
ପୁଣି ଏ ତିନିଲୋକ ତଳେ । ବ୍ରହ୍ମା ସର୍ଜିଲା ଯୋଗବଳେ ॥
ପାତାଳ ନାମେ ଭୂମିତଳେ । ଯହିଁ ଅସୁର ନାଗବଳେ ॥
ଏ ତିନିଲୋକ ମଧ୍ୟେ କ୍ରମେ । କର୍ମ ସଙ୍ଗତେ ଜୀବ ଭ୍ରମେ ॥୧୩
ଏ ତିନିଲୋକ ଉର୍ଦ୍ଧ୍ୱଗତି । ପୁଣି କଳ୍ପିଲା ପ୍ରଜାପତି ॥
ମହାନ୍ତେ ଯହିଁ ଥାନ୍ତି ସୁଖେ । ତାହା କଳ୍ପିଲା ମହର୍ଲୋକେ ॥
ତାର ଉପରେ ଜନଲୋକ । ତହିଁ ନ ପଶେ ଦୁଃଖ ଶୋକ ॥
ସେ ଜନଲୋକର ଉପରେ । ଯହିଁ ବସନ୍ତି ତପୀବରେ ॥
ସତ୍ୟେ ସାତ୍ୱିକେ ଯହିଁ ଥାନ୍ତି । ସେ ସତ୍ୟ ବ୍ରହ୍ମଲୋକ ସ୍ଥିତି ॥
ସେ ବ୍ରହ୍ମଲୋକ ଉର୍ଦ୍ଧ୍ୱଦେଶେ । ସହସ୍ର ସୂର୍ଯ୍ୟ ପ୍ରାୟ ଦିଶେ ॥
କିବା କହିବା ତାର ଗତି । ମୋର ଭକତେ ଯହିଁ ଥାନ୍ତି ॥
ଭକତି ଯୋଗବଳେ ମୋତେ । ଚିନ୍ତା କରନ୍ତି ଅବିରତେ ॥
ମୁଁ ଯେଣୁ ବୈକୁଣ୍ଠ ଠାକୁର । ତେଣୁ ବୈକୁଣ୍ଠ ନାମ ତାର ॥୧୪
ଏଣୁ ମୁଁ ବ୍ରହ୍ମ ପ୍ରଜାପତି । ଲୋକ ଆଧାର ଲୋକସ୍ଥିତି ॥
ସମସ୍ତ ପାଳି ଯୋଗବଳେ । ପୁଣି ସଂହରେ ଅନ୍ତକାଳେ ॥
ଏଣୁ ଏ ଅନିତ୍ୟ ସଂସାର । ତ୍ରିଗୁଣ କର୍ମରେ ସଞ୍ଚାର ॥
ଏ ଭବକୂପେ ଜନ୍ତୁ ପଡ଼ି । ଅଶେଷ କର୍ମପାଶେ ଜଡ଼ି ॥
ଭ୍ରମନ୍ତି ଏ ଘୋର ସଂସାରେ । ରଜ ତାମସ ଅହଙ୍କାରେ ॥୧୫
ବୃହତ ସୂକ୍ଷ୍ମ ସ୍ଥୂଳ ଅଣୁ । ସ୍ଥାବର ଜଙ୍ଗମ ଯେ ତନୁ ॥
ମାୟା ନିର୍ମିତ ସର୍ବଜନ । ବ୍ରହ୍ମାଦି ଚଉଦ ଭୁବନ ॥
ଏକ ଈଶ୍ୱର ଏ ଭୁବନେ । ସର୍ବତ୍ର ବସଇ ସମାନେ ॥
ସୃଷ୍ଟି ପ୍ରଳୟ ନିତ୍ୟେ କରେ । ମାୟା ସଂସାରେ ସେ ବିହରେ ॥
ଏଣୁ ଏ ଅନିତ୍ୟ ସଂସାର । ସତ୍ୟ ସ୍ୱରୂପ ମୁଁ ଈଶ୍ୱର ॥

ଏ ମାୟା ପ୍ରକୃତି ବିକାର । ଜଗତ ହେତୁ ଏ ବେଭାର ॥
ଏକଇ ବ୍ରହ୍ମ ଏ ବୃତ୍ତାନ୍ତ । ବିକାର ଆଦି ମଧ୍ୟ ଅନ୍ତ ॥୧୬
ଯେ ଆଦି ଅନ୍ତରେ କାରଣ । ସେ ସତ୍ୟ ବୋଲି ତୁହି ଜାଣ ॥
ପ୍ରକୃତି ପୁରୁଷ ଏ ବେନି । ଜଗତ ପିଅର ଜନନୀ ॥
ବିଶ୍ୱ ପ୍ରକାଶ ହେତୁ ମୁହିଁ । ମୁଁ କାଳରୂପେ ସଂହାରଇ ॥
ମୋର କଟାକ୍ଷ ମାତ୍ରେ ଜାଣ । ଅଶେଷ ବ୍ରହ୍ମାଣ୍ଡ ନିର୍ମାଣ ॥୧୭-୨୦
ଭ୍ରୂଭଙ୍ଗ ମାତ୍ର ମୁହିଁ ଯେବେ । ମୋତେ ଚିନ୍ତଇ ଆତ୍ମାଭାବେ ॥
କୋଟି ବ୍ରହ୍ମାଣ୍ଡ ମାୟାମୟେ । କ୍ଷଣମାତ୍ରକେ ଯାନ୍ତି କ୍ଷୟେ ॥୨୧
ଯେ ଯାହା ତହୁଁ ଥାନ୍ତି ଆସି । ଅନ୍ତେ ଚଳନ୍ତି ତାହା ଗ୍ରାସି ॥
ପ୍ରକୃତି ସଂଯୋଗେ ଜଗତ । ଅନ୍ତେ ପ୍ରକୃତି କରେ ଗ୍ରସ୍ତ ॥୨୨-୨୫
ସେ ମୋର ମାୟାକାଳରୂପୀ । ପ୍ରକୃତି ରୂପେ ଥାଇ ବ୍ୟାପି ॥
ଏଣୁ ସେ କାଳେ ସୃଷ୍ଟି କରେ । ଅନ୍ତେ ବ୍ରହ୍ମାଣ୍ଡ ସେ ସଂହରେ ॥୨୬
କାଳପୁରୁଷ ତାର ସଙ୍ଗେ । ପ୍ରବେଶ କରେ ଜୀବ ଅଙ୍ଗେ ॥
ସେ ଜୀବ ପଶେ ମୋର ତହିଁ । ମୁହିଁ କେବଳ ମାତ୍ର ରହି ॥
ମୁହିଁ ସକଳ ଭାବେ ସାକ୍ଷୀ । ମୋ ବିନୁ ଆନ ନାହିଁ ଲକ୍ଷି ॥
ମୁହିଁ ମୋହର ଆଶ୍ରେ ଥାଇ । ଏଣୁ ନିରାଧାର ବୋଲାଇ ॥
ମୁହିଁ ସକଳ ଅବଶେଷେ । କେବଳ ଥାଇ ନିଜ ଅଂଶେ ॥
ଏହାକୁ ସାଂଖ୍ୟଯୋଗ କହି । ଏ ଜ୍ଞାନେ ସଂଶୟ ନ ଥାଇ ॥
ଚିତ୍ତରୁ ହରେ ସର୍ବ ଦୋଷ । କେବଳ କୈବଲ୍ୟ ପ୍ରବେଶ ॥
ଏ ଭାବେ ନିରତେ ଯେ ମିଶେ । ଅଜ୍ଞାନ ହରେ ଜ୍ଞାନ ଦିଶେ ॥୨୭-୨୯
ଉଦ୍ଧବେ କହେ ହୃଷୀକେଶ । ଶ୍ରୀଭାଗବତ ଏକାଦଶ ॥
ସୁଜନେ ଚିନ୍ତ ଏକମନ । ତୁମ୍ଭର ଚିତ୍ତେ ତତ୍ତ୍ୱଜ୍ଞାନ ॥
ନିଶ୍ଚୟେ ହୋଇବ ପ୍ରବେଶ । କହିଲା ଜଗନ୍ନାଥ ଦାସ ॥

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଏକାଦଶ-ସ୍କନ୍ଧେ ଭଗବଦୁଦ୍ଧବସଂବାଦେ ସାଂଖ୍ୟଯୋଗୋ ପଞ୍ଚବିଂଶୋଽଧ୍ୟାୟଃ ।

❒❒❒

# ଷଡ଼୍‌ବିଂଶ ଅଧ୍ୟାୟ*

ତିନିଗୁଣର ଯେ ଲକ୍ଷଣ । ଷଡ଼ବିଂଶରେ ତା ବର୍ଣ୍ଣନ ॥

*ଶ୍ରୀ ଭଗବାନୁବାଚ*

କୃଷ୍ଣ କହନ୍ତି ବୀର ଶୁଣ । କହିବା ତ୍ରିଗୁଣ ଲକ୍ଷଣ ॥
ତପସ୍ୟା ତ୍ୟାଗ ଶମ ଦମ । ସତ୍ୟ ସନ୍ତୋଷ ଦୟା ଧର୍ମ ॥
ତିତିକ୍ଷା ଶ୍ରଦ୍ଧା ଲଜ୍ଜା ସ୍ମୃତି । ନିଃସ୍ପୃହମତି ଆତ୍ମରତି ॥
ଏ ସର୍ବ ଭାବ ସତ୍ତ୍ୱଗୁଣେ । ସାଂଖ୍ୟଯୋଗର ପରମାଣେ ॥୧,୨
ଏବେ ହୋ ସାବଧାନେ ଶୁଣ । ରାଜସ ଗୁଣର ଲକ୍ଷଣ ॥
କାମ ବ୍ୟାପାର ତୃଷ୍ଣା ମଦ । ଗର୍ବ ସକଳ ମତିଭେଦ ॥
ଯଶ ପ୍ରତିଷ୍ଠା ସୁଖଇଚ୍ଛା । ଲୋଭେ ଦେବତା ମନ୍ତ୍ରଦୀକ୍ଷା ॥
ଉଦ୍ୟମ ବୀର୍ଯ୍ୟ ପରିହାସ । ରଣେ ଉତ୍ସାହ ସ୍ତୁତି ଆଶ ॥
ଏତେ ଲକ୍ଷଣେ ରଜୋଗୁଣ । ଶୁଣ ହୋ ତାମସ ଲକ୍ଷଣ ॥ ୩
ବିଷାଦ କ୍ରୋଧ ଲୋଭ ହିଂସା । ଯାଚଞ୍ଚା ଦମ୍ଭ ମିଥ୍ୟାଭାଷା ॥
କନ୍ଦଳ ଶୋକ ଭୟ ଭ୍ରମ । ନିଦ୍ରା ଅଳସ ଆଶା ଶ୍ରମ ॥
ଏତେ ତାମସ ଗୁଣ ଜାଣି । ଏବେ ହୋ ଶୁଣ ପରିମାଣି ॥
ମିଶ୍ରିତ ଗୁଣର ଲକ୍ଷଣ । ମୁହିଁ ମୋହର ଏହି ଭ୍ରମ ॥
ଯା ଚିତ୍ତ ଧର୍ମ ଅର୍ଥ କାମେ । ଦୃଢ଼େ ଭଜଇ ଗୃହାଶ୍ରମେ ॥
ତ୍ରିଗୁଣ ମିଶ୍ରିତେ ତା ଜନ୍ମ । ଏବେ କହିବା ବୀର ଶୁଣ ॥୪-୮
ଯାହାର ଶମ ଦମ ଦୟା । ସୁଶାନ୍ତି ଅନ୍ତରେ ନିର୍ମାୟା ॥
ସେ ସତ୍ତ୍ୱଯୁତ ଅନୁମାନି । କାମାଦିଯୁକ୍ତ ରଜୋଗୁଣୀ ॥
ଦମ୍ଭ ମତ୍ସର କ୍ରୋଧ ଯାର । ସେ ପ୍ରାଣୀ ତମ ଦୁରାଗ୍ରହ ॥ ୯
ଯେ ସର୍ବ ଧର୍ମ ପରିହରେ । ମୋ ଭାବେ ଶ୍ରଦ୍ଧା ଭକ୍ତି କରେ ॥
ଯେ ସର୍ବଭାବେ ନିରପେକ୍ଷ । ସେ ସତ୍ତ୍ୱ ଜାଣିବ ପ୍ରତ୍ୟକ୍ଷ ॥୧୦

* ମୂଳ ସଂସ୍କୃତ ଅନୁସାରେ ପଞ୍ଚବିଂଶ ଅଧ୍ୟାୟ ।

ଆତ୍ମକଲ୍ୟାଣ ଆଶେ ମୋତେ । ଭଜେ ରାଜସ ସେ ଯୁଗତେ ॥
ଯେ ହିଂସାକର୍ମେ ଭଜେ ମୋତେ । ତାମସ ବୋଲି ଜାଣ ଚିତ୍ତେ ॥
ଏଣୁ ତ୍ରିଗୁଣ ଚିହ୍ନ ଜାଣି । ଶୁଣ କହିବା ପରିମାଣି ॥୧୧
ଜୀବର ସଙ୍ଗ ତିନିଗୁଣେ । ମୋହର ସଙ୍ଗ ନାହିଁ ତେଣେ ॥
ତ୍ରିଗୁଣ କର୍ମଫଳ ଭୁଞ୍ଜେ । ଜୀବ ସଂସାର ଚକ୍ରେ ମଜ୍ଜେ ॥୧୨
ଯେବେ ସାତ୍ତ୍ୱିକମତେ ପ୍ରାଣୀ । ସ୍ୱଭାବେ ରଜ ତମ ଜିଣି ॥
ନିର୍ମଳ ସତ୍ତ୍ୱଗୁଣେ ଯେବେ । ସକଳ ସିଦ୍ଧି ଲଭେ ତେବେ ॥୧୩
ଯେ ରଜୋଗୁଣେ ସଙ୍ଗ ହୋଇ । ସେ ଦୁଃଖେ ଯଶ ଶ୍ରୀ ଲଭଇ ॥
ଯେ ମୃଢ଼ ତମୋଗୁଣେ ମିଶେ । ସେ ଶୋକ ମୋହ ହିଂସା ବଶେ ॥୧୪,୧୫
ପ୍ରସନ୍ନ ଚିତ୍ତ ଇନ୍ଦ୍ରି ଶାନ୍ତ । ନିର୍ଭୟ ବିଷୟରହିତ ॥
ଚିତ୍ତେ ପ୍ରକାଶେ ସତ୍ତ୍ୱ ଯେବେ । ଦୃଢ଼େ ମୋହର ପାଦେ ସେବେ ॥୧୬
ଯେ କର୍ମଫଳ ପ୍ରାପ୍ତି ଅର୍ଥେ । ମନ ଚଞ୍ଚଳ ଅବିରତେ ॥
ଭ୍ରମଇ ସଦା ନିରଳସ । ଜାଣିବ ରାଜସ ପ୍ରକାଶ ॥୧୭
ଯାହାର ଚିତ୍ତ ସ୍ଥିର ନୋହେ । ମନ ସଙ୍କଳ୍ପ ନାଶ ପ୍ରାୟେ ॥
ଅଜ୍ଞାନେ ବିଷାଦ ହୁଅଇ । ତମ ବଢ଼ନ୍ତେ ଜାଣ ତୁହି ॥୧୮
ଏ ସତ୍ତ୍ୱ ରାଜସ ତାମସ । ଦେବତା ମନୁଷ୍ୟ ରାକ୍ଷସ ॥
ନିବୃତ୍ତି ପ୍ରବୃତ୍ତି ମୋହରେ । କ୍ରମେ ତ୍ରିଗୁଣେ ସେ ସଞ୍ଚରେ ॥୧୯
ସତ୍ତ୍ୱଗୁଣରୁ ଜାଗରଣ । ଯେ ସ୍ୱପ୍ନ ରଜୋଗୁଣୁଁ ଜାଣ ॥
ତମୁଁ ସୁଷୁପ୍ତି ପ୍ରାଣୀଙ୍କର । ନିର୍ଗୁଣ ଅବସ୍ଥା ଅନ୍ତର ॥୨୦
ଏ ତିନିଲୋକ ଊର୍ଦ୍ଧ୍ୱଦେଶେ । ସୁଖେ ସାତ୍ତ୍ୱିକ ପ୍ରାଣୀ ବସେ ॥
ତାମସ ଗୁଣେ ଅଧୋଗତି । ସେ ପ୍ରାଣୀ ନରକେ ପଡ଼ନ୍ତି ॥
ଯେ ପ୍ରାଣୀ ରଜୋଗୁଣେ ଯୁତ । ସେ ମଧ୍ୟଲୋକେ ଗତାଗତ ॥
ଭୁଞ୍ଜଇ ସୁଖଦୁଃଖ କରି । ସମ୍ପଦେ ବିପଦେ ବିହରି ॥୨୧
ସାତ୍ତ୍ୱିକେ ପ୍ରାଣୀ ଯେବେ ମରେ । ସ୍ୱର୍ଗ ସମ୍ପଦ ଭୋଗ କରେ ॥
ଯେବେ ମରଇ ରଜୋଗୁଣୀ । ଏ ନରଲୋକେ ତା ଭ୍ରମଣି ॥

ଯେ ପ୍ରାଣୀ ତମୋଗୁଣେ ମରେ । ମହାନରକେ ସେ ସଞ୍ଚରେ ॥
ମୁହିଁ ନିର୍ଗୁଣ ନିରାକାର । ନିର୍ଗୁଣେ ମୋ ଲୋକେ ସଞ୍ଚାର ॥୨୨
ଜଗତେ ଯେ କର୍ମ କରନ୍ତି । ସେ ଫଳ ମୋତେ ସମର୍ପନ୍ତି ॥
କିବା ନିଷ୍କାମେ ତାହା ତେଜି । ସାତ୍ତ୍ୱିକ ମତେ ମୋତେ ଭଜି ॥
ଯେ ରଜୋଗୁଣେ ଏ ଜଗତେ । କର୍ମ କରନ୍ତି ସଙ୍କଳ୍ପିତେ ॥
ଦମ୍ଭ ମତ୍ସର ହିଂସାମାନ । ତାମସ କର୍ମେ ଏ ପ୍ରଧାନ* ॥୨୩
ଯେ ଜ୍ଞାନ ସାତ୍ତ୍ୱିକ ଲକ୍ଷଣ । ତା ଜାଣ ମୁକତି କାରଣ ॥
ସଙ୍କଳ୍ପ ବିକଳ୍ପ କାରଣେ । ଜ୍ଞାନ ସାଧନ ରଜୋଗୁଣେ ॥
ପ୍ରାକୃତଭାବ ତମୋଗୁଣ । ଅଜ୍ଞାନ ସଂସାର କାରଣ ॥
ମୋରେ ଅର୍ପିତ ଯେଉଁ ଜ୍ଞାନ । ନିର୍ଗୁଣ ସାଧନ ଲକ୍ଷଣ ॥୨୪
ସାତ୍ତ୍ୱିକ ଗୁଣ ବନବାସ । ଗ୍ରାମେ କର୍ମ ସାଧେ ରାଜସ ॥
ମଦିରାପାନେ ଗୋଷ୍ଠୀମେଳ । ଯୂତ ଶକଟା[୧] ପଶା ଖେଳ ॥
ତାମସଗୁଣ ଫଳ ଏତେ । ଗ୍ରାମ ବନସ୍ତ ମଧ୍ୟଗତେ ॥
ମୋର ମନ୍ଦିରେ ପୁଣ୍ୟକର୍ମ । ସାତ୍ତ୍ୱିକମତେ କରେ ଧର୍ମ ॥
ମୋ କଥା ଶ୍ରବଣ କଥନ । ତାକୁ ନ ବାଧେ ତିନିଗୁଣ ॥୨୫
ସାତ୍ତ୍ୱିକକର୍ତ୍ତା କର୍ମଭାଗ । ସେ ମୋତେ କରେ ଫଳତ୍ୟାଗ ॥
ରାଜସକର୍ତ୍ତା କର୍ମଭାଗୀ । ସକାମ ଭୋଗେ ଅନୁରାଗୀ ॥
ସ୍ୱଭାବେ ତମକର୍ତ୍ତା କର୍ମ । ମୂଢ଼ ଅଜ୍ଞାନ ମତିଭ୍ରମ ॥
ମୋର ଆଶ୍ରିତ ପ୍ରାଣୀ ଯେତେ । ନିର୍ଗୁଣେ ସଞ୍ଚରନ୍ତି ନିତ୍ୟେ ॥୨୬
ସାତ୍ତ୍ୱିକ ଶ୍ରଦ୍ଧା ଜ୍ଞାନରସେ । ରାଜସ ଶ୍ରଦ୍ଧା କର୍ମେ ବସେ ॥

---

୧. ଶକଟା—ଦ୍ୟୂତକ୍ରୀଡ଼ାବିଶେଷ ।

* 'ଜଗତେ ଯେ କର୍ମ.....ଏ ପ୍ରଧାନ' ଅର୍ଥାତ୍ ଭଗବାନଙ୍କୁ ସମର୍ପିତ ଅଥବା ନିଷ୍କାମଭାବରେ ସମ୍ପାଦିତ କର୍ମ ସାତ୍ତ୍ୱିକ, ଫଳକାମନାଯୁକ୍ତ କର୍ମ ରାଜସିକ ଏବଂ ଲୋକଦେଖାଣିଆ ଅଥବା ହିଂସାଯୁକ୍ତ କର୍ମ ତାମସିକ ଅଟେ ।

ତାମସ ଶ୍ରଦ୍ଧା ପାପକର୍ମେ । ନିରତେ ପଡ଼ଇ ଅଧର୍ମେ ॥
ମୋର ସେବାରେ ଶ୍ରଦ୍ଧା ପୁଣ । ନିଷ୍କାମ ସ୍ୱଭାବେ ନିର୍ଗୁଣ ॥୨୭
ସାତ୍ତ୍ୱିକ ପବିତ୍ର ଆହାର । ଭୁଞ୍ଜଇ ନିତ୍ୟେ ନିର୍ବିକାର ॥
ଇନ୍ଦ୍ରିୟ ତୁଷ୍ଟି ହେତୁ ରସ । ଅପଥ୍ୟ ଭୁଞ୍ଜଇ ରାଜସ ॥
ସକଳ ରସେ ହୀନ ହୋଇ । ଦୁଃଖେ ଦୁରିତ ଥାଇ ଯହିଁ ॥
ଦୁର୍ଗନ୍ଧ ହୀନ ଆହରଣ । ତାମସ ଭୋଜନ ଲକ୍ଷଣ ॥୨୮
ଯେ ଦ୍ରବ୍ୟ ମୋତେ ସମର୍ପଣ । ନିର୍ଗୁଣ ଆହାର ଲକ୍ଷଣ ॥
ସାତ୍ତ୍ୱିକ ସୁଖ ଆତ୍ମାଧ୍ୟାନେ । ରାଜସ ବିଷୟ ଗ୍ରହଣେ ॥
ତାମସ ସୁଖ ଦ୍ୱନ୍ଦ୍ୱ ମୋହ । ନିର୍ଗୁଣ ସୁଖ ମୋ ଆଶ୍ରୟ ॥୨୯
ଯେ ଦ୍ରବ୍ୟ ଦେଶ କାଳ କର୍ମ । ଆକୃତି[୧] ଫଳ ଶ୍ରଦ୍ଧା ଜ୍ଞାନ ॥
ଅବସ୍ଥା ନିଷ୍ଠା ଆଦି ଜାଣ । ତ୍ରିଗୁଣ ସକଳ ଏ ଧର୍ମ ॥୩୦
ଯେ କିଛି ଦେଖି ଶୁଣି କର୍ଣ୍ଣେ । ଯେ ଅବା ସ୍ଥାପି ଅନୁମାନେ ॥
ପ୍ରକୃତି ପୁରୁଷରୁ ଜାତ । ଏ ସର୍ବ ତ୍ରିଗୁଣେ ଯନ୍ତ୍ରିତ ॥
ଏ ତିନିଗୁଣ ଯେହୁ ଜିଣି । ଶୁଣ ଉଦ୍ଧବ ପରିମାଣି ॥
ସକଳ ଧର୍ମ ଛାଡ଼ି ଯେବେ । ମୋତେ ଭଜଇ ଭକ୍ତିଭାବେ ॥
ସେ ସର୍ବଭାବେ ଭକ୍ତି ସାଧେ । ସଂସାର ତାହାକୁ ନ ବାଧେ ॥
ଏ ବୋଲ ବୁଝି ଜୀବ ଯେବେ । ଆଶ୍ରେ କରଇ ମୋର ଭାବେ ॥
ସର୍ବ ସଂଶୟ ଦୂର କରି । ନିସ୍ତରେ ନରଦେହ ଧରି ॥
ସକଳଭାବେ ନିରପେକ୍ଷ । ତ୍ରିଗୁଣ ଜିଣେ ସେ ପ୍ରତ୍ୟକ୍ଷ ॥
ନିର୍ଗୁଣ ପୂର୍ଣ୍ଣବ୍ରହ୍ମେ ମିଶେ । ନିଶ୍ଚିନ୍ତେ ଭବଭୟ ନାଶେ ॥୩୧-୩୬
ବୋଲଇ ଦାସ ଜଗନ୍ନାଥ । ଭାଷାପ୍ରବନ୍ଧେ ଭାଗବତ ॥
ଉଦ୍ଧବ ବୋଧେ ଏକାଦଶ । ନିତ୍ୟେ ସୁଜନେ ଏଣେ ରସ ॥

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଏକାଦଶସ୍କନ୍ଧେ ଭଗବଦୁଦ୍ଧବସଂବାଦେ ଗୁଣତ୍ରୟବିଭାଗୋ ନାମ ଷଡ୍‌ବିଂଶୋଽଧ୍ୟାୟଃ ।

□□□

୧. ଆକୃତି—ଦେବ, ମାନବ, ପଶୁ ଆଦି ନାନା ଶରୀର ।

# ସପ୍ତବିଂଶ ଅଧ୍ୟାୟ*

ସାଧୁ ଅସାଧୁ ସଙ୍ଗଗୁଣ । ସପତବିଂଶରେ ବର୍ଣ୍ଣନ ॥

ଉଦ୍ଧବେ ଗ୍ରହିଁ ହୃଷୀକେଶ । କହନ୍ତି ନାନା ଉପଦେଶ ॥(ଜ.)

*ଶ୍ରୀ ଭଗବାନୁବାଚ*

ଅନେକ ଜନ୍ମ ତପଫଳେ । ମନୁଷ୍ୟଜନ୍ମ ମହୀତଳେ ॥
ଯାହାର ଦିବ୍ୟଜ୍ଞାନ ସ୍ଫୁରେ । ମୋର ମହିମା ସେ ସୁମରେ ॥
ମନ ନିବେଶି ମୋ ପୟରେ । ବିଷୟ ସୁଖ ନ ବିଗ୍ରହେ ॥
ପରମାନନ୍ଦ ସୁଖ ପାଇ । ସେ ପ୍ରାଣୀ ରହେ ପୂର୍ଣ୍ଣ ହୋଇ ॥ ୧
ଏ ଗୁଣମୟ ନରଅଙ୍ଗ । କେବେହେଁ ନୋହେ ତାର ସଙ୍ଗ ॥
ଅବିଦ୍ୟା ବାଧା ନ ଲାଗଇ । ତାହାର ସ୍ମୃତିଭଙ୍ଗ ନାହିଁ ॥
ଯେ ପ୍ରାଣୀ ଶରଣ ମୋହର । ମୁହିଁ ତାହାର ସୁଖଘର ॥
ଅସାଧୁ ସଙ୍ଗେ ନ ରମଇ । ଏଣୁ ଏ ସଂସାରୁ ତରଇ ॥ ୨
ଯେ ଶିଶ୍ନୋଦର ପରାୟଣ[୧] । ଅସାଧୁ ମତି ଯେ ଦୁର୍ଜନ ॥
ତା ସଙ୍ଗେ ଯେହୁ ସଙ୍ଗ ହୋଇ । ସେ ନିଶ୍ଚେ ନରକେ ପଡ଼ଇ ॥
ଅନ୍ଧକୁ ହୋଇ ଅନୁଗତ । ଅନ୍ଧ ଯେସନେ ପଡ଼େ ଖାତ ॥
ଏଣୁ ଦୁର୍ଜନ ସଙ୍ଗଦୋଷ । କରେ ସକଳ ଜ୍ଞାନ ଧ୍ୱଂସ ॥ ୩
ଥିଲା ଯେ ବୁଧଗ୍ରହ ସୁତ । ସେ ପୁରୂରବା ନରନାଥ ॥
ଉର୍ବଶୀ ବିରହେ ସେ ବୀର । ସକାମେ ତେଜିଲା ସଂସାର ॥
ଉନ୍ମତ୍ତ ଉଲଙ୍ଗ[୨] ଶରୀରେ । ବିହ୍ୱଳେ ଭ୍ରମେ ବନ ଘୋରେ ॥
କାନ୍ଦଇ ଉର୍ବଶୀ ନ ପାଇ । କ୍ଷଣକ୍ଷଣକେ ଛନ୍ନ ହୋଇ ॥

---

୧. ଶିଶ୍ନୋଦର ପରାୟଣ—ମୈଥୁନ ଓ ଆହାରରେ ଆସକ୍ତ ।
୨. ଉଲଙ୍ଗ—ବିବସ୍ତ୍ର, ଉଲଗ୍ନ ।

* ମୂଳ ସଂସ୍କୃତ ଅନୁସାରେ ଷଡ଼୍ବିଂଶ ଅଧ୍ୟାୟ ।

ଉର୍ବଶୀଠାରେ ଚିତ୍ତ ଦେଇ । ଏମନ୍ତେ କେତେକାଳ ଯାଇ ॥
ପୁଣ ଗନ୍ଧର୍ବି ସେବା ଫଳେ । ରମିଲା ଉର୍ବଶୀର ମେଳେ ॥
କାମ ସମ୍ପୂର୍ଣ୍ଣେ ଭୋଗ କଲା । ରାତ୍ରି ଦିବସ ନ ଜାଣିଲା ॥
ଏମନ୍ତେ କେତେଦିନ ଗଲା । ହୃଦରେ ଜ୍ଞାନ ପ୍ରସରିଲା ॥
ଏମନ୍ତେ ରାତ୍ରେ ଏକଦିନେ । ରାଜା ବିଗ୍ଭରୁଅଛି ମନେ ॥୪-୬

*ପୁରୁରବା ଉବାଚ*

ଦେଖ ମୋହର କର୍ମଫଳ । ଉର୍ବଶୀ ସଙ୍ଗେ ଏତେ କାଳ ॥
ମୋହିତେ ତାର ସଙ୍ଗେ ଖେଳା । କେତେ ରଜନୀ ଦିନ ଗଲା ॥
ଦେଖ ଚଞ୍ଚଳ ମୋର ଚିତ୍ତ । କାମିନୀ କାମେ ବିମୋହିତ ॥
ଯୁବତୀ ସଙ୍ଗେ କରି ଖେଳା । ବିଅର୍ଥେ ଆୟୁଷ ମୋ ଗଲା ॥ ୭
ବଞ୍ଚିତ ହୋଇଲି ଜଗତେ । ଧର୍ମାର୍ଥ କାମ ଅପ୍ରାପତେ ॥
ନ ଦେଖି ଆଦିତ୍ୟର ଗତି । ଅଜ୍ଞାନେ ଗଲା ଦିବାରାତି ॥ ୮
ନାରୀ ସଙ୍ଗମେ ଗଲା କାଳ । ଧିକ ମୋ ଜୀବନ ନିଷ୍ଫଳ ॥
ଦେଖ ମୁଁ ନୃପଶିଖାମଣି । ମୋ ପ୍ରାଣ ଜିଣିଲା ତରୁଣୀ ॥
ଏ ନର କଳେବର ପାଇ । ମୁଁ କ୍ରୀଡ଼ାମୃଗ ପ୍ରାୟେ ହୋଇ ॥ ୯
ଉର୍ବଶୀ ବିୟୋଗେ ବିକଳ । ଅଜ୍ଞାନେ ନାଶିଲି ସକଳ ॥
ଧନ ସମ୍ପଦ ମୋର କେଣେ । ଗଲା ନ ଦେଖେ ମୂଢ଼ପଣେ ॥
ଏକାନ୍ତେ ଭ୍ରମଇ ଜଗତେ । ଉଲଙ୍ଗ ବେଶେ ଉନମତ୍ତେ ॥
ଉର୍ବଶୀ ପଥେ ଯାଉଁ ଚଳି । ମୋ ମୁଣ୍ଡେ ତାର ପାଦଧୂଳି ॥୧୦
ଲମ୍ପଟ ଉନ୍ମତ୍ତ ମୋ ବେଶ । ମୋ ମୁଣ୍ଡେ ମୁକୁଳିତ କେଶ ॥
ଦେଖ ନିର୍ଦ୍ଦୟା ତା ହୃଦୟେ । ଲେଉଟି କେବେହେଁ ନ ଗ୍ଭହେଁ ॥
ଯେ ଅବା ନାରୀବଶ ହୋନ୍ତି । କିବା ତାହାଙ୍କ ତେଜ ମତି ॥
ଯେସନେ ଗଧ କାମଭୋଳେ । ଗଧୁଣୀ ପାଶେ ଯାଇ ମିଳେ ॥
ସେ ତାକୁ ଚରଣେ ତାଡ଼ଇ । ନିର୍ଲଜ୍ଜ ତାକୁ ନ ଛାଡ଼ଇ ॥
ଏଣୁ ଏ ଚିତ୍ତ ନିରୋଧନେ । ଉପାୟ ନ ଦିଶେ ମୋ ମନେ ॥୧୧

ବିଦ୍ୟା ତପସ୍ୟା ଶାସ୍ତ୍ର ଦାନ । ଏକାନ୍ତ ନିବାସ ମଉନ ॥
ଏଣେ ତା ପ୍ରୟୋଜନ କିସ । ଯା ମନ ନାରୀ କଲା ବଶ ॥୧୨
ଏଣୁ ଜୀବନ ମୋର ଧିକ । ନିଷ୍ଫଳ ଜ୍ଞାନ ମୋ ବିବେକ ॥
ମୁହିଁ ଯେ ପ୍ରଭୁପଣ ପାଇ । ଗୋରୁ ଗର୍ଦ୍ଦଭ ପ୍ରାୟେ ହୋଇ ॥
ସର୍ବ ନିଷ୍ଫଳ ନାରୀ ସଙ୍ଗେ । ବଞ୍ଚିତ ହେଲି ନରଅଙ୍ଗେ ॥୧୩
ଉର୍ବଶୀ ସଙ୍ଗେ ଏତେ ଦିନ । ବଞ୍ଚିଲି ଧିକ ମୋ ଜୀବନ ॥
ମୋତେ ନ ଛାଡ଼େ କାମଜ୍ୱର । ମୁଁ ରୋଗୀ ପାପିଷ୍ଟ ପାମର ॥୧୪
କୁଳଟା ସଙ୍ଗେ ଯାର ମନ । ମୋହେ ହୁଅଇ ହତଜ୍ଞାନ ॥
ତାର ଜୀବନ ଉଦ୍ଧାରଣେ । କେ ପାରେ ବିନା ନାରାୟଣେ ॥
ଜ୍ଞାନ-ଆଧାର ଭଗବାନ । ଗୁଣ ପଞ୍ଜର ପୂର୍ଣ୍ଣକାମ ॥
ମୋର ଜୀବନ ପରିତ୍ରାଣେ । ହରିହୁଁ ଅନ୍ୟ ନାହିଁ ଜଣେ ॥୧୫
ଇନ୍ଦ୍ରିୟମାନଙ୍କୁ ନ ଜିତି । ମୁଁ ମୂଢ଼ ଅତ୍ୟନ୍ତ ଦୁର୍ମତି ॥
ଉର୍ବଶୀ ଉଚିତ ବଚନ । ଯେଣୁ ନ ବୁଝି ହେଲି ଭ୍ରମ ॥
ତାହାର କିସ ଅବା ଦୋଷ । ମୋର ଅଜ୍ଞାନେ ମୁହିଁ ନାଶ ॥୧୬,୧୭
ଏ ଦେହେ କିବା କାର୍ଯ୍ୟ ଅଛି । ଦୁର୍ଗନ୍ଧ ମଳିନ ଅଶୁଚି ॥
ରୁଧିର ମାଂସ ମଳ ମୂତ୍ର । ଅନ୍ତ୍ର ଜଡ଼ିତ ଶିରା ସୂତ୍ର ॥
ଅସ୍ଥି ନିର୍ମିତ ଗଣ୍ଠି ଚର୍ମେ । ଏ ନରଦେହ ପାଇ କର୍ମେ ॥
ଏ ସର୍ବ ଅମେଧ୍ୟ ମନ୍ଦିର । ଅନିତ୍ୟ ନର କଳେବର ॥
ଏହାକୁ ନିତ୍ୟ ପ୍ରାୟେ ମଣି । ଯେ ପ୍ରାଣୀ ରମନ୍ତି ତରୁଣୀ ॥
ସେ କୀଟ କୃମି ସଙ୍ଗେ ସଙ୍ଗ । ଯେ ସତ୍ୟ ମଣେ ନାରୀ ଅଙ୍ଗ ॥୧୮-୨୧
ଏ ବୋଲ ବୁଝି ସ୍ତିରୀ ସଙ୍ଗେ । ପଣ୍ଡିତ ନୋହେ ମତି ଭଙ୍ଗେ ॥
ବିଷୟ ସଙ୍ଗେ ଇନ୍ଦ୍ରିମେଳେ । ମନ ବିକ୍ଷେପ ରସଭୋଳେ ॥
ନିତ୍ୟେ ସେବନ୍ତି ଅନୁସଙ୍ଗେ । ଯେସନେ ଜଳଧି ତରଙ୍ଗେ ॥
ବଢ଼ଇ ରସଲୋଭେ ଚିତ୍ତ । କେବେହେଁ ନୁହଇ ଆୟତ୍ତ ॥୨୨
ନ ଦେଖେ ନ ଶୁଣଇ ଯେବେ । ମନ ନିଶ୍ଚଳ ହୋଏ ତେବେ ॥

ମନ ନିଶ୍ଚଳେ ଇନ୍ଦ୍ରିଗଣ । ବଳେ ଯେ ହୁଅନ୍ତି ସଂଯମ ॥
ତେଣୁ ସ୍ତ୍ରୀସଙ୍ଗ ପରିହରେ । ଇନ୍ଦ୍ରିୟଗଣଙ୍କୁ ନିବାରେ ॥
ଶ୍ରବଣେ ଶୁଣି ସ୍ତିରୀରୂପ । ଚିତ୍ତେ ଜଡ଼ଇ କାମକଳ୍ପ ॥
ଏଣୁ କାମିନୀ ସଙ୍ଗଦୋଷେ । ପଣ୍ଡିତଜନ ମନ ତ୍ରାସେ ॥୨୩,୨୪

*ଶ୍ରୀ ଭଗବାନୁବାଚ*

ଏତେ ବିଗ୍ଭରି ନୃପବର । ଚଞ୍ଚଳଚିତ୍ତ କଲା ସ୍ଥିର ॥
ଉର୍ବଶୀ ସଙ୍ଗ ଦୂର କରି । ମୋର ଚରଣ ଦୃଢ଼େ ଧରି ॥
ଭକତିଯୋଗେ ଧରି ମନ । ମୋ ପାଦେ କଲା ଆରାଧନ ॥
ଚିତ୍ତେ ଯେ ଥିଲା ମୋହପାଶ । ମୋ ଭାବେ ଗଲା ସବୁ ନାଶ ॥
ମୋ ନାମ ଜପି ଶୁଦ୍ଧମନେ । ଅନ୍ତେ ପଶିଲା ମୋ ଭୁବନେ ॥୨୫
ତୁ ଏବେ ଦୃଢ଼ଚିତ୍ତେ ବୁଝ । ସ୍ତିରୀ ସଙ୍ଗମ ଦୂରେ ତେଜ ॥
ସାଧୁସଙ୍ଗମେ ରତି କର । ମୋ ନାମେ ଆନନ୍ଦେ ବିହର ॥
ସାଧୁସଙ୍ଗମେ ଜ୍ଞାନ ବଢ଼େ । କର୍ମ ବାସନା ବନ୍ଧ ଛିଡ଼େ ॥୨୬
ସ୍ୱଭାବେ ସାଧୁଜନ ଯେତେ । ସମାନ ଦେଖନ୍ତି ଜଗତେ ॥
ମିତ୍ର ଅଇରି ବେନି ପକ୍ଷ । ତାହାଙ୍କ ଚିତ୍ତ ନିରପେକ୍ଷ ॥
ଚିତ୍ତ ନିବେଶି ମୋ ଚରଣ । ସ୍ୱଭାବେ ଶାନ୍ତି ପରାୟଣ ॥
ନିର୍ଦ୍ୱନ୍ଦ୍ୱ ନିଷ୍କାମ ନିର୍ମୋହ । ନାହିଁ ତାହାଙ୍କ ପରିଗ୍ରହ ॥୨୭
ଏହାଙ୍କ ସଙ୍ଗେ ସଙ୍ଗ କର । ମୋର ଭକତି ହୃଦେ ଧର ॥
ମୋହର ନାମ ଯଶ ଗୁଣ । ନିତ୍ୟେ ତାହାଙ୍କ ମୁଖୁଁ ଶୁଣ ॥
ମୋ ନାମ ପଶି କର୍ଣ୍ଣଦ୍ୱାରେ । ହୃଦୁଁ ଅଶେଷ ପାପ ହରେ ॥
ସାଧୁଙ୍କ ମୁଖ ମଧୁବାଣୀ । ଦୁର୍ଗତି ଖଣ୍ଡେ ତାହା ଶୁଣି ॥୨୮
ସାଧୁଜନଙ୍କ ସଭାମଧ୍ୟେ । ମୋ ନାମ ଗୁଣ ଅନୁବାଦେ ॥
ନିତ୍ୟେ କହନ୍ତି ମୋର କଥା । ମୋ ପୁଣ୍ୟଯଶ ଗୁଣଗାଥା ॥
ଆନନ୍ଦେ ଶୁଣି କର୍ଣ୍ଣଦ୍ୱାରେ । ବଦନେ ଗାବନ୍ତି ସୁସ୍ୱରେ ॥
ନୟନୁଁ ଅଶ୍ରୁଜଳ ଝରେ । ରୋମ ହରଷ କଳେବରେ ॥

ଚିତ୍ତ ମୋହର ପାଦଗତେ । ଅର୍ପିତ କରେ ଶୁଦ୍ଧଚିତ୍ତେ ॥
ନାମ କରନ୍ତେ ନିର୍ବିବାଦେ । ଭକତି ଲଭେ ଅପ୍ରମାଦେ ॥୨୯
ଲଭଇ ବ୍ରହ୍ମ ଅନୁଭବ । ଆନନ୍ଦ ସ୍ୱରୂପ ସ୍ୱଭାବ ॥
ନିର୍ଗୁଣ ଆତ୍ମା ଯେ ସ୍ୱରୂପ । ନିର୍ମଳ ଅନନ୍ତ ଅରୂପ ॥
ମୋର ଭକତି ଦୃଢ଼ମନେ । ଯାର ଉପୁଜେ ଅକିଞ୍ଚନେ ॥
ତିନି ଭୁବନେ କରିବାର । କି ଅବା ଅବଶେଷ ତାର ॥
ସଂସାରବନ୍ଧ ତାର ନାହିଁ । ଜନ୍ମ ମରଣୁଁ ନିସ୍ତରଇ ॥୩୦
ଅଗ୍ନି ସେବନେ ଯେହ୍ନେ ଶୀତ । ତେମନ୍ତ ସାଧୁଙ୍କ ସଙ୍ଗତ ॥
କର୍ମବାସନା ନାଶ କରେ । ନ ପୁଣି ପଡ଼ଇ ସଂସାରେ ॥୩୧
ଦେଖ ଏ ସଂସାର-ସାଗର । ଅତି ଉତ୍କଟ ଭୟଙ୍କର ॥
କର୍ମବାସନା ରଜ୍ଜୁ ବନ୍ଦୀ । ଜୀବ ସଞ୍ଚରେ ନିରବଧି ॥
ପୁଣି ଉଠଇ ପୁଣି ବୁଡ଼େ । ନିଯ୍ୟତ ପଥ ନିତ୍ୟେ ହୁଡ଼େ ॥
ଏ ଘୋର ସଂସାର ତରଙ୍ଗେ । ନିସ୍ତାର ହେତୁ ସାଧୁସଙ୍ଗେ ॥
ସାଧୁସଙ୍ଗମ ନାବେ ବସି । ନିସ୍ତରେ ଘୋର ଜଳରାଶି ॥୩୨
ସକଳ ଜନ୍ତୁଙ୍କ ଜୀବନ । ଯେହ୍ନେ ସଂସାରେ ଲେଖି ଅନ୍ନ ॥
ଆରତ ଜନ ପ୍ରାଣୀଙ୍କର । ମୁଁ ଯେହ୍ନେ ଶରଣ ପଞ୍ଜର ॥
ପରଲୋକର ପାଇଁ ଜନ । ଯେହ୍ନେ ଭରସା କରେ ଧର୍ମ ॥
ସନ୍ଥ ଚରଣ ସେହିମତେ । ନିସ୍ତାର ହେତୁ ଏ ଜଗତେ ॥୩୩
ଘୋର ରଜନୀ ଅନ୍ଧକାର । ଯେସନେ ହରେ ଦିବାକର ॥
ଜ୍ଞାନଚକ୍ଷୁକୁ ଦେଇ ସନ୍ଥ । ଅଜ୍ଞାନ ତମ କରେ ହତ ॥
ସୁଜନ ଜନର ଏ ଭାବେ । ଉଦ୍ଧବେ କହିଲେ ମାଧବେ ॥୩୪
ସେ ପୁରୂରବା ଦଣ୍ଡଧାରୀ । ଉର୍ବଶୀ ସଙ୍ଗ ପରିହରି ॥
ସାଧୁସଙ୍ଗମ ହେତୁ କରି । ଘୋର ସଂସାରୁ ଗଲା ତରି ॥
ଏଣୁ ଯେ ସୁଜନ ସଙ୍ଗତେ । କ୍ଷଣେ ନିମିଷେ ଏ ଜଗତେ ॥
ବସେ ସକଳ ପରିହରି । ସେ ପ୍ରାଣୀ ଭବୁଁ ଯାଏ ତରି ॥୩୫

ବୋଲଇ ଦାସ ଜଗନ୍ନାଥ । ଶ୍ରୀକୃଷ୍ଣ ଉଦ୍ଧବ ଚରିତ ॥
ହରି ଭକତଙ୍କ ମହିମା । କେ ଜାଣିପାରେ ଗୁଣସୀମା ॥
ଭକତି ଯୋଗ ଅବଧାନେ । ସଂସାରୁ ତର ସାଧୁଜନେ ॥
ହରିଙ୍କ ଗୁଣ କର୍ମମାନ । ହରଇ ପାପ କୋଟିଜନ୍ମ ॥

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ଏକାଦଶସ୍କନ୍ଧେ ଶ୍ରୀକୃଷ୍ଣୋଦ୍ଧବସଂବାଦେ ଐଳଗୀତଂ
ନାମ ସପ୍ତବିଂଶୋଽଧ୍ୟାୟଃ ।

❒❒❒

# ଅଷ୍ଟାବିଂଶ ଅଧ୍ୟାୟ*

କ୍ରିୟାଯୋଗର ବିଧିମାନ । ଅଷ୍ଟାବିଂଶ ଅଧ୍ୟା ବର୍ଣ୍ଣନ ॥

ଉଦ୍ଧବ କୃଷ୍ଣର ବଚନେ । କହେ ଭକତି ଅନୁମାନେ ॥(କ.)

*ଉଦ୍ଧବ ଉବାଚ*

ଶରୀର ବହି ଏ ସଂସାରେ । ଜୀବ ସକଳ କର୍ମ କରେ ॥
ତୁମ୍ଭ ଭକତିଯୋଗ ଯେତେ । ମୋତେ କହିଲ ନାନାମତେ ॥
ମାୟା ପ୍ରପଞ୍ଚ ଏ ଜଗତ । ତୁମ୍ଭ ଚରଣ ମାତ୍ର ସତ୍ୟ ॥
ଭକତଜନ ତୋ ପଦ୍ମରେ । ପୂଜନ୍ତି ଯେମନ୍ତ ପ୍ରକାରେ ॥
ବେଦ ଆଗମ ଶାସ୍ତ୍ରମତେ । ପରମଧର୍ମ ଏ ଜଗତେ ॥
ବ୍ୟାସ ଅଙ୍ଗିରା ବ୍ରହ୍ମସୁତ । ଯେ ଧର୍ମ ତାହାଙ୍କର ମତ ॥
ସକଳ ଗ୍ରନ୍ଥ ଅବଧାରି । ସେ କର୍ମଯୋଗ ସାଧ୍ୟ କରି ॥
କର୍ମ ସାଧନ ନାନାମତେ । କହନ୍ତି ପ୍ରାଣୀ ଶ୍ରେୟ ଅର୍ଥେ ॥୧,୨
ଏ କର୍ମଯୋଗ ତୁମ୍ଭେ ମୁଖେ । କହିଛ ମୁନିଙ୍କୁ ପ୍ରତ୍ୟକ୍ଷେ ॥

---

* ମୂଳ ସଂସ୍କୃତ ଅନୁସାରେ ସପ୍ତବିଂଶ ଅଧ୍ୟାୟ ।

ତୋ ମୁଖକମଳୁଁ ଗଳିତ । ଶୁଚି ସୁରୁଚି ସୁଲଳିତ ॥
ଏ କଥା ପାର୍ବତୀ ସମ୍ମୁଖେ । ଈଶ୍ୱର କହିଛନ୍ତି ମୁଖେ ॥ ୩
ଏ କର୍ମଯୋଗ ଧର୍ମସାର । ସକଳ ବର୍ଣ୍ଣେ ଅଧିକାର ॥
ସ୍ତ୍ରୀ ଶୂଦ୍ର ଆଦି ଯେତେ ପ୍ରାଣୀ । ତରନ୍ତି କର୍ମଯୋଗ ଜାଣି ॥
ମୋ ମନ ବିନା କର୍ମଯୋଗେ । ସ୍ଥିର ନ ରହେ ହୃଦଭାଗେ ॥ ୪
ଅମଳ କମଳ ଲୋଚନ । ଯେ କର୍ମବନ୍ଧ ବିମୋଚନ ॥
ଯେମନ୍ତେ ଜୀବନ ଉଦ୍ଧାର । କହ ହେ କମଳାର ବର ॥ ୫
ଶୁଣି ଉଦ୍ଧବ ବାକ୍ୟସାର । ବୋଲନ୍ତି ପ୍ରଭୁ ଦାମୋଦର ॥(କ୍ଷ.)

*ଶ୍ରୀ ଭଗବାନୁବାଚ*

ଅନନ୍ତ ମହିମା କର୍ମର । କେ କରି ପାରିବ ଗୋଚର ॥
କିଛି କହିବା ସଂକ୍ଷେପରେ । ଶୁଣ ଉଦ୍ଧବ ମନ ସ୍ଥିରେ ॥ ୬
ଯେ କର୍ମଯୋଗ ପ୍ରକରଣ । ଅଶେଷ ଜୀବ ପରିତ୍ରାଣ ॥
ଆଗମ ନିଗମ ପ୍ରମାଣେ । ସକଳ ଶାସ୍ତ୍ର ଯା ବଖାଣେ ॥
ତ୍ରିବିଧମତେ ସେ କହନ୍ତି । ମୋହର ପୂଜା ଅର୍ଥେ ଚିନ୍ତି ॥
ଏଣୁ ଯାହାର ଯେଣେ ଇଚ୍ଛା । କରନ୍ତି ନାନାମତେ ଦୀକ୍ଷା ॥
ଅଶେଷ ଜନ୍ମ ପୁଣ୍ୟ ଭାଗ୍ୟେ । ମୋତେ ପୂଜନ୍ତି କର୍ମଯୋଗେ ॥
ବ୍ରାହ୍ମଣକୁଳେ ଜନ୍ମ ହୋଇ । ଯଜ୍ଞୋପବୀତ କନ୍ଧେ ବହି ॥
ଗୁରୁଚରଣ କରେ ଧରି । ଗାୟତ୍ରୀ ଉପଦେଶ ସ୍ମରି ॥
ଶ୍ରଦ୍ଧା ଭକତି କରି ଚିତ୍ତେ । ଯେ ଅବା ପୂଜିବ ଯେମନ୍ତେ ॥
ଶୁଣ ମୋ ପୂଜାବିଧି ଯେତେ । ଭାବେ କହିବା ତୋ ଅଗ୍ରତେ ॥୭,୮
ପ୍ରତିମା ସ୍ଥାପି ଭୂମିତଳେ । ଅଥବା ସ୍ଥଣ୍ଡିଳେ[୧] ଅନଳେ ॥
ସୂର୍ଯ୍ୟେ ପୂଜିବ କିବା ଜଳେ । ଅଥବା ହୃଦୟ ମଣ୍ଡଳେ ॥
ଶ୍ରଦ୍ଧା ଭକତି ଯୁତ ଚିତ୍ତେ । ଦ୍ରବ୍ୟ ସଞ୍ଚିଣ ନାନାମତେ ॥
ଗୁରୁ ଚରଣ ଭାବେ ଭଜି । ମୋତେ ପୂଜିବ ମାୟା ତେଜି ॥ ୯

୧. ସ୍ଥଣ୍ଡିଳ—ବେଦୀ ବା ପୂଜାମଣ୍ଡଳ ।

ସ୍ୱଭାବେ ଶୁଚିମନ୍ତ ହୋଇ । ଦନ୍ତ ବଦନ ଜଳେ ଧୋଇ ॥
ସ୍ନାନ କରିବ ଯଥାକାଳେ । ପ୍ରଭାତେ ପୁଣ୍ୟ ନଦୀଜଳେ ॥
ବେଦ ଆଗମ[୧] ମନ୍ତ୍ର ତନ୍ତ୍ରେ । ସ୍ନାନ କରିବ ଶୁଦ୍ଧମତେ ॥୧୦
ଯେ ମୋତେ ଶ୍ରଦ୍ଧାରେ ପୂଜିବ । ସେ ନିତ୍ୟକର୍ମେ ନିତ୍ୟେ ଥିବ ॥
କେବଳ ଈଶ୍ୱର ଭାବନେ । ସଙ୍କଳ୍ପ କରି ଶୁଦ୍ଧମନେ ॥୧୧
ଦାରୁ ପାଷାଣ ଧାତୁମୟୀ । ଲେପ ଲେଖନ ମଣିମୟୀ ॥
ବାଲୁକାମୟୀ ମନୋମୟୀ । ଏମନ୍ତ ପ୍ରତିମା ଭିଆଇ ॥
ଏ ଅଷ୍ଟପ୍ରକାରେ ପ୍ରତିମା । ସୁନ୍ଦର ସ୍ୱରୂପ ଉତ୍ତମା ॥୧୨
ଯେ ବେନି ମୂର୍ତ୍ତି ଚଳାଚଳ[୨] । ବିଷ୍ଣୁର ପୂଜାର ମନ୍ଦିର ॥
ନିର୍ମାଣ କରି ବିଷ୍ଣୁରୂପେ । ନିଶ୍ଚଳେ ପୂଜିବ ସମୀପେ ॥
ଯେ ଆବାହନ ବିସର୍ଜନ । ଚଳ ପ୍ରତିମାର ଅର୍ଚ୍ଚନ ॥
ଅଚଳେ ନ କରି ଏମନ୍ତ । ଏ ବୁଧଜନଙ୍କର ମତ ॥୧୩
ଲେପ ଲେଖନେ ଯେତେ ହୋଇ । ସ୍ନାନ ମାର୍ଜନା ନ କରାଇ ॥
ସ୍ନାନ ମାର୍ଜନେ ଇଚ୍ଛା ଯେବେ । ଦର୍ପଣେ କରାଇବ ତେବେ ॥୧୪
ଯତ୍ନେ ଉତ୍ତମଦ୍ରବ୍ୟ ଆଣି । ପବିତ୍ର ଗନ୍ଧ ପୁଷ୍ପ ପାଣି ॥
ମାୟା ନ ଥିବ ଦେହ ମଧ୍ୟେ । ବିଧାନେ ପୂଜିବ ଆନନ୍ଦେ ॥
ଯଦ୍ୟପି ଭକତ ଅଗ୍ରତେ । ଯେ କିଛି ଲଭେ ଅକସ୍ମାତେ ॥
ତେଣେ ପୂଜିବ ନରହରି । ହୃଦେ ଭକତିଭାବ ଧରି ॥୧୫
ଦିବ୍ୟ ପ୍ରତିମା ପୂଜି ଯେବେ । ନାନା ଉପହାର ସ୍ୱଭାବେ ॥
ଚନ୍ଦନ ବସ୍ତ୍ର ଅଳଙ୍କାର । ଭକ୍ଷ୍ୟ ଭୋଜନ ମନୋହର ॥
ସ୍ଥଣ୍ଡିଳେ ଯେବେ ପୂଜା କରି । ମନ୍ତ୍ର ବେଭାରେ ନ୍ୟାସ କରି ॥
ଅନଳେ ପୂଜିବ ଯେ ମୋତେ । ହୋମ କରିବ ମୂଳମନ୍ତ୍ରେ ॥୧୬
ରବି ପୂଜିବ ଅର୍ଘ୍ୟଜଳେ । ମୁଁ ଥାଇ ଆଦିତ୍ୟ ମଣ୍ଡଳେ ॥
ଏଣୁ ରସାଳ ବସ୍ତୁ ଯେତେ । ଦେବ ଆଦିତ୍ୟ ମୁଖେ ମୋତେ ॥

୧. ଆଗମ—ତନ୍ତ୍ର ଶାସ୍ତ୍ର । ୨. ଚଳାଚଳ—ସ୍ଥାୟୀ ଓ ଅସ୍ଥାୟୀ ।

ଜଳେ ପୂଜିବ ଜଳଦ୍ରବ୍ୟେ । ଏ ମୋର ପୂଜାର ସ୍ୱଭାବେ ॥
ଦରିଦ୍ର ପ୍ରାଣୀ ଯେବେ ମୋତେ । ଦୃଢ଼େ ପୂଜଇ ଭାବ ଚିତ୍ତେ ॥
ତାହାର ଜଳ ପୁଷ୍ପ ମୁହିଁ । ଅଣୁ ପ୍ରମାଣେ ଯେବେ ପାଇ ॥
ସନ୍ତୋଷେ କରଇ ଆହାରେ । ଯେଣୁ ଭକତ ବନ୍ଧୁ ମୋର ॥
ସେ ଯେବେ ଅଣୁମାତ୍ରେ ଦେଇ । ମୁଁ ତାହା ବହୁତେ ଘେନଇ ॥୧୭
ଯେ ମେରୁତୁଲ୍ୟ ନାନାଦ୍ରବ୍ୟେ । ମୋତେ ସମର୍ପଇ ଅଭାବେ ॥
ଶ୍ରଦ୍ଧା ନ ଥାଇ ଅନ୍ତର୍ଗତେ । ମୁଁ ତାହା ଛୁଇଁବି କେମନ୍ତେ ॥
ସୁଗନ୍ଧ ପୁଷ୍ପ ଧୂପ ଦୀପ । ବସ୍ତ୍ର ଭୂଷଣ ନାନା କଳ୍ପ[୧] ॥
ତେଣେ ମୋ ନାହିଁ ମନ ଶୁଦ୍ଧି । ଏବେ ହୋ ଶୁଣ ପୂଜାବିଧି ॥
ଯେ ଭାବେ ଯେମନ୍ତେ ପୂଜିଲେ । ଜୀବ ନିସ୍ତାର ଲଭେ ଭଲେ ॥୧୮
ପବିତ୍ର ଜଳେ ସ୍ନାନ କରି । ବସ୍ତ୍ର ତିଳକ କୁଶ ଧରି ॥
ସକଳ ଦ୍ରବ୍ୟ ଅବଧାନେ । ଘେନି ମିଳିବ ପୂଜାସ୍ଥାନେ ॥
ବ୍ରାହ୍ମଣ ପୂଜେ ଯେବେ ମୋତେ । ଅଖଣ୍ଡ କୁଶ ଘେନି ହସ୍ତେ ॥
ମନ୍ତ୍ର ଉଚ୍ଚାରି ପୂର୍ବେ ଅଗ୍ରେ । କୁଶ ସ୍ଥାପିବ ଭୂମିଭାଗେ ॥
ପୂର୍ବଦିଗକୁ ମୁଖ କରି । ବସିବ ଆସନ ସୁମରି ॥୧୯
ଅଙ୍ଗ ଶୋଧିବ ଅଙ୍ଗନ୍ୟାସେ । ମନ୍ତ୍ର ଉଚ୍ଚାରି ବେନିପାଶେ ॥
ମନ୍ତ୍ର ସୁମରି କୁଶ ନୀରେ । ମାର୍ଜନା କରି ଆତ୍ମଶିରେ ॥
ପୂଜାର ଦ୍ରବ୍ୟ ପୂଜାଭୂମି । ମାର୍ଜିବ ଆପଣା ମୂର୍ଦ୍ଧନି ॥
ବାହ୍ୟ ପବିତ୍ର କରି ଗାତ୍ର । ସମ୍ମୁଖେ ସ୍ଥାପି ତିନି ପାତ୍ର ॥
କ୍ରମେ ସ୍ଥାପିବ ତିନି ସ୍ଥାନ । ଯେ ପାଦ୍ୟ ଅର୍ଘ୍ୟ ଆଚମନ ॥
ଓଁକାର ପୂର୍ବେ ନମୋ ମନ୍ତ୍ରେ । ଶୋଧନ କରି ପାଦ୍ୟପାତ୍ରେ ॥
ସ୍ୱାହା ସୁମରି ଅର୍ଘ୍ୟପାତ୍ରେ । ପ୍ରୋକ୍ଷଣ କରିବ ପବିତ୍ରେ ॥
ତୃତୀୟ ଆଚମନ ପାତ୍ରେ । ଜଳ କ୍ଷେପିବ ଶିଖାମନ୍ତ୍ରେ ॥
ଗାୟତ୍ରୀ ମନ୍ତ୍ରେ ସର୍ବ ଦ୍ରବ୍ୟେ । ଜଳ ସିଞ୍ଚିବ ଶୁଦ୍ଧଭାବେ ॥୨୦-୨୨

୧. କଳ୍ପ—ନିୟମ ବା ବିଧି ।

ସମ୍ପୁଟେ ଯୋଡ଼ି ବେନି କର । ଚିନ୍ତିବ ହୃଦୟ କମଳ ॥
ମନ ପବନ କରି ସ୍ଥିର । ଆସନେ କୁଞ୍ଚିତ ଆଧାର ॥
ପରମଆତ୍ମା ଦିବ୍ୟମୂର୍ତ୍ତି । ହୃଦୟପଦ୍ମ ମଧ୍ୟେ ଚିନ୍ତି ॥
ଲବ ନିମିଷ ଦଣ୍ଡମାତ୍ରେ । ମୂର୍ତ୍ତି ନିଶ୍ଚଳ କରି ଗାତ୍ରେ ॥
ଏମନ୍ତ ଧ୍ୟାନ ପୂଜା ସାରି । ପଛେ ମଣ୍ଡଳେ ପୂଜା କରି ॥
ସ୍ୱମନ୍ତ୍ରେ ଆବାହନ କରି । ଦେହେ ସ୍ଥାପିବ ମୁଦ୍ରା ଧରି ॥
ହୃଦୟ ଆଦି ଗ୍ରିଦେଶେ । ନ୍ୟାସ କରିବ ମନ୍ତ୍ରନ୍ୟାସେ ॥୨୩,୨୪
ବିବିଧ ଦ୍ରବ୍ୟ ଉପହାରେ । ପୂଜା ପ୍ରକାଶିବ ବେଭାରେ ॥
ଯେ ପାଦ୍ୟ ଅର୍ଘ୍ୟ ଆଚମନ । ମନ୍ତ୍ରେ କରିବ ନିବେଦନ ॥
ଧର୍ମାଦି ଅଷ୍ଟମୂର୍ତ୍ତି* ଧ୍ୟାନେ । ମନ୍ତ୍ରେ ସ୍ଥାପିବ ଯଥାସ୍ଥାନେ ॥
ବିମଳା ଆଦି ନବଶକ୍ତି☫ । ନ୍ୟାସେ ପୂଜିବ ଯଥାସ୍ଥିତି ॥
ମଧ୍ୟେ କଳ୍ପିବ ଅଷ୍ଟଦଳ । କୋମଳ ଉଜ୍ଜ୍ୱଳ କମଳ ॥
କର୍ଣ୍ଣିକା କେଶର ସହିତେ । ବେଦ ଆଗମ ମନ୍ତ୍ରତନ୍ତ୍ରେ ॥୨୫,୨୬
ଏମନ୍ତେ ପୂଜିବ ବିଧାନେ । ଯେପରି ଭେଦ ଅନୁମାନେ ॥
ଶଙ୍ଖ ଚକ୍ର ଗଦା କମଳ । ପୂଜିବ ଲଙ୍ଗଳ ମୁଷଳ ॥
ଖଡ଼ଗ ବାଣ ଶରାସନ । ଯେ ବିଧି ଅସ୍ତ୍ରପୂଜା ସ୍ଥାନ ॥
ଶ୍ରୀବତ୍ସ ବନମାଳା ମଣି । ଧ୍ୟାନେ ପୂଜିବ ସ୍ଥାନ ଜାଣି ॥୨୭
ସମ୍ପୂର୍ଣ୍ଣ ପାରିଷଦବୃନ୍ଦ । ସୁବଳ ନନ୍ଦ ଯେ ସୁନନ୍ଦ ॥
ପ୍ରଚଣ୍ଡ ମହାବଳ ଚଣ୍ଡ । ସୁବୀର ଗରୁଡ଼ ଉଦ୍ଦଣ୍ଡ ॥
କୁମୁଦ କୁମୁଦଲୋଚନ । ପାର୍ବତୀ ପାର୍ବତୀନନ୍ଦନ ॥
ପୂଜିବ ବ୍ୟାସ ବିଷ୍ୱକ୍‌ସେନ । ଗୁରୁଙ୍କ ତୁଲେ ଦେବଗଣ ॥
ସମସ୍ତ ପାର୍ଷିଦ ବିଧାନେ । ପୂଜିବ ନିଜ ନିଜ ସ୍ଥାନେ ॥୨୮,୨୯

* ଧର୍ମ, ଜ୍ଞାନ, ବୈରାଗ୍ୟ, ଐଶ୍ୱର୍ଯ୍ୟ, ଅଧର୍ମ, ଅଜ୍ଞାନ, ଅବୈରାଗ୍ୟ ଓ ଅନୈଶ୍ୱର୍ଯ୍ୟ ।

☫ ବିମଳା, ଉତ୍‌କର୍ଷିଣୀ, ଜ୍ଞାନା, କ୍ରିୟା, ଯୋଗା, ପ୍ରହ୍ୱୀ, ସତ୍ୟା, ଈଶାନା ଓ ଅନୁଗ୍ରହା ।

କର୍ପୂର ଉଶୀର ଚନ୍ଦନ । କୁଙ୍କୁମ ଗୋଳା ଜଳେ ସ୍ନାନ ॥
ଦିବ୍ୟ ଉପହାର ଘଟନେ । ନିଗମ ଆଗମ ବଚନେ ॥
ସୁଗନ୍ଧ ବସ୍ତ୍ର ଅଳଙ୍କାର । ଯଜ୍ଞୋପବୀତ ଉପହାର ॥
ଲେପନ ସୁଗନ୍ଧ ଚନ୍ଦନ । ବକ୍ଷ ଗଣ୍ଡରେ ସୁମଣ୍ଡନ ॥
କୁସୁମ ପାଦ୍ୟ ଅର୍ଘ୍ୟଦାନ । ଗନ୍ଧ ଅକ୍ଷତ ଆଚମନ ॥
ସୁମନୋହର ଧୂପଦୀପ । ଶ୍ରଦ୍ଧାରେ ଦେବ ମୋ ସମୀପ ॥୩୦-୩୩
ଗୁଡ଼ ପାୟସ ଘୃତପାକ । ନାନାପ୍ରକାର ଯେ ମୋଦକ ॥
ଅନ୍ନ ବ୍ୟଞ୍ଜନ ନାନାପାକ । ପୂପ[୧] ପ୍ରପାନ[୨] ସୂପ[୩] ଶାକ ॥
କ୍ଷୀରବିକାର[୪] ଯେତେ ମିଳେ । ସୁଗନ୍ଧ ସୁଶୀତଳ ଜଳେ ॥
ବିଭବ କ୍ରମେ ମିଳେ ଯେତେ । ଥୋଇବ ମୋହର ଅଗ୍ରତେ ॥୩୪
ସୁଗନ୍ଧ ତଇଲେ ଅଭ୍ୟଙ୍ଗ । ମର୍ଦ୍ଦନ କରି ମୋର ଅଙ୍ଗ ॥
ଦନ୍ତ ଧାବନ ଅଭିଷେକ । ବିଧି ପ୍ରକାରେ ଏକୁ ଏକ ॥
ଆନନ୍ଦେ ମୋର ପୂଜା ସାରି । ପ୍ରମୋଦେ ନୃତ୍ୟ ଗୀତ କରି ॥
ମୋତେ ପୂଜିବ ବାରେ ବାରେ । ଯଥା ବିଭବ ଅନୁସାରେ ॥୩୫
ପୂଜାର ଅନ୍ତେ ଅଗ୍ନିକୁଣ୍ଡେ । ହୋମ କରିବ ମନ୍ତ୍ର କାଣ୍ଡେ ॥
ଅନଳ ମଧ୍ୟେ ରୂପ ମୋର । ଦେଖିବ ଏମନ୍ତ ପ୍ରକାର ॥
ତପ୍ତକାଞ୍ଚନ ମନୋହର । ଅତି ରୁଚିର କଳେବର ॥
ନିଜ ଆୟୁଧ ଚ୍ୟୁରିଭୁଜେ । ପୀତବସନ କଟି ମାଝେ ॥୩୬-୩୮
କିରୀଟ କୁଣ୍ଡଳ ବିରାଜେ । ରତ୍ନ ମେଖଳା କଟି ସାଜେ ॥
ମର୍କତ କେୟୂର କଙ୍କଣ । ହୃଦରେ ଶ୍ରୀବତ୍ସର ଚିହ୍ନ ॥
କୌସ୍ତୁଭମଣି ଶୋହେ ଗଳେ । ସୁନ୍ଦର ଦିଶେ ବନମାଳେ ॥୩୯
ଏ ଦିବ୍ୟରୂପ ଅଗ୍ନିମଧ୍ୟେ । ଧ୍ୟାନେ ଚିନ୍ତିବ ହୃଦପଦ୍ମେ ॥
ଘୃତ ଆହୁତି ମୂଳମନ୍ତ୍ରେ । ହୋମ କରିବ ବେଦମତେ ॥

---

୧. ପୂପ—ପିଷ୍ଟକ, ପିଠା । ୨. ପ୍ରପାନ—ପଣା, ସରବତ । ୩. ସୂପ—ଡାଲି । ୪. କ୍ଷୀରବିକାର—କ୍ଷୀର, ଦହି, ଛେନା ଆଦି ଦୁଗ୍ଧଜାତ ଦ୍ରବ୍ୟ ।

ଯେ ନାମ ଗୋତ୍ର ଉଚ୍ଚାରିଣ । ପୂଜିବ ପାରିଷଦଗଣ ॥
ପ୍ରଣାମ କରି ଜଣେ ଜଣେ । ପୂଜିବ ବେଦ ଉଚ୍ଚାରଣେ ॥
ଏ ଅନ୍ତେ ପାରିଷଦଗଣେ । ବଳି କରିବ ସମର୍ପଣେ ॥
ନିଶ୍ଚଳେ ମୂଳମନ୍ତ୍ର ଜପି । ବ୍ରହ୍ମ ସ୍ମରଣେ ଚିତ୍ତ ସ୍ଥାପି ॥୪୦-୪୨
ଧ୍ୟାନେ ଭୋଜନ ଶେଷ ଜାଣି । ସମର୍ପି ଆଚମନ ପାଣି ॥
ମୋର ନିର୍ମାଲ୍ୟ ଶେଷଭାଗ । ବିଷ୍ୱକସେନେ ତାହା ଦେବ ॥
କର୍ପୂର ଗନ୍ଧଫଳ ମିଶେ । ତାମ୍ବୁଳ ଦେବ ମୁଖବାସେ ॥
ପୁଣି ସୁଗନ୍ଧ ପୁଷ୍ପ ନେଇ । ପୂଜିବ ପୁଷ୍ପାଞ୍ଜଳି ଦେଇ ॥୪୩
ମୋର ପବିତ୍ର ଯଶଗୁଣ । ମଙ୍ଗଳ ନାମ ଉଚ୍ଚାରଣ ॥
ନୃତ୍ୟ କରିବ ଉଚ୍ଚେ ଭଣି । କର୍ଣ୍ଣେ ମୋହର କଥା ଶୁଣି ॥
ମୋହର କର୍ମ ସମୁଦାୟ । ଯତ୍ନେ କରିବ ଅଭିନୟ ॥
ମୋ କଥା ଶୁଣି ଶୁଣାଇଣ । ଏକାଗ୍ରଭାବ କରି ମନ ॥
ମୁହୂର୍ତ୍ତେ ଅବା କିଛି କ୍ଷଣ । ସମୟ କରିବ ହରଣ ॥
ସ୍ତୁତି ପଠନେ ମୋର ମନ । ସ୍ତବନେ କରାଇ ପ୍ରସନ୍ନ ॥୪୪
ବେଦପୁରାଣେ ସ୍ତୁତି ଯେତେ । ଆନନ୍ଦେ ପଢ଼ି ମୋ ଅଗ୍ରତେ ॥
ନମସ୍ତେ ଲକ୍ଷ୍ମୀଦେବୀକାନ୍ତ । ଉଚ୍ଚାରି ଯୋଡ଼ି ବେନି ହସ୍ତ ॥
ତ୍ରିବାର କରି ପ୍ରଦକ୍ଷିଣ । ଦଣ୍ଡପ୍ରଣାମ ପୁଣ ପୁଣ ॥୪୫
ମୋର ଚରଣେ ଶିର ଦେଇ । ବୋଲିବ କୃଷ୍ଣ ତ୍ରାହି ତ୍ରାହି ॥
ଅନାଦି ଧର୍ମ ନିରାକାର । ଭବ ସାଗରୁ କର ପାର ॥୪୬
ଏ ରୂପେ ନମସ୍କାର କରି । ଶେଷ ନିର୍ମାଲ୍ୟ ଶିରେ ଧରି ॥
ଯେବେ କରିବ ବିସର୍ଜନ । ଦେଖିବ ନିଜ ହୃଦେ ପୂର୍ଣ୍ଣ ॥୪୭
ଏରୂପେ ମୋର ରୂପ ଯେତେ । ମୂର୍ତ୍ତି କରାଇ ଶୁଦ୍ଧଚିତ୍ତେ ॥
ନିତ୍ୟେ ପୂଜିବ ଶ୍ରଦ୍ଧାଭାବେ । ଯେ ବିଧି ପୂଜାର ପ୍ରସ୍ତାବେ ॥
ଏମନ୍ତ ଭାବେ ନିତ୍ୟେ ନିତ୍ୟେ । ଯେ ପ୍ରାଣୀ ପୂଜୁଥାନ୍ତି ମୋତେ ॥୪୮
ସର୍ବ ସମ୍ପଦ ଅନୁକୂଳ । ଲଭନ୍ତି ପରମ ମଙ୍ଗଳ ॥

ମୋର ପ୍ରତିମା କରି ବେଶ । ଦୃଢ଼ ମନ୍ଦିରେ ଦେଇ ବାସ ॥
ସୁଗନ୍ଧ ପୁଷ୍ପ ଉପବନ । ନାନା ପ୍ରକାରେ କ୍ରୀଡ଼ାସ୍ଥାନ ॥
ମୋହର ଉତ୍ସବ ସହିତେ । କରିବ ଶକ୍ୟ ଅନୁମତେ ॥
ମୋର ଉତ୍ସବ ପର୍ବାପର୍ବେ । ଭାବେ ପୂଜିବ ନାନାଦ୍ରବ୍ୟେ ॥୪୯,୫୦
ଏମନ୍ତେ ପୂଜି ବହୁବିଧେ । ବଞ୍ଚିବ ଉତ୍ସବ ଆନନ୍ଦେ ॥
କୃଷି ବାଣିଜ୍ୟ ବ୍ୟବହାରେ । ଜୀବିକା ଉପାୟ ପ୍ରକାରେ ॥
ନିବାସ ପୁର ଗ୍ରାମ ଆଦି । ଯେ ଅବା ସମ୍ପଦ ପ୍ରସିଦ୍ଧି ॥
ସମର୍ପି ମୋହର ଚରଣେ । ମୋ ନାମ ଉଚ୍ଚାରି ବଦନେ ॥
ସାଲୋକ୍ୟ ମୁକ୍ତିପଦ ତାର । ନିବାସ ଲଭେ ମୋର ପୁର ॥୫୧
ଏ ମୋର ପୂଜାର ଲକ୍ଷଣ । ଉଦ୍ଧବ ଏକମନେ ଶୁଣ ॥
ଯେ ମୋତେ ଦ୍ୟନ୍ତି ଗୃହ ଦାନ । ହେଲେ ଲଭନ୍ତି ତ୍ରିଭୁବନ ॥
ମୋତେ ମଣ୍ଡପେ ସ୍ଥାପି ଯେବେ । ପ୍ରତିଷ୍ଠା କରେ ପ୍ରିୟଭାବେ ॥
ସପତଦ୍ୱୀପେ ହୋଏ ରାଜା । ମୋହର ପ୍ରାୟେ ଲଭେ ପୂଜା ॥
ଯେ ମୋତେ ପୂଜେ ଏ ସଂସାରେ । ସେ ବ୍ରହ୍ମଲୋକ ଭୋଗ କରେ ॥
ସାରୂପ୍ୟ ମୁକ୍ତି ଏ ସଂସାରେ । ଲଭନ୍ତି ଏ ତିନି ପ୍ରକାରେ ॥୫୨
ଯେ ନିରପେକ୍ଷ ଭକ୍ତିଯୋଗେ । ଆତ୍ମା ନିସ୍ତାର ସୁଖମାର୍ଗେ ॥
ମୋର ଚରଣେ ଦୃଢ଼େ ଭଜେ । ମାୟା ସଂସାରଧର୍ମ ତେଜେ ॥
କେବଳ ଲାଭ ମୋର ଧାମ । ସେ ପ୍ରାଣୀ ଲଭେ ପୂର୍ଣ୍ଣକାମ ॥
ତ୍ରିବିଧ ତାପୁଁ ସେ ନିସ୍ତରେ । ନ ବୁଡ଼େ ଘୋର ଅନ୍ଧକାରେ ॥
ଏରୂପେ ମୋତେ ଯେ ପୂଜନ୍ତି । ହୃଦେ ଭକତିଭାବ ଚିନ୍ତି ॥
ମୋର ସେବନେ ନିରବଧି । ସେ ପ୍ରାଣୀ ଲଭେ ସର୍ବସିଦ୍ଧି ॥୫୩
ଶୁଣ ଉଦ୍ଧବ କହୁଁ ତୋତେ । ଯେ ପାପୀଜନ ଏ ଜଗତେ ॥
ସ୍ୱଦତ୍ତ ପରଦତ୍ତ ବୃତ୍ତି । ଯେ ଜନ ଅଜ୍ଞାନେ ହରନ୍ତି ॥
ଦେବ ବ୍ରାହ୍ମଣ ତାପ ଶୋକେ । ସେ କାହୁଁ ଥିବେ ନରଲୋକେ ॥
ଜୀବନେ ଅନ୍ତେ କୁମ୍ଭୀପାକେ । ପଡ଼ନ୍ତି ବିଷ୍ଠାକୃମି ରୂପେ ॥
କେବଳ ନରକ ଆହାରେ । କରନ୍ତି ଲକ୍ଷେ ସଂବତ୍ସରେ ॥୫୪

ଯେ ଅବା କୃଷ୍ଣକର୍ମ କରେ । ଯେ ଅବା ସାହା ହୋନ୍ତି ତାରେ ॥
ଯେବା ଆପଣେ ନ ପାରଇ । ପରେ କରାଇ ହେତୁ ହୋଇ ॥
ଯେ ମୋର ପୂଜାକର୍ମ ଦେଖି । ସୁଖି ଆନନ୍ଦେ ବୁଜେ ଆଖି ॥
ଏ ଗ୍ରରି ଜଣେ ସମଫଳ । ଲଭନ୍ତି କହିଲେ ଗୋପାଳ ॥୫୫
ଉଦ୍ଧବ ଶୁଣି କୃତକୃତ୍ୟ । ନମଇଁ ଦାସ ଜଗନ୍ନାଥ ॥

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ଏକାଦଶସ୍କନ୍ଧେ ଶ୍ରୀକୃଷ୍ଣୋଦ୍ଧବସଂବାଦେ କ୍ରିୟାଯୋଗକଥନଂ
ନାମ ଅଷ୍ଟାବିଂଶୋଽଧ୍ୟାୟଃ ।

❒❒❒

# ଊନତ୍ରିଂଶ ଅଧ୍ୟାୟ*

ସଂକ୍ଷେପେ ଜ୍ଞାନଯୋଗ କଥା । ଊନତ୍ରିଂଶ ଅଧ୍ୟା ବ୍ୟବସ୍ଥା ॥

*ଶ୍ରୀ ଭଗବାନୁବାଚ*

କହନ୍ତି ପ୍ରଭୁ ଭଗବାନ । ଉଦ୍ଧବ ହୁଅ ସାବଧାନ ॥
ଏ ମାୟା ନିର୍ମିତ ସଂସାରେ । ପ୍ରାଣୀ ସକଳ କର୍ମ କରେ ॥
ନିଜ ସ୍ୱଭାବେ ଅଲଙ୍ଘିତ । ଏ ଘେନି ଯେ ହୋନ୍ତି ପଣ୍ଡିତ ॥
ନିନ୍ଦା ପ୍ରଶଂସା ନ କରନ୍ତି । ସାକ୍ଷୀଙ୍କ ପ୍ରାୟେ ସେ ଦେଖନ୍ତି ॥
ଯେଣୁ ସାଧବ ପ୍ରାଣୀଙ୍କର । ସଂସାରେ ନାହିଁ ନିଜ ପର ॥
ସକଳ ଜନ୍ତୁ ଏକଭାବ । ପ୍ରକୃତି ପୁରୁଷ ସଂଯୋଗ ॥ ୧
ଯେ ପର ସ୍ୱଭାବ ଆଗ୍ରର । ନିନ୍ଦା ପ୍ରଶଂସା ତାହାଙ୍କର ॥
କରଇ ଜ୍ଞାନଭ୍ରଷ୍ଟ ପଣେ । ନିଷ୍ଠୁର ଅସତ୍ୟ ଭାଷଣେ ॥
ଅଜ୍ଞାନେ କଳ୍ପେ ନାନା ଅଙ୍ଗ । ଜୀବନ୍ତେ ନୋହେ ନିଦ୍ରାଭଙ୍ଗ ॥
ଏଣୁ ହୋ ପର ଗୁଣଦୋଷ । ବିଗ୍ରର ନ କରି ବିଶେଷ ॥୨,୩

---

* ମୂଳ ସଂସ୍କୃତ ଅନୁସାରେ ଅଷ୍ଟାବିଂଶ ଅଧ୍ୟାୟ ।

ଯେତେ ଉଦ୍ଧବ ଶୁଣୁ କର୍ଣ୍ଣେ । ଯେ ଅବା ଦେଖୁ ତୁ ନୟନେ ॥
ଯେ କିଛି ଉଚ୍ଚାରୁ ବଦନେ । ଯେ ଅବା ଚିନ୍ତୁ ମନେ ଧ୍ୟାନେ ॥
ଯେ ଅବା ଭଲ ମନ୍ଦ ଜନେ । ନ୍ୟାୟ ବିଗ୍ରହ ଅନୁମାନେ ॥
ଏ ସର୍ବ ସତ୍ୟ ନୋହେ କିଛି । କେବଳ ମାୟା ମାତ୍ର ଲକ୍ଷି ॥ ୪
ଆଭାସ ଛାୟା ପ୍ରତିସ୍ୱନ । ଅବସ୍ତୁଠାରେ ବସ୍ତୁଜ୍ଞାନ ॥
ଭୟ ମୋହକୁ ଜନମାନ୍ତି । ତେସନେ ଦେହ ଆଦି ଭ୍ରାନ୍ତି ॥
ଏଣୁ ହୋ ମିଥ୍ୟା ଦେହଭାବେ । ଏ ଜୀବ ଜନ୍ମମୃତ୍ୟୁ ଲଭେ ॥ ୫
ତୁ ଅବା ବୋଲିବୁ ଏମନ୍ତେ । ଏ ସର୍ବ ସତ୍ୟ ଶ୍ରୁତିପଥେ ॥
ବେଦବଚନ ଅନୁମାନେ । ସତ୍ୟ ନ କହେ ଆତ୍ମାବିନେ ॥
ଏ ଆତ୍ମା ହର୍ତ୍ତାକର୍ତ୍ତା ତ୍ରାତା । ଆତ୍ମା ଈଶ୍ୱର ପିତାମାତା ॥
ସୃଷ୍ଟି ପାଳନ ସଂହାରଣ । ଏ ସର୍ବ ଆତ୍ମାର ଭିଆଣ ॥ ୬
ଏଣୁ ଅଶେଷ ଚରାଚରେ । ଆତ୍ମାହୁଁ ସତ୍ୟ ନାହିଁ ପରେ ॥
ପ୍ରକୃତି ନିର୍ମିତ ସଂସାର । ତ୍ରିଗୁଣ ବିଧି ଏ ମାୟାର ॥
ଆତ୍ମାର ସଙ୍ଗ ନାହିଁ ଏଣେ । ଏମନ୍ତେ ବିଗ୍ରହିଣ ମନେ ॥
ସକଳ ବୁଝି ଦୃଢ଼ଚିତ୍ତେ । ଏ ଭ୍ରମ ଛାଡ଼ନ୍ତି ପଣ୍ଡିତେ ॥
ଏଣୁ ଏ ନିଜ ପର ଜ୍ଞାନ । ନ କରି ସ୍ତବନ ନିନ୍ଦନ ॥
କେବଳ ଜ୍ଞାନ ଅନୁମାନେ । ଥିବ ଭାସ୍କର ଯେହ୍ନେ ଶୂନ୍ୟେ ॥୭,୮
ଆପଣେ କରି ଅନୁମାନ । ପ୍ରତ୍ୟକ୍ଷେ ଦେଖିଣ ନୟନ ॥
ଯେ ଅବା ବେଦର ବିଧାନ । ସୁମରି ମୋହର ବଚନ ॥
ଯେ ଆଦି ମଧ୍ୟ ଅବସାନ । ଅସତ୍ୟ ଦେଖି ତ୍ରିଭୁବନ ॥
ଏଣୁ ଅଶେଷ ସଙ୍ଗ ତେଜି । ପଣ୍ଡିତ ରହେ ଜ୍ଞାନ ବୁଝି ॥ ୯
ଏମନ୍ତେ କୃଷ୍ଣମୁଖୁଁ ଶୁଣି । ଉଦ୍ଧବ କହେ ମଞ୍ଜୁବାଣୀ ॥
ମନ ସଂଶୟେ କର ଯୋଡ଼ି । କହେ ଗୋବିନ୍ଦ ପାଦେ ପଡ଼ି ॥(ଜ.)

*ଉଦ୍ଧବ ଉବାଚ*

ଶୁଣ ହେ ପ୍ରଭୁ ଦାମୋଦର । ଏ ଯେବେ ଅସତ୍ୟ ସଂସାର ॥

ନିର୍ଗୁଣ ନିର୍ବିକାର ଜୀବ । ସର୍ବ ବ୍ୟାପକ ସଦାଶିବ ॥
ଏ ପଞ୍ଚଭୂତେ କଳେବର । ନିର୍ମିତ କ୍ଷଣିକ ଭଙ୍ଗୁର ॥
ଜନ୍ମ ମରଣ ଅନୁସରି । କେ ପୁଣ ସଂସାରେ ସଂସାରୀ ॥
କହ ହେ ପ୍ରଭୁ ବିଶ୍ୱେଶ୍ୱର । ଏ ମୋର ଭ୍ରମ ଯାଉ ଦୂର ॥୧୦
ଆତ୍ମା ନିର୍ଗୁଣ ନିରଞ୍ଜନ । ନିତ୍ୟ ସାତ୍ତ୍ୱିକମୟ ବ୍ରହ୍ମ ॥
ଏ ଆତ୍ମା ସର୍ବଭୂତେ ବସେ । ଆଦିତ୍ୟ ଯେସନେ ଆକାଶେ ॥
ଇନ୍ଧନ ମଧ୍ୟେ ଅଗ୍ନି ଯେହ୍ନେ । ଜ୍ୱଳନ୍ତେ ଦେଖି ଅନୁମାନେ ॥
ଆତ୍ମା ପ୍ରକାଶ ଏହିମତେ । ପ୍ରତ୍ୟକ୍ଷେ ଦେଖି ଏ ଜଗତେ ॥
ସ୍ୱଭାବେ ଆତ୍ମା ସର୍ବପୂର୍ଣ୍ଣ । ସାକ୍ଷୀ ପୁରୁଷ ନିରଞ୍ଜନ ॥
ସେ ଯେବେ ରହେ ନିଜପୁରେ । ଜନ୍ମ ମରଣେ କେ ସଞ୍ଚରେ ॥
ଆତ୍ମା ଅଖଣ୍ଡ ନିରଞ୍ଜନ । ସ୍ୱଭାବେ ଦେହ ଅଚେତନ ॥
ଏଣୁ ଏ ସଂସାର କାହାର । ନିଶ୍ଚୟ କହ ଦାମୋଦର ॥୧୧
ଉଦ୍ଧବ ବାକ୍ୟ ଶୁଣି ହସି । କହନ୍ତି ପ୍ରଭୁ ବ୍ରହ୍ମରାଶି ॥(ଜ.)

*ଶ୍ରୀ ଭଗବାନୁବାଚ*

ଯାବତ ଦେହେ ଅହଙ୍କାର । ଇନ୍ଦ୍ରିୟ ପ୍ରାଣରେ ସଞ୍ଚାର ॥
ତାବତ ଜୀବ ସଞ୍ଚରଇ । ଯେଣୁ ଏହାଙ୍କ ସଙ୍ଗେ ଥାଇ ॥
ଆତ୍ମା ସ୍ୱଭାବେ ନିରଞ୍ଜନ । ନ ଦେଖି ସଂସାର ଘଟନ ॥
ଏହାଙ୍କ ସଙ୍ଗେ ମୂଢ଼ପଣେ । ସଂସାରେ ଭ୍ରମେ ଅକାରଣେ ॥୧୨
ଜାଗ୍ରତ ପୁରୁଷ ଯେସନ । କରଇ ଯେ ବିଷୟ ଧ୍ୟାନ ॥
ଶୟନ କାଳେ ସେ ସ୍ୱପନେ । ଦେଖେ ବିବିଧ ଅର୍ଥ ଯେହ୍ନେ ॥
ଶୟନେ ସ୍ୱପ୍ନ ଯେବେ ଦେଖେ । ଅସତ୍ୟ ସତ୍ୟ କରି ଲେଖେ ॥
ପୁଣି ସେ ନିଦ୍ରା ଅବସାନେ । ସକଳ ମିଥ୍ୟା କରି ମଣେ ॥୧୩,୧୪
ଏ ଘେନି ଲୋଭ ଭୟ କ୍ରୋଧ । ହରଷ ବିରସ ପ୍ରମାଦ ॥
ଏ ଆଦି ବିବିଧ ପ୍ରକାରେ । ସର୍ବ ସମ୍ଭବ ଅହଙ୍କାରେ ॥
ଜନମ ମୃତ୍ୟୁ ଆଦି ଯେତେ । ଆତ୍ମାର ନୋହେ କଦାଚିତେ ॥୧୫

ଦେହ ଇନ୍ଦ୍ରିୟ ମନ ପ୍ରାଣ । ଏଣେ ଯାହାର ଅଭିମାନ ॥
ସେ ଜୀବରୂପେ ସୂକ୍ଷ୍ମଦେହେ । ତ୍ରିଗୁଣେ ଜନ୍ମମୃତ୍ୟୁ ବହେ ॥
କାଳର ବଳେ ଏ ସଂସାରେ । ଭ୍ରମେ ତ୍ରିଗୁଣ ଅହଙ୍କାରେ ॥୧୬
ଏ ଅହଙ୍କାର ବନ୍ଧ କହି । ନିବୃତ୍ତି ମୁକତି ବୋଲାଇ ॥
ମୂଳ ଏହାର ଅପ୍ରକାଶ । ବିବିଧ ରୂପେ ହୋଏ ଦୃଶ୍ୟ ॥
ମନ ବଚନ ଦେହ ପ୍ରାଣେ । ପ୍ରକାଶ ହୋଏ ନାନା କର୍ମେ ॥
ଯେ ପାରେ ଗୁରୁ ଆଶ୍ରେ କରି । ଜ୍ଞାନ ଖଡ଼ଗ କରେ ଧରି ॥
ନିବୃତ୍ତ କରି ବୁଦ୍ଧି ମନ । ଛେଦଇ ସେ ଦୃଢ଼ ବନ୍ଧନ ॥
ତୃଷ୍ଣା ବର୍ଜିତ ନିର୍ବିକାରେ । ଆନନ୍ଦେ ଭ୍ରମଇ ସଂସାରେ ॥୧୭
ବେଦ ତପସ୍ୟା ପ୍ରତ୍ୟକ୍ଷରେ । ଗୁରୁବଚନ ତର୍କଦ୍ୱାରେ ॥
ବିଗ୍ରରି ଜାଣିବ ନିରୋଳେ । ଯେ ଥାଇ ଆଦିଅନ୍ତକାଳେ ॥
ଈଶ୍ୱର ସର୍ବହେତୁ ସେହି । ମଧ୍ୟେ ସେ ଜଗତ ବୋଲାଇ ॥
ଏଣେ ବିବେକ ଯାର ହୋଇ । ଜାଣିବ ଜ୍ଞାନୀ ସେ ଅଟଇ ॥୧୮
ସୁବର୍ଣ୍ଣେ ନାନା ଦ୍ରବ୍ୟ ଯେହ୍ନେ । ଧରଇ ନାନା ରୂପ ଭିନ୍ନେ ॥
ରୂପ ବିନାଶେ ସେ ସୁବର୍ଣ୍ଣ । ସେ ଭାବେ ଜଗତ ଅଭିନ୍ନ ॥
ମୋହର ତହୁଁ ସମ୍ଭବଇ । କାଳେ ପ୍ରବେଶ ମୋର ତହିଁ ॥୧୯
ଜାଗ୍ରତ ସ୍ୱପ୍ନ ସୁଷୁପ୍ତିରେ । କି ଅବା ସମାଧି ବିଧିରେ ॥
କାର୍ଯ୍ୟ କାରଣ କର୍ତ୍ତା ରୂପେ । ଜଗତ ମଧ୍ୟେ ଯେହ୍ନୁ ବ୍ୟାପେ ॥
ପରମବ୍ରହ୍ମ ସତ୍ୟ ସେହି । ଉଦ୍ଧବ ସାକ୍ଷୀରୂପେ ଥାଇ ॥୨୦
ଆଗେ ନ ଥିଲା ପଛେ ନାହିଁ । ମଧ୍ୟରେ ନାମମାତ୍ରେ ଥାଇ ॥
କର୍ତ୍ତା କାରଣୁଁ ସମ୍ଭବଇ । ଭିନ୍ନ ନାମରେ ପ୍ରକାଶଇ ॥
ଉଦ୍ଧବ ଅସତ୍ୟ ସେ ଜାଣ । କର୍ତ୍ତା କାରଣୁଁ ନୋହେ ଭିନ୍ନ ॥୨୧
ରାଜସ ବିକାର ଜଗତ । ସର୍ଜନା ଅଟେ ପଞ୍ଚଭୂତ ॥
ବ୍ରହ୍ମ ଅଟନ୍ତି ସ୍ୱୟଂଜ୍ୟୋତି । ଏଣୁ ସେ ନିଜେ ପ୍ରକାଶନ୍ତି ॥
ଇନ୍ଦ୍ରିୟ ଅର୍ଥ ଆତ୍ମା ମନ । ଏ ଆଦି ନୋହେ ବିଦ୍ୟମାନ ॥
ତଥାପି ବ୍ରହ୍ମମୟ ଏହି । ଯେଣୁ ପ୍ରକାଶ ତାର ହୋଇ ॥୨୨

ଏ ରୂପେ ବ୍ରହ୍ମ ବିବେକରେ । ଗୁରୁବଚନ ଧରି ଶିରେ ॥
ଜାଣିଣ ବ୍ରହ୍ମକୁ ସାକ୍ଷାତେ । ଇନ୍ଦ୍ରିୟ ଭୋଗ ଛାଡ଼ି ଚିତ୍ତେ ॥
ଦେହାତ୍ମଭାବ ପରିହରି । ବ୍ରହ୍ମ ଆନନ୍ଦେ ମୋଦ ଭରି ॥
ଆତ୍ମସନ୍ଦେହ ତେଜି ଦୂରେ । ଆନନ୍ଦେ ଭ୍ରମିବ ସଂସାରେ ॥୨୩
ଦେହ ଇନ୍ଦ୍ରିୟ ଦେବ[୧] ପ୍ରାଣ । ପବନ ଜଳ ହୁତାଶନ ॥
କ୍ଷିତି ଗଗନ ଅହଂକୃତି । ବୁଦ୍ଧି ମନ ମାତ୍ରା ପ୍ରକୃତି ॥
ଏ କେହି ଆତ୍ମା ନୋହେ ଜାଣ । ଅନ୍ନବିକାର ଏ ପ୍ରମାଣ ॥
ଏଣେ ବିବେକ ଅଟେ ଯାର । ସେ ପ୍ରାଣୀ ଜ୍ଞାନବନ୍ତ ନର ॥୨୪
ମୋର ସ୍ୱରୂପ ହୃଦେ ଯାର । ପ୍ରକାଶ ହୋଏ ନିରନ୍ତର ॥
ତାହାର ଇନ୍ଦ୍ରିୟ ସକଳେ । ଆୟତ୍ତ ହେଲେ ବା ନ ହେଲେ ॥
ତହିଁରେ ତାର ଗୁଣଦୋଷ । କି ଅବା ହୋଇବ ପ୍ରକାଶ ॥
ମେଘ ଢାଙ୍କଇ କିବା ନାହିଁ । ରବିର ହାନି ଲାଭ କାହିଁ ॥୨୫
ଆକାଶେ ଯେହ୍ନେ ଅଗ୍ନି ଜଳେ । ପବନ ସେ ଆକାଶେ ଚଳେ ॥
ଧୂଳିରେ ଧୂସର ଦିଶଇ । କି ଅବା ଜଳ ବରଷଇ ॥
କି ଅବା ଷଡ଼ଋତୁ ଗୁଣ । ଉଷ୍ଣ ଶୀତଳ ଆଦି ପୁଣ ॥
ଆକାଶେ ଗତାଗତ ହୋନ୍ତି । ଯେହ୍ନେ ଆକାଶେ ନ ଲାଗନ୍ତି ॥
ତେହ୍ନେ ତ୍ରିଗୁଣ ଅହଙ୍କାର । ଯେବା ସଂସାର ବ୍ୟବହାର ॥
ଏଣେ ମୋହର ସଙ୍ଗ ନାହିଁ । ଅକ୍ଷୟ ପରଂବ୍ରହ୍ମ ମୁହିଁ ॥୨୬
ତଥାପି ଯାବତ ମୋଠାରେ । ସୁଦୃଢ଼ ଭକ୍ତିଯୋଗ ବଳେ ॥
ରାଜସ ରୂପ ମନ ମଳ । ନିବୃତ୍ତ ନୁହନ୍ତି ସକଳ ॥
ତାବତ ମାୟାଗୁଣ ସଙ୍ଗ । ବିଷୟ କର ପରିତ୍ୟାଗ ॥୨୭
ଯେସନେ ଦେହେ ବ୍ୟାଧିଶେଷେ[୨] । ଅପଥ୍ୟେ ବଢ଼ଇ ବିଶେଷେ ॥
ତେସନେ ବିଷୟର ସଙ୍ଗ । କୁଯୋଗୀ ଯୋଗ କରେ ଭଙ୍ଗ ॥୨୮

---

୧. ଦେବ—ଇନ୍ଦ୍ରିୟଙ୍କ ଅଧିଷ୍ଠାତୃ ଦେବତା । ୨. ବ୍ୟାଧିଶେଷ—ସମୂଳେ ନାଶ ହୋଇ ନ ଥିବା ରୋଗ ।

ଯେ ଯୋଗୀ ଯୋଗମାର୍ଗେ ଥାନ୍ତି । ଦେବେ ତାହାଙ୍କୁ ବିଘ୍ନ ଚିନ୍ତି ॥
କପଟେ ମନୁଷ୍ୟ ରୂପରେ । ତାହାଙ୍କୁ ଯୋଗଭ୍ରଷ୍ଟ କରେ ॥
ସେ ପୁଣି ପାଇ ଦେହାନ୍ତର । ପ୍ରାକ୍ତନ ବଳେ ବାରମ୍ବାର ॥
ଯୋଗ ଅଭ୍ୟାସେ ହୋଇ ରତ । ନୁହନ୍ତି କେବେ କର୍ମତନ୍ତ୍ର ॥୨୯
କର୍ମର ବଳେ ଜନ୍ମ ମୃତ୍ୟୁ । କର୍ମେ ସଂସାରେ ପଡ଼େ ଜନ୍ତୁ ॥
ଯେବେ ତା ଜ୍ଞାନ ଉଦେ ହୋଇ । ପୁଣି ସଂସାରେ ନ ପଡ଼ଇ ॥
ଛାଡ଼ଇ ଦେହାଦିର ଧର୍ମ । ଅଖଣ୍ଡ ସୁଖରେ ନିମଗ୍ନ ॥୩୦
ଆସନ ଶୟନ ଗମନ । ମଳମୂତ୍ରାଦି ବିସର୍ଜନ ॥
ଦର୍ଶନ ସ୍ପର୍ଶନ ଭୋଜନ । ଏ ଦେହ ସ୍ୱାଭାବିକ ଧର୍ମ ॥
ଏଣେ ତା ଦୃଷ୍ଟିହିଁ ନ ଥାଇ । ଆତ୍ମା ପ୍ରକାଶ ଯାର ହୋଇ ॥୩୧
ଅସତ୍ୟ ଇନ୍ଦ୍ରିୟଙ୍କ ଅର୍ଥ । ଯେବେ ହୁଅଇ ଚିତ୍ତେ ଜାତ ॥
ସ୍ୱପନେ ନାନାକାର ଯେହ୍ନେ । ଛାଡ଼ଇ ଅନୁମାନେ ତେହ୍ନେ ॥
ଆତ୍ମା ବାହାରେ ଆନ ସତ୍ୟ । ନ ମଣେ ଯେ ଜନ ପଣ୍ଡିତ ॥୩୨
ଆତ୍ମାର ବନ୍ଧନ ମୁକତି । ଅଜ୍ଞାନ ବଳରୁ ପ୍ରତୀତି ॥
ଅଜ୍ଞାନ ନିବର୍ତ୍ତିଲେ ଜ୍ଞାନେ । ଆତ୍ମାକୁ ନିର୍ବିକାର ଜାଣେ ॥୩୩
ସୂର୍ଯ୍ୟ ଉଦୟେ ତମ ନାଶେ । ଜଗତ ସ୍ୱରୂପେ ପ୍ରକାଶେ ॥
ନ ଥାଏ କିଛି ତା ବିକାର । କେବଳ ପ୍ରକାଶ ମାତର ॥
ତେସନେ ମୋର କୃପାଦୃଷ୍ଟି । ଖଣ୍ଡଇ ସକଳ ଅରିଷ୍ଟି ॥
ଅଜ୍ଞାନ ତମ ଯାଏ ଦୂର । ଦିଶଇ ଆତ୍ମା ନିର୍ବିକାର ॥୩୪
ଏ ଆତ୍ମା ସ୍ୱୟଂ ଜ୍ୟୋତିମନ୍ତ । ଅଜ ଅପ୍ରମେୟ ଅନନ୍ତ ॥
ଦେଶକାଳ ଅପରିଚ୍ଛିନ୍ନ[୧] । ନାହିଁ ଯା କ୍ଷୟବୃଦ୍ଧିମାନ ॥
ଏକ ଦ୍ୱିତୀୟ ନାହିଁ ଯାର । ମନ ବଚନେ ଅଗୋଚର ॥
ତାର ସ୍ପନ୍ଦନେ ବାକ୍ୟ ପ୍ରାଣ । ସଂସାରେ ସଞ୍ଚରନ୍ତି ଜନ ॥୩୫
ଯେ ଏକଆତ୍ମା ବ୍ରହ୍ମରୂପ । ତା ଠାରେ କରନ୍ତି ବିକଳ୍ପ ॥

୧. ଅପରିଚ୍ଛିନ୍ନ—ସୀମାବଦ୍ଧ ନୁହେଁ ।

ଯେତେ ଏ ବିକଳ୍ପ ସଞ୍ଚାର । ଆତ୍ମା ଆଶ୍ରୟ ଏହାଙ୍କର ॥
ରଜତ ଭ୍ରମ ପ୍ରାଣୀ ମନେ । କାହୁଁ ହୋଇବ ଶୁକ୍ତି[୧] ବିନେ ॥
ଏଣୁ ଏ ଆତ୍ମା ସତ୍ୟଧାମ । ବିକଳ୍ପ ମନର ଯେ ଭ୍ରମ ॥୩୬
ନାମ ରୂପ ଯେ ପଞ୍ଚଭୂତ । ଏଣେ ଯେ ଶରୀର ନିର୍ମିତ ॥
ତାହାକୁ ସତ୍ୟ ମନେକରି । ବେଦାନ୍ତ ତତ୍ତ୍ୱ ନ ବିଗ୍ଚାରି ॥
ପଣ୍ଡିତପଣେ ଅହଙ୍କାରେ । ବିଅର୍ଥେ ଅର୍ଥବାଦ କରେ ॥୩୭
ଅପକ୍ୱଯୋଗ ଯୋଗୀଙ୍କର । ଯେ ବିଘ୍ନ ଶରୀରୁ ବାହାର ॥
ସେ ବିଘ୍ନ ଯେଣେ ନାଶ ଯାଇ । ସେ ବିଧି ଶୁଣ ମୁଁ କହଇ ॥୩୮
ଶୀତ ତପତି ଦେହକ୍ଳେଶ । ଯେ ଅବା ବାତ ଆଦି ଦୋଷ ॥
ନାଶିବ ଯୋଗ ଧାରଣାରେ । ଯେ ପ୍ରାଣାୟାମ ଆସନରେ ॥
ତପରେ ତାପ ମନ୍ତ୍ରେ ଗ୍ରହ । ଔଷଧେ ସର୍ପ ଆଦି ଭୟ ॥
ଏମନ୍ତେ ବିଘ୍ନକୁ ନିବାରି । ଯୋଗ ସାଧିବ ଯତ୍ନ କରି ॥୩୯
ମୋ ଧ୍ୟାନ ନାମ ସଂକୀର୍ତ୍ତନେ । ନାଶିବ କାମ ଆଦି ବିଘ୍ନେ ॥
ଭକ୍ତ ଯୋଗୀଙ୍କ ସେବାଭାବେ । ନାଶିବ ମାନ ମଦ ଦମ୍ଭେ ॥୪୦
କେ ଅବା ଏ ସବୁ ଉପାୟେ । ଦୃଢ଼ କରିଣ ଯୁବା ଦେହେ ॥
ପରକାୟ ପ୍ରବେଶ ଆଦି । ଯୋଗେ ସାଧନ୍ତି ସବୁ ସିଦ୍ଧି ॥୪୧
ଫଳର ପ୍ରାୟେ ଏ ଶରୀର । ବୃକ୍ଷର ପ୍ରାୟେ ଆତ୍ମା ଚିର ॥
ଏଣୁ ପଣ୍ଡିତମାନଙ୍କର । ଦେହରେ ନ ଥାଇ ଆଦର ॥୪୨
ଦେହର ବିଘ୍ନନାଶ ଅର୍ଥେ । କେ ଅବା ସାଧଇ ନିରତେ ॥
ଯେ ଅବା ବୁଦ୍ଧିମନ୍ତ ଜନେ । ନ କରି ଶ୍ରଦ୍ଧା ଦେହଧର୍ମେ ॥
ଏ ଯୋଗେ ନ ବଢ଼ାଇ ଚିତ୍ତ । ଶରଣ ମୋର ପାଦଗତ ॥୪୩
ମୋର ଆଶ୍ରୟ ହୋଇ ଯୋଗୀ । ଯୋଗସାଧନେ ଯେବେ ଲାଗି ॥
ବିଘ୍ନ ତାହାକୁ ନ ଲାଗଇ । ପରମ ଆନନ୍ଦେ ରମଇ ॥୪୪
ଏରୂପେ ଜ୍ଞାନଯୋଗ ହରି । ଉଦ୍ଧବେ କହିଲେ ବିସ୍ତାରି ॥

୧. ଶୁକ୍ତି—ଶାମୁକା ।

ଚିତ୍ତେ ତା ଯେତେ ଅହଙ୍କାର । ଗୋବିନ୍ଦ କଲେ ସର୍ବ ଦୂର ॥
ପରମ ଜ୍ଞାନ ଉପଦେଶେ । ଗୋବିନ୍ଦ କହିଲେ ବିଶ୍ୱାସେ ॥
ସଂସାରଭାବ ଭାବଗ୍ରାହୀ । ଅଜ୍ଞାନ କଳ୍ପିତ ବୁଝାଇ ॥
ଉଦ୍ଧବ ଚିତ୍ତେ ମୋହପାଶି । ଜ୍ଞାନ ଖଡ଼ଗେ ତାହା ନାଶି ॥
ଜ୍ଞାନ ବୁଝାଇ ଭାବବଶେ । ଭକତିଯୋଗ କହି ଶେଷେ ॥
କୃଷ୍ଣଚରିତ ଭାଗବତ । କହଇ ଦାସ ଜଗନ୍ନାଥ ॥

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଏକାଦଶସ୍କନ୍ଧେ ଶ୍ରୀକୃଷ୍ଣୋଦ୍ଧବସଂବାଦେ ସଂକ୍ଷିପ୍ତଜ୍ଞାନଯୋଗକଥନଂ ନାମ ଊନତ୍ରିଂଶୋଽଧ୍ୟାୟଃ ।

❐❐❐

# ତ୍ରିଂଶ ଅଧ୍ୟାୟ*

ତ୍ରିଂଶେ ଭକତିଯୋଗ ପୁଣ । ସଂକ୍ଷେପେ ହୋଇଛି ବର୍ଣ୍ଣନ ॥

ଯୋଗସାଧନ ତତ୍ତ୍ୱବାଣୀ । ଉଦ୍ଧବ କୃଷ୍ଣମୁଖୁଁ ଶୁଣି ॥
ସଂଶୟମନେ ଭୟ କରି । ବୋଲେ ଗୋବିନ୍ଦ ପାଦ ଧରି ॥(ଜ.)

ଉଦ୍ଧବ ଉବାଚ

ଭୋ ନାଥ ପ୍ରଭୁ ଦାମୋଦର । ଶୁଣିଲି ଯୋଗର ବିସ୍ତର ॥
କ୍ଷଣଭଙ୍ଗୁର ଦେହ ଧରି । କେ ଅବା ପାରେ ସାଧ୍ୟ କରି ॥
ସୁଖେ ଅଳପେ ସାଧ୍ୟ କରି । ତୋ ମାୟା କେମନ୍ତେ ନିସ୍ତରି ॥
ଅନେକ ଜନ୍ମେ ଯୋଗୀ ନରେ । ଯୋଗ ସାଧନ୍ତି ଏ ସଂସାରେ ॥
ଧ୍ୟାନ ଧାରଣା ଦୃଢ଼ାସନେ । ସଂଯମି ଚିତ୍ତ ସାବଧାନେ ॥ ୧
ସେ ଯୋଗ ସାଧି ଏ ସଂସାରେ । କେ ଅବା ପାରେ କେ ନ ପାରେ ॥
ଏଣୁ ସଂସାରେ କେବା ଜନ । ସାଧିବ ଯୋଗେ ତତ୍ତ୍ୱଜ୍ଞାନ ॥
ଉପାୟ କହ ନାଥ ମୋତେ । ଏ ଜୀବ ନିସ୍ତରେ କେମନ୍ତେ ॥ ୨

* ମୂଳ ସଂସ୍କୃତ ଅନୁସାରେ ଊନତ୍ରିଂଶ ଅଧ୍ୟାୟ ।

ପଦ୍ମନୟନ ବିଶ୍ୱେଶ୍ୱର । ତୁ ନାଥ ଯଦୁବୀରବର ॥
ତୋହର ଅଭୟ ପୟର । ବ୍ରହ୍ମ ଆନନ୍ଦ ସୁଖଘର ॥
ସେ ପାଦପଦ୍ମ ଆଶ୍ରେ କଲେ । ଜୀବ ସଂସାରୁ ତରେ ଭଲେ ॥
ସାର ଅସାର ବିଗ୍ରହଣେ । ଭଜି ତୋ ପାଦ ବୁଧଗଣେ ॥
ଭକତିଯୋଗ ସାଧ୍ୟ କରି । ଭବୁଁ ଭକତେ ଯାନ୍ତି ତରି ॥
ଯୋଗୀଏ ଯୋଗମାର୍ଗେ ଭ୍ରମି । ଫୁଟି ହୁଅନ୍ତି ପଥଶ୍ରମୀ ॥ ୩
ତୋହର ଚିତ୍ରଗତି ମାୟା । କେ ଜାଣିପାରେ ପ୍ରଭୁ ତାହା ॥
ଭୋ ନାଥ କୃପାରୁ ତୋହର । ଭକତ ସଙ୍କଟୁ ଉଦ୍ଧାର ॥
ଅନ୍ୟ ଶରଣ ନାହିଁ ଯାର । ତୋତେ ଯେ ଭଜେ ନିରନ୍ତର ॥
ତୁ ନାଥ ହେଉ ତାର ବଶ । ଦଣ୍ଡେ ନ ଛାଡୁ ତାର ପାଶ ॥
ଏ କଥା ଅଦ୍ଭୁତ କି ତୋତେ । ତୁ ଯେ ଭକତଜନ ହିତେ ॥
ବାନର ଭାଲୁଙ୍କର ମେଳେ । ତୋ ଅବତାର ମହୀତଳେ ॥
ରାମ ସ୍ୱରୂପେ ନିଜ ଅଂଶେ । ତୋହର ଜନ୍ମ ରଘୁବଂଶେ ॥
ସୁରେନ୍ଦ୍ର କିରୀଟ ଅଗ୍ରତ । ତୋ ପାଦରେଣୁରେ ଭୂଷିତ ॥ ୪
ତୁ ନାଥ ଜଗତ ଜୀବନ । ଦରିଦ୍ର ପ୍ରାଣୀଙ୍କର ଧନ ॥
ଅଶେଷ ଭୁବନ କାରଣ । ତୁ ନାଥ ଜଗତ ଧାରଣ ॥
ତୁ ନାଥ ଭୂତତତ୍ତ୍ୱଜ୍ଞାତା । ଅଶେଷ କର୍ମଫଳଦାତା ॥
ତୁ ପିତାମାତା ଦାଶରଥି । ଅଶେଷ ଜଗତର ପତି ॥
ତୋ ପାଦସେବା ପରିହରି । କେ ପାରେ ଭବସିନ୍ଧୁ ତରି ॥
ଯେ ତୋର ମହିମା ନ ଜାଣି । ଅନ୍ୟ ଦେବତା ପୂଜେ ଆଣି ॥
ତପ ସମାଧି ଯୋଗବନ୍ଧେ । କି ଅବା ଧର୍ମ ମୋକ୍ଷ ସାଧେ ॥
କେବଳ ଅଚେତନ ସେହି । ତାହାର କର୍ମସିଦ୍ଧି କାହିଁ ॥
ମାୟା ମୋହିତ ରଜ ତମେ । ବିଧାତା ରହେ ତାର ବାମେ ॥
ଯେ ଭକ୍ତିମତେ ଭଜେ ତୋତେ । ତୁ ଥାଉ ତାହାର ଅଗ୍ରତେ ॥
କରୁ ତାହାର ଉପକାର । ଏଣୁ ଭକତେ ତୋ କିଙ୍କର ॥

ଏ ଭାବେ ବ୍ରହ୍ମଜ୍ଞାନୀ ଜନେ । ତୋ ନାମ ଉଚ୍ଚାରି ବଦନେ ॥
ରୋମ ହରଷେ ତୋତେ ଚିନ୍ତି । ଆନନ୍ଦ ସାଗରେ ଭାସନ୍ତି ॥
ତୋ ଗୁଣ ଖୋଜି କେ ପାରଇ । ବ୍ରହ୍ମା ଆୟୁଷେ ଦେହ ପାଇ ॥
ତୋ ପାଦପଦ୍ମ ସୁଧା ଆଶେ । ଭକତ ବନ୍ଧା ପ୍ରେମପାଶେ ॥
ଭୋ ନାଥ ତୋର ଅବତାର । ଅଶେଷ ପ୍ରାଣୀଙ୍କ ଉଦ୍ଧାର ॥
ଏ ଘୋର ମାୟାମୋହ କଳ୍ପେ । ଜୀବ ଉଦ୍ଧାରୁ ଗୁରୁରୂପେ ॥
ଏ ଦେହ ମନ ଅହଙ୍କାର । ଯାବତ ଇନ୍ଦ୍ରିୟ ସଞ୍ଚାର ॥
ତୁ ଅନ୍ତର୍ଯାମୀ ରୂପ ଧରି । ଦୁରିତ ଖଣ୍ଡୁ ନରହରି ॥
ଏଣୁ ତୁ ଜଗତକାରଣ । ଅଶେଷ ଜନ ତୋ ଶରଣ ॥୫,୬

*ଶ୍ରୀ ଶୁକ ଉବାଚ*

ଏମନ୍ତ ଉଦ୍ଧବର ବାଣୀ । ଶୁଣି ସନ୍ତୋଷ ଚକ୍ରପାଣି ॥
ତ୍ରିମୂର୍ତ୍ତିଧାରୀ ଯେ ଈଶ୍ୱର । ଜଗତ ଯାର ଖେଳଘର ॥
ବିମ୍ବ ଅଧରେ ମନ୍ଦେ ହସି । ଉଦ୍ଧବେ କହନ୍ତି ଆଶ୍ୱାସି ॥ ୭

*ଶ୍ରୀ ଭଗବାନୁବାଚ*

ଶୁଣ ଉଦ୍ଧବ ସାଧୁ ଧୀର । ଯେ ଧର୍ମ ପରମ ମଙ୍ଗଳ ॥
ଯେ ଧର୍ମ ଆଚରିଣ ନର । ହେଲେ ଖଣ୍ଡଇ ମୃତ୍ୟୁକାଳ ॥ ୮
ମୋହର ଅର୍ଥେ କର୍ମ କର । ସର୍ବ ଆରମ୍ଭ ଛାଡ଼ି ସ୍ମର ॥
ନିର୍ମଳ କରି ବୁଦ୍ଧି ମନ । ମୋର ଚରଣ କର ଧ୍ୟାନ ॥
ପୀରତି କରି ଶୁଦ୍ଧଚିତ୍ତେ । କର୍ମ ତୁ କର ମୋର ଅର୍ଥେ ॥ ୯
ପବିତ୍ର ଭୂମି ପୁଣ୍ୟଦେଶେ । ମୋର ଭକତଜନ ପାଶେ ॥
ମୋର ଭକତ ବସେ ଯହିଁ । ସକଳତୀର୍ଥ ଥାନ୍ତି ତହିଁ ॥
ଯେ ଧର୍ମ କରେ ମୋ ଭକତ । ଉଦ୍ଧବ କର ସେହି ମତ ॥୧୦
ମୋ ଯାତ୍ରା ପର୍ବ ମହୋତ୍ସବ । ଆନନ୍ଦେ କର ହେ ଉଦ୍ଧବ ॥
ନାମକୀର୍ତ୍ତନ ନୃତ୍ୟଗୀତେ । ମଙ୍ଗଳ କର ଅନୁବ୍ରତେ ॥

ମୋର ମଙ୍ଗଳେ ସର୍ବସିଦ୍ଧି । ଯେ ମୋର ମହୋତ୍ସବ ବିଧି ॥
ସକଳ କର୍ମଫଳ ତେଜ । ସର୍ବ ସମ୍ପୂର୍ଣ୍ଣେ ମୋତେ ଭଜ ॥୧୧
ସକଳ ଭୂତେ ବାସ ମୋର । ମୁଁ ସର୍ବ ଅନ୍ତର ବାହାର ॥
ଉଦ୍ଧବ ମୋତେ ଦେଖ ଧ୍ୟାନେ । ମୋ ବିନେ କିଛି ନାହିଁ ଅନ୍ୟେ ॥
ମୁଁ ନିରାଲମ୍ବ ନିରାଧାରେ । ବସଇ ସକଳ ଶରୀରେ ॥
ସ୍ୱଭାବେ ମୁହିଁ ବିଶ୍ୱରୂପୀ । ଦେଖ ଗଗନ ଯେହ୍ନେ ବ୍ୟାପୀ ॥୧୨
ଏଣୁ ମୁଁ ସର୍ବଭୂତେ ଥାଇ । ପର ଅପର ମୋର ନାହିଁ ॥
ଏ ଘେନି ସକଳ ସମାନେ । ଦେଖ ତୁ ପ୍ରେମ ତତ୍ତ୍ୱଜ୍ଞାନେ ॥୧୩
ବ୍ରାହ୍ମଣ କ୍ଷତ୍ରି ବୈଶ୍ୟ ଶୂଦ୍ର । ପତିତ ଚଣ୍ଡାଳ ବା କ୍ଷୁଦ୍ର ॥
ସର୍ବ ସମାନ ଦେଖ ଚିତ୍ତେ । ଶୁଣ ହୋ କହିବା ଦୃଷ୍ଟାନ୍ତେ ॥
ଅନଳ କଣା ବଡ଼ ସାନ । ଅନଳୁ ନୁହଇ ସେ ଭିନ୍ନ ॥
ରବି ଶଶାଙ୍କ ରଶ୍ମି ଯେତେ । ପ୍ରକାଶ ହୋନ୍ତି ଦିବାରାତ୍ରେ ॥
ବିପ୍ରରେ ଚନ୍ଦ୍ର ସୂର୍ଯ୍ୟ ସେହି । ଏମନ୍ତେ ସର୍ବଭୂତେ ମୁହିଁ ॥
କ୍ରୂର ଅକ୍ରୂର ଯେତେ ଜନ । ତାହାଙ୍କୁ ଦେଖିବ ସମାନ ॥
ଏମନ୍ତ ହୋଇ ଯାର ଚିତ୍ତ । ତାହାକୁ ବୋଲିଣ ପଣ୍ଡିତ ॥୧୪
ମୁହିଁ ବସଇ ସର୍ବଭୂତେ । ଏମନ୍ତେ ଦେଖିବ ନିରତେ ॥
ମଦ ମାତ୍ସର୍ଯ୍ୟ ଅହଙ୍କାର । କ୍ରମେ ସକଳ ହୋନ୍ତି ଦୂର ॥୧୫
ଶ୍ୱାନ ଚ୍ଣ୍ଡାଳ କୃମି ଖର । ଗୋ ଅଶ୍ୱ ବାନର ଶୂକର ॥
ଏ ଆଦି ପ୍ରାଣୀ ସାନବଡ଼େ । ଯେ ଆସି ମିଳିବ ନିଆଡ଼େ[୧] ॥
ଦେଖି କପାଳେ କର ଦେଇ । ଭୂମିରେ ଦଣ୍ଡପ୍ରାୟ ଶୋଇ ॥
ଦୂରେ ନିବେଶି ଲଜ୍ଜାମାନ । ଚରଣେ କରିବ ପ୍ରଣାମ ॥
ତାହାଙ୍କ ଗୁଣ ଦୋଷ ଯେତେ । ମନେ ନ ଧରି କଦାଚିତେ ॥
ଈଶ୍ୱର ବସେ ସର୍ବଦେହେ । ଏ ଘେନି ନମିବ ନିର୍ଭୟେ* ॥୧୬

୧. ନିଆଡ଼େ—ସମ୍ମୁଖରେ ।

* ଶ୍ଳୋକାଙ୍କ ୧୪, ୧୫ ଓ ୧୬ ମଧ୍ୟରେ ବର୍ଣ୍ଣିତ ବିଷୟବସ୍ତୁକୁ ଆଧାର କରି କେହି କେହି ସମସ୍ତଙ୍କ ସହ ସମାନ ବ୍ୟବହାର କରିବାକୁ

**ସମସ୍ତ ଭୂତେ ମୋର ଭାବ । ଯାବତ ନୋହିଛି ସମ୍ଭବ ॥**
**ତାବତ ଉପାସନା ମୋର । ମନ ବଚନ କାୟେ କର ॥**୧୭
**ଏରୂପେ ଉପାସନ୍ତେ ମୋତେ । ଈଶ୍ୱର ଦେଖି ସର୍ବଭୂତେ ॥**
**ଆତ୍ମା ସାକ୍ଷାତ ହୁଏ ଯେବେ । ଛାଡ଼ିବ ସର୍ବକାମ ତେବେ ॥**୧୮
**ଏରୂପେ କରନ୍ତେ ବିଗ୍ରହ । ଛାଡ଼ଇ ଭେଦ ତୋର ମୋର ॥**
**କାୟରେ ମନ ବଚନରେ । ମୋ ଭାବ ସର୍ବଭୂତେ କରେ ॥**

---

ଉପଦେଶ ଦିଆଯାଇଛି ବୋଲି କହିଥାନ୍ତି। ବସ୍ତୁତଃ ଏଠାରେ ସମସ୍ତଙ୍କ ମଧ୍ୟରେ ଈଶ୍ୱରଙ୍କ ସତ୍ତା ଦର୍ଶନ କରିବାକୁ ନିର୍ଦ୍ଦେଶ ଅଛି, ସମସ୍ତଙ୍କ ସହ ସମ ବ୍ୟବହାର କରିବାକୁ ନୁହେଁ। ଶ୍ରୀମଦ୍‌ଭଗବଦ୍‌ଗୀତାରେ ମଧ୍ୟ ଏ କଥା ସ୍ପଷ୍ଟ ଉଲ୍ଲେଖ ଅଛି—**‘ବିଦ୍ୟାବିନୟସମ୍ପନ୍ନେ ବ୍ରାହ୍ମଣେ ଗବି ହସ୍ତିନି । ଶୁନି ଚୈବ ଶ୍ୱପାକେ ଚ ପଣ୍ଡିତାଃ ସମଦର୍ଶିନଃ ॥’** (୫ । ୧୮)। ସୁତରାଂ ଆବ୍ରାହ୍ମଣ ଚଣ୍ଡାଳ, ନୀଚ୍ଚାତିନୀଚ ପଶୁ, ଏପରି କି ସ୍ଥାବର-ଜଙ୍ଗମ ସମସ୍ତଙ୍କ ଠାରେ ଏକମାତ୍ର ଭଗବାନଙ୍କ ଅସ୍ତିତ୍ୱ ଅନୁଭବ କରି ସେମାନଙ୍କ ଅହିତ ହେବା ଭଳି କୌଣସି କାର୍ଯ୍ୟ ନ କରିବା ଉଚିତ। କିନ୍ତୁ ଏହାର ଅର୍ଥ ନୁହେଁ ଯେ ମନୁଷ୍ୟ ଜାତି-ଧର୍ମ ନିର୍ବିଶେଷରେ ସମସ୍ତଙ୍କ ସହ ଭୋଜନ, ବିବାହ ଆଦି କରିବ, ଶ୍ୱାନ-ଶୂକର ପ୍ରଭୃତଙ୍କ ସହ ନିବିଡ଼ ଅଙ୍ଗସ୍ପର୍ଶ କରିବ ଏବଂ କ୍ରୂର ବା ଦୁଷ୍ଟ ଲୋକଙ୍କ ସାନ୍ନିଧ୍ୟରେ ରହିବ। ଭଗବାନ ସମସ୍ତ ପ୍ରାଣୀଙ୍କୁ ଭିନ୍ନ ଭିନ୍ନ ଗୁଣ, ସ୍ୱଭାବ, ଆକୃତି, ରୂପ, ରଙ୍ଗ ପ୍ରଦାନ କରି ସୃଷ୍ଟି ସଂଚାଳନର ଯେଉଁ ଅନିବାର୍ଯ୍ୟ ମର୍ଯ୍ୟାଦା ପ୍ରତିଷ୍ଠା କରିଛନ୍ତି, ତାହାକୁ ରକ୍ଷା କରିବା ସହିତ ତତ୍ ତତ୍ ପ୍ରାଣୀ ଓ ପଦାର୍ଥ ସଙ୍ଗେ ତଦନୁରୂପ ବ୍ୟବହାର କରିବା ହିଁ ସମତା। ସମସ୍ତଙ୍କ ସହ ସମ ବ୍ୟବହାର କରିବା ଅସମ୍ଭବ ମଧ୍ୟ। ଘୋଡ଼ା ପିଠିରେ ବସି ହୁଏ, କୁକୁର ବା ଘୁଷୁରି ପିଠିରେ ବସି ହୁଏ ନାହିଁ; ନାରୀ ସନ୍ତାନ ପ୍ରସବ କରିପାରେ, ପୁରୁଷ କରିପାରେ ନାହିଁ; ଗାଈର କ୍ଷୀର ପିଆଯାଏ, କୁକୁରୀର ନୁହେଁ। ଅତଏବ ବିଭିନ୍ନତାର ବୈଚିତ୍ର୍ୟପୂର୍ଣ୍ଣ ସୃଷ୍ଟିରେ ଏକମାତ୍ର ଅଭିନ୍ନ ପରମାତ୍ମାଙ୍କୁ ସର୍ବତ୍ର ଦର୍ଶନ କରି, ଭଗବାନଙ୍କୁ ତାଙ୍କ ନାନାବିଧ ସ୍ୱରୂପରେ ଅନୁରୂପ ବ୍ୟବହାର ମାଧ୍ୟମରେ ପୂଜା କରିବା ଆବଶ୍ୟକ।

ଏହି ସେ ସର୍ବଧର୍ମ ସାର । ଏ ବାକ୍ୟ ସମ୍ମତ ମୋହର ॥
ଉତ୍ତମ ଗତି ଏ ବୋଲାଇ । ଏ ମାର୍ଗେ ଗମି ମୋତେ ପାଇ ॥୧୯
ଏ ଧର୍ମ ଅନୁଭବ ମାତ୍ରେ । ବିଗୁଣ[1] ନୋହେ ତିଳମାତ୍ରେ ॥
କେବଳ କର୍ମଫଳ ତ୍ୟାଗେ । ରମିବ ମୋର ଅନୁରାଗେ ॥
ଏ ଧର୍ମ ପରମ ମଙ୍ଗଳ । କେବେହେଁ ନାଶ ନାହିଁ ତାର ॥
ମୁହିଁ ଏ ଧର୍ମ ଆଶ୍ରେ କରି । ସଂସାର ମଧ୍ୟେ ଅବତରି ॥୨୦
ଶୁଣ ଉଦ୍ଧବ ସାଧୁ ଧୀର । ଏ ଧର୍ମ ଆଚର ମୋହର ॥
ଏ ଧର୍ମ ନ ଜାଣି ଯେ ନର । କରଇ ଲୋକ-ବ୍ୟବହାର ॥
ସେ ବ୍ୟର୍ଥ କର୍ମେ କ୍ଲେଶ ପାଇ । ତା ଯେବେ ମୋତେ ସମର୍ପିଇ ॥
ସେ ନର ଭବସିନ୍ଧୁ ତରେ । ନ ପଡ଼େ ଘୋର ଅନ୍ଧକାରେ ॥୨୧
ଏ ଧର୍ମମାର୍ଗେ ବୁଧଜନ । ତରିଲେ ସଂସାର ଗହନ ॥
ଏଣୁ ଅସତ୍ୟମର୍ତ୍ତ୍ୟ ଦେହେ । ଯେ ସତ୍ୟ ସାଧନ୍ତି ଉପାୟେ ॥
କେବଳ ଲଭନ୍ତି ସେ ମୋତେ । ଶୁଣ ଉଦ୍ଧବ କହୁଁ ତୋତେ ॥୨୨
ଏ ଧର୍ମ ସର୍ବ ବେଦସାର । ମୁନିଜନଙ୍କୁ ଅଗୋଚର ॥
ଉଦ୍ଧବ କହିଲି ମୁଁ ସତ୍ୟ । ଏ ସେ ପରମଜ୍ଞାନ ତତ୍ତ୍ୱ ॥
ଏଣେ ହୋ ଭବସିନ୍ଧୁ ତରି । ଯେବେ ତୁ ପାରୁ ଦୃଢ଼େ ଧରି ॥
ଏହା ଯେ ଶ୍ରବଣେ ଶୁଣନ୍ତି । ସେ ମୋହ ଜଡ଼େ ନ ପଡ଼ନ୍ତି ॥୨୩
ଅଶେଷ ପାପ କରିଥିଲେ । ତରନ୍ତି ସଂସାରୁ ସେ ଭଲେ ॥
ଦୁଷ୍ଟ ପତିତ ଦୁରାଗ୍ରହ । ସେ ପୁଣି ଭବୁ ହୋନ୍ତି ପାର ॥
ଏ ଧର୍ମ ବ୍ରହ୍ମ ନିରୂପଣ । ଶୁଦ୍ଧ ଗୁପତ ସନାତନ ॥
ଏ ଧର୍ମ ସାଧ୍ୟ ଥାଉ ଦୂରେ । ଯେ ପ୍ରାଣୀ ଶୁଣି ଶ୍ରଦ୍ଧା କରେ ॥
ସକଳ ପାପୁଁ ସେ ତରଇ । ଅନ୍ତେ ପରମ ଗତି ପାଇ ॥୨୪
ଏ ଧର୍ମ ପରମ ଆଖ୍ୟାନ । ଯେ ମୋର ଭକ୍ତେ କରେ ଦାନ ॥
ଯେବା କରଇ ଉପଦେଶ । ଲଭଇ ଧର୍ମ ପୁଣ୍ୟ ଯଶ ॥

୧. ବିଗୁଣ—ନଷ୍ଟ ।

ମୁଁ ତାକୁ ଦେଇ ଆତ୍ମାପଦ । ଯେଣେ ସେ ନିସ୍ତରେ ପ୍ରମାଦ ॥
ଭକତେ କହେ ଯେ ବିସ୍ତାରି । ସେ ବ୍ରହ୍ମପଦେ ଅଧିକାରୀ ॥୨୫
ପରମ ପବିତ୍ର ଏ ବାଣୀ । ସଂସାରୁ ତର ଏହା ଶୁଣି ॥
ଏହା ଯେ ପଢ଼ନ୍ତି ଶୁଣନ୍ତି । ପଣ୍ଡିତପଣେ ବଖାଣନ୍ତି ॥
ସେ ମୋର ଭକତ ବିଶ୍ୱାସ । ଛିଣ୍ଡାଏ କର୍ମବନ୍ଧ ପାଶ ॥୨୬-୨୮
ଏ ଧର୍ମ ପରମ ଗୁପତ । ଅଶେଷ ଜନ୍ମ କର୍ମ ହିତ ॥
ବୋଲନ୍ତି ଶ୍ରୀମଧୁସୂଦନ । ଉଦ୍ଧବ ଧନ୍ୟ ତୋ ଜୀବନ ॥
ଏବେ ତୁ କର ଦୃଢ଼ମନ । ହେଲେ ଖଣ୍ଡିବୁ ମତିଭ୍ରମ ॥
ଯେ କାମ କ୍ରୋଧ ଶୋକ ମୋହ । ହେଲେ ଖଣ୍ଡିବୁ ଭବଭୟ ॥
ସଂଶୟ ମୋହଜାଲ ସଙ୍ଗେ । ଦଣ୍ଡେ ନ ଥିବ ତୋର ଅଙ୍ଗେ ॥୨୯
ଶୁଣ ହୋ ସାବଧାନ ହୋଇ । ଏ ଧର୍ମ ଯେ ଲୋକେ ନ କହି ॥
ଦାମ୍ଭିକ ନାସ୍ତିକ କପଟୀ । କୁଟିଳ ବିଷୟଲମ୍ପଟୀ ॥
ଭକତି ଶୂନ୍ୟ ମତିହୀନ । ଶ୍ରବଣେ ଯାର ନାହିଁ ମନ ॥
ଏହାଙ୍କୁ ଏ ଧର୍ମ ନ କହି । ଶୁଣ ଉଦ୍ଧବ ଯାକୁ କହି ॥୩୦
ସାଧୁଚରିତ ଲୋକପ୍ରିୟ । ଶୁଚି ପବିତ୍ର ପୁଣ୍ୟଦେହ ॥
ବ୍ରାହ୍ମଣ ଚରଣ ଯେ ସେବେ । ଦୋଷ ନ ଧରେ ପରାଭବେ ॥
ଏମନ୍ତ ପ୍ରାଣୀଙ୍କର ମଧ୍ୟେ । ଏ ଧର୍ମ କହିବ ଆନନ୍ଦେ ॥
ଯେ ଶୂଦ୍ର ଭଜେ ମୋର ପଥେ । ମୋ ନାମ ଜପେ ଦୃଢ଼ଚିତ୍ତେ ॥
ଯେ ନାରୀ ମୋର ଭାବେ ଥାଇ । ସ୍ୱାମୀସଙ୍ଗତେ ମୋତେ ଧ୍ୟାୟି ॥
ମୋ ନାମ ମୁଖେ ଯେହୁ ଜପେ । ହରଷେ କି ଅବା ବିଳାପେ ॥
ସେ ପ୍ରାଣୀ ମୋହର ବିଶ୍ୱାସ । ତାହାକୁ ଦେଇ ଉପଦେଶ ॥୩୧
ଏ ଧର୍ମେ ଶ୍ରଦ୍ଧାଳୁ ଯେ ନର । କି ଧର୍ମ ଅବଶେଷ ତାର ॥
ଯେବେ ଅମୃତ ପାନ କରେ । ଆନ ରସେ କି ମନ ସ୍ଫୁରେ ॥୩୨
ଯେ ଜ୍ଞାନ କର୍ମ ଯୋଗବୃତ୍ତି । ଯେ ଅବା ଧର୍ମ ଦଣ୍ଡନୀତି ॥
ସାଧନେ ଯେ ଫଳ ପ୍ରତ୍ୟକ୍ଷ । ଯେ ଧର୍ମ ଅର୍ଥ କାମ ମୋକ୍ଷ ॥
ଏ ସର୍ବ ସାଧନେ ଯେ ଲାଭ । ସେ ସର୍ବ ମୁଁ ତୋର ଉଦ୍ଧବ ॥୩୩

ଏ ଧର୍ମ ଜୀବ ଯେବେ ଭଜେ । ମୋର ଶରଣେ ସର୍ବ ତେଜେ ॥
ନିର୍ବାଣପଦ ତତକ୍ଷଣେ । ଲଭଇ ମୋହର ସ୍ମରଣେ ॥
ତାର ସଂସାର ବେଗେ ତୁଟେ । ମୁଁ ଥାଇ ତାହାର ନିକଟେ ॥୩୪

*ଶ୍ରୀ ଶୁକ ଉବାଚ*

ଏରୂପେ କୃଷ୍ଣମୁଖୁଁ ଶୁଣି । ଉଦ୍ଧବ ଯୋଡ଼େ ବେନି ପାଣି ॥
ପ୍ରେମକୁଣ୍ଠିତ କଣ୍ଠଦ୍ୱାର । କାତରେ କମ୍ପଇ ଶରୀର ॥
ପୁଲକେ ଅଙ୍ଗ ତାର ପୂରେ । ବଦନୁଁ ବଚନ ନ ସ୍ଫୁରେ ॥
କ୍ଷଣକେ ହୁଏ ହତଜ୍ଞାନ । କ୍ଷଣକେ ହୁଏ ସାବଧାନ ॥
ଆନନ୍ଦେ ଶିରେ କର ଦେଇ । ପ୍ରେମେ ବୋଲଇ ତ୍ରାହି ତ୍ରାହି ॥
ବିକଳ କୁଣ୍ଠିତବଚନ । ବୋଲଇ ଶୁଣ ଭଗବାନ ॥୩୫,୩୬

*ଉଦ୍ଧବ ଉବାଚ*

ଏ ମୋହମାୟ ଅନ୍ଧକାର । ତୋର ପ୍ରସନ୍ନେ ହେଲା ଦୂର ॥
ତୋର ଅଭୟପାଦ ତଳେ । ମୁଁ ଯେ ବୁଡ଼ିଲି ସୁଖଭୋଳେ ॥
ଅଗ୍ନି ସମ୍ମୁଖେ ଭାବଗ୍ରାହୀ । ଯେହ୍ନେ ନ ପାରେ ଶୀତ ରହି ॥
ମୋର ଅଜ୍ଞାନ ସେହିମତେ । ତୋ ଆଗେ ରହିବ କେମନ୍ତେ ॥୩୭
ତୁ ମୋତେ ଭୃତ୍ୟ ଦେଖି ହରି । ଏ ଭାବେ ଅନୁଗ୍ରହ କରି ॥
ଅଜ୍ଞାନ ଅନ୍ଧକାର ମୋର । ଜ୍ଞାନେ ଗୋବିନ୍ଦ କଲୁ ଦୂର ॥
ଅଶେଷ ଜନ୍ମ ପୁଣ୍ୟଫଳେ । ପ୍ରାଣୀ ତୋ ଚରଣ କମଳେ ॥
ତୋ ଅନୁଗ୍ରହେ କରେ ସେବା । ସେ ନ ଜାଣଇ ଅନ୍ୟ ଦେବା ॥୩୮
ଏ ଦୃଢ଼ ସ୍ନେହପାଶ ମୋର । ଜ୍ଞାନେ ଛେଦିଲୁ ଚକ୍ରଧର ॥
ପୁତ୍ର କଳତ୍ର ବନ୍ଧୁଜନ । ଏ ବନ୍ଧୁଁ ଫିଟିଲା ମୋ ମନ ॥୩୯
ନମୋ ଗୋବିନ୍ଦ ତୋ ଚରଣ । ଯେ ପାଦ ପ୍ରପନ୍ନ ରକ୍ଷଣ ॥
ମୁନୀନ୍ଦ୍ରଗଣେ ଯାହା ଚିନ୍ତି । ଏ ଘୋର ସଂସାରୁ ତରନ୍ତି ॥
ମୋତେ ବୁଝାଅ ଉପଦେଶ । ବୋଲୁ ଯେ ନ ଥା ମୋର ପାଶ ॥
କେମନ୍ତେ ଧରିବି ମୁଁ ପ୍ରାଣ । ନ ଦେଖି ଅଭୟ ଚରଣ ॥

ଏ ଦୁଷ୍ଟ ଚଞ୍ଚଳ ମୋ ଚିତ୍ତ । ତୋର ଚରଣେ ଗୋପୀନାଥ ॥
ନିଶ୍ଚଳେ ରଖିବି ଯେମନ୍ତେ । ଶ୍ରୀମୁଖେ ଆଜ୍ଞା ହେଉ ମୋତେ ॥୪୦

*ଶ୍ରୀ ଭଗବାନୁବାଚ*

ଶୁଣି ବୋଲନ୍ତି ଭାବଗ୍ରାହୀ । ଉଦ୍ଧବ ବେଗେ ଚଳ ତୁହି ॥
ବଦରି ନାରାୟଣାଶ୍ରମେ । କାନନେ ଚଳ ଯଥାକ୍ରମେ ॥
ମୋର ଚରଣଜଳେ ଯାଇ । ଶୀଘ୍ର ପଖାଳ ତୋର ଦେହୀ ॥
ଆନନ୍ଦେ ସ୍ନାନ ପାନ କର । ସକଳ ପାପରୁ ନିସ୍ତର ॥୪୧
ଯେ ପାପ ଅଛି ତୋର ମନେ* । ଖଣ୍ଡିବ ଗଙ୍ଗା ଦରଶନେ ॥
ସ୍ନାନେ ନିର୍ମଳ ଚିତ୍ତ କରି । ମୋ ନାମ ହୃଦରେ ସୁମରି ॥
ଭକ୍ଷିଣ ଶାକ କନ୍ଦ ମୂଳ । ପିନ୍ଧିବୁ ବୃକ୍ଷର ବକଳ ॥୪୨
ଶୀତ ବରଷା ଗ୍ରୀଷ୍ମକାଳେ । ବସିବୁ ସମାଧି ନିଶ୍ଚଳେ ॥
ଶାନ୍ତ ସଂଯତ ସାଧୁ ହୋଇ । ମୋର ଚରଣେ ଚିତ୍ତ ଦେଇ ॥

---

* 'ଯେ ପାପ ଅଛି ତୋର ମନେ.......' ଇତ୍ୟାଦି ଉକ୍ତିରୁ ସନ୍ଦେହ ଉଠିପାରେ ଯେ ଶ୍ରୀକୃଷ୍ଣଙ୍କ ଅନ୍ତରଙ୍ଗ ସଖା ତଥା ପରମଜ୍ଞାନୀ ଭକ୍ତ ଉଦ୍ଧବଙ୍କର ପୁଣି କେଉଁ ପାପ ଥିଲା, ଯାହା ପ୍ରକ୍ଷାଳନ କରିବା ନିମନ୍ତେ ଭଗବାନ ଗଙ୍ଗାସ୍ନାନ କରିବାକୁ ପ୍ରେରିତ କରୁଛନ୍ତି? ଦ୍ୱିତୀୟତଃ ସର୍ବକଳ୍ମଷହାରୀ ଭଗବାନଙ୍କ ସାନ୍ନିଧ୍ୟ ଓ ଅଙ୍ଗସଙ୍ଗ ଲାଭ କରିବା ସତ୍ତ୍ୱେ ପୁଣି କେଉଁ ପାପ ତାଙ୍କର ରହିଗଲା? ଏହି ସନ୍ଦେହ ମୋଚନ କରି ପୂଜ୍ୟପାଦ ଶ୍ରୀଧରସ୍ୱାମୀ ତାଙ୍କ 'ଭାବାର୍ଥଦୀପିକା' ଟୀକାରେ ଲେଖିଛନ୍ତି—**'ମୟାଦିଷ୍ଟୋ ଲୋକସଂଗ୍ରହାର୍ଥମେତାବତ୍ କୁର୍ବୀତ'** ଅର୍ଥାତ୍ ମୋ ଆଦେଶକ୍ରମେ ଲୋକଶିକ୍ଷା ଅର୍ଥେ ଏହା କର। ଉଦ୍ଧବଙ୍କର ଯେ ପାପ ଥିଲା, ତା' ନୁହେଁ। ଏଠାରେ ବାସ୍ତବରେ ତୀର୍ଥର ମହିମା ପ୍ରଦର୍ଶିତ ହୋଇଛି। ଭକ୍ତମାନଙ୍କୁ ନିମିତ୍ତ କରି ଭଗବାନ ସାଧାରଣ ଜୀବମାନଙ୍କୁ କର୍ତ୍ତବ୍ୟ ଶିକ୍ଷା ଦେଇଥାନ୍ତି। ଶ୍ରୀମଦ୍‌ଭଗବଦ୍-ଗୀତାରେ ମଧ୍ୟ ନରଋଷିଙ୍କ ଅବତାର ଅର୍ଜୁନଙ୍କୁ କର୍ତ୍ତବ୍ୟ ଶିକ୍ଷା ଦେଇ ଭଗବାନ ପୂର୍ବପରମ୍ପରାକୁ ଅନୁସରଣ କରିବାକୁ କହିଛନ୍ତି—**'କୁରୁ କର୍ମୈବ ତସ୍ମାତ୍ତ୍ୱଂ ପୂର୍ବୈଃ ପୂର୍ବତରଂ କୃତମ୍'** (୪।୧୫)।

ଜ୍ଞାନ ବିଜ୍ଞାନେ ସମ ମତି । ମୋ ପାଦେ ମନ ବୁଦ୍ଧି ରତି ॥
ମୁଁ ଯାହା କହିଅଛି ତୋତେ । ବିଗ୍ରହ କରି ତା ସୁଚିତ୍ତେ ॥
ମୋତେ ସମର୍ପି ବାକ୍ୟ ମନ । ନିରତେ ସାଧ ମୋର ଧର୍ମ ॥
ତ୍ରିଗୁଣ ତେଜି ଅନ୍ତକାଳେ । ପଶିବୁ ମୋ ପାଦକମଳେ ॥
ଏବେ ତୁ ଶୀଘ୍ର ଚଳ ଏକା । ଆଶ୍ରମ ନାମେ ବଦରିକା ॥୪୩,୪୪

ଶ୍ରୀ ଶୁକ ଉବାଚ

ତକ୍ଷଣେ ଆଜ୍ଞା ଶିରେ ଧରି । କୃଷ୍ଣଙ୍କୁ ପ୍ରଦକ୍ଷିଣ କରି ॥
କୃଷ୍ଣଙ୍କୁ କରି ନମସ୍କାର । ଚରଣେ ଦେଇ ନିଜ ଶିର ॥
ପଡ଼ି କାନ୍ଦଇ ଭୂମିଗତେ । ଅଜ୍ଞାନାଚ୍ଛନ୍ନ ମୋହ ଚିତ୍ତେ ॥
ଦେହେ ଜୀବନ ଜ୍ଞାନ ନାହିଁ । କାତରେ କମ୍ପେ ତାର ଦେହୀ ॥
କ୍ଷଣକେ ବିଚ୍ଛେଦ କାତରେ । ରୋଦନ କରେ ଉଚ୍ଚସ୍ୱରେ ॥୪୫
କୃଷ୍ଣଙ୍କୁ ଗ୍ରହିଁ କମ୍ପେ ଦେହୀ । ବଦନୁ ବାକ୍ୟ ନ ସ୍ଫୁରଇ ॥
ଉଠି କୃଷ୍ଣଙ୍କୁ ବୋଲେ ବାଣୀ । ମୋତେ କି ଭଣ୍ଡୁ ଚକ୍ରପାଣି ॥
ସକଳ ତୀର୍ଥ ତୋ ଚରଣେ । ବଦ୍ରିକା ଯିବି କି କାରଣେ ॥
ଆଶ୍ରମ ନାମ ବଦରିକା । ସେ କି ତୋ ଚରଣୁଁ ଅଧିକା ॥
ତୋତେ ନ ଦେଖି ନରହରି । ଜୀବନ ନ ପାରିବି ଧରି ॥
କୃଷ୍ଣ କହନ୍ତି ପୁଣ ପୁଣି । ଉଦ୍ଧବ କାନ୍ଦେ ତା ନ ଶୁଣି ॥
ଦେଖିଣ ଉଦ୍ଧବ କାତର । ଦୟାସାଗର ଦାମୋଦର ॥
ରତ୍ନପାଦୁକା ପାଦୁଁ ଫେଇ । ଉଦ୍ଧବ କରେ କୃଷ୍ଣ ଦେଇ ॥
ବୋଲନ୍ତି ପ୍ରଭୁ ବନମାଳୀ । ଉତ୍ତରପଥେ ଯାଅ ଚଳି ॥
ଏ ପାଦତଳେ ତପ ଦାହି । ଅନ୍ତେ ପାଇବୁ ମୋର ଦେହି ॥୪୬
ଏହା କହନ୍ତେ ନାରାୟଣ । ଉଦ୍ଧବ କଲା ପ୍ରଦକ୍ଷିଣ ॥
କୃଷ୍ଣ ପାଦୁକା ମୁଣ୍ଡେ କରି । କୃଷ୍ଣଙ୍କୁ ହୃଦପଦ୍ମେ ଧରି ॥
ତକ୍ଷଣେ ଛାଡ଼ି ମୋହ ପାଶ । ଧନ କୁଟୁମ୍ବ ଦାରା ଦାସ ॥
ପ୍ରାଣ ଆକୁଳେ ଶୋକଭରେ । ଉଦ୍ଧବ ଗଲା ଧୀରେ ଧୀରେ ॥

ଉତ୍ତରମୁଖେ ଚଳିଯାନ୍ତେ । ନୟନୁ ଅଶ୍ରୁ ପଡ଼େ ପଥେ ॥
କୃଷ୍ଣର ବିରହେ କାତରେ । କରଯୁଗଳ ତାଡ଼େ ଶିରେ ॥
ବିକଳେ ହୃଦୟ ଅସ୍ଥିରେ । ମିଳିଲା ବଦ୍ରିକା ତୀର୍ଥରେ ॥
ତପ ଆରାଧି ବନବାସେ । ଯେମନ୍ତେ କୃଷ୍ଣ ଉପଦେଶେ ॥
ହରିଙ୍କି ହୃଦୟ କମଳେ । ଆରାଧି ଜ୍ଞାନ ଯୋଗବଳେ ॥
ତପ ସମାଧି ଯୋଗବଳେ । ଭକତି ବିସ୍ତାରି ଶୟଳେ ॥
ଭକତ ମଧ୍ୟେ ଶ୍ରେଷ୍ଠ ହୋଇ । ଅନ୍ତେ ପରମ ଗତି ପାଇ ॥
ଦୟାସାଗର ନରହରି । ସ୍ୱଯଶ ଜଗତେ ବିସ୍ତାରି ॥
ସ୍ୱଭାବେ କୃଷ୍ଣ ଧର୍ମସେତୁ । ସଂସାର ଉଦ୍ଧାରଣ ହେତୁ ॥
ତାଙ୍କ ଚରିତ କେବା ଜାଣେ । ମହିମା ନିଗମ ବଖାଣେ ॥୪୭
କହନ୍ତି ବ୍ୟାସଙ୍କର ସୁତ । ଶୁଣିଲେ ରାଜା ପରୀକ୍ଷିତ ॥
ଗୋବିନ୍ଦ ନିଜ ଭୃତ୍ୟ ଅର୍ଥେ । ଯାହା କହିଲେ ଜ୍ଞାନପଥେ ॥
ଅମୃତ ରସମୟ ବାଣୀ । ଉଦ୍ଧବ ନିସ୍ତରିଲା ଶୁଣି ॥
ଯେ ପ୍ରାଣୀ ଶୁଣେ ଏହା କର୍ଣ୍ଣେ । ହୃଦେ ଭକତି ଅନୁମାନେ ॥
ଆନନ୍ଦରସ ସୁଧାନିଧି । ଯେ ଏଣେ ବୁଡ଼େ ନିରବଧି ॥
ଶ୍ରଦ୍ଧା ଭକତି ଭାବେ ଚିନ୍ତି । ଶୁଣନ୍ତେ ନ ଲାଗେ ଦୁର୍ଗତି ॥
ସୁଖେ ସେ ଭବସିନ୍ଧୁତରେ । ତା ସଙ୍ଗେ ସଂସାର ନିସ୍ତରେ ॥୪୮
ନିଜ ଭକତଜନ ଅର୍ଥେ । ଭୃଙ୍ଗର ପ୍ରାୟେ ବେଦପଥେ ॥
ସାର ଉଦ୍ଧାରି ଦାମୋଦର । ଉଦ୍ଧବେ ଦେଲେ ସୁଧାଧାର ॥
ଜ୍ଞାନ ବିଜ୍ଞାନ ସାର ଯେତେ । ଉଦ୍ଧବ ସଞ୍ଚିଲା ଜଗତେ ॥
ଏ ଯେ ଶ୍ରୀକୃଷ୍ଣ ମୁଖସୁଧା । ପିବନ୍ତେ ତୁଟେ ଭବବାଧା ॥
ସେ ଆଦି ଅନାଦି ନିଧାନ । ସ୍ୱଭାବେ ପୁରୁଷ ଉତ୍ତମ ॥
ସେ ନନ୍ଦନନ୍ଦନର ପାଦେ । ଭକତି ହେଉ ଅପ୍ରମାଦେ ॥୪୯
ବୋଲଇ ବିପ୍ର ଜଗନ୍ନାଥ । ଶ୍ରୀ ଏକାଦଶ ଭାଗବତ ॥
ଉଦ୍ଧବ ଗଲେ ଯେଉଁ ଦାଣ୍ଡେ । ସେ ରେଣୁ ପଡୁ ମୋରେ ମୁଣ୍ଡେ ॥

ଭକତଜନ ପାଦେ ପଡ଼ି । ଏ ବର ମାଗେ କର ଯୋଡ଼ି ॥
ପାମର ହୀନଜ୍ଞାନ ମୋର । ପଣ୍ଡିତେ ଦୋଷ ମୋ ନ ଧର ॥
କୃଷ୍ଣଚରଣେ ନାନାମତେ । ଭକତି ହେଉ ଦୃଢ଼ଚିତ୍ତେ ॥

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ଏକାଦଶସ୍କନ୍ଧେ ଉଦ୍ଧବବଦରିକାଗମନେ ସଂକ୍ଷିପ୍ତ
ଭକ୍ତିଯୋଗନିରୂପଣଂ ନାମ ତ୍ରିଂଶୋଽଧ୍ୟାୟଃ ।

❒❒❒

# ଏକତ୍ରିଂଶ ଅଧ୍ୟାୟ*

ମୁଷଳେ ଯଦୁକୁଳ ଧ୍ୱଂସ । ବର୍ଣ୍ଣନ ଅଧ୍ୟା ଏକତ୍ରିଂଶ ॥

*ରାଜା ପରୀକ୍ଷିତ ଉବାଚ*

ଉଦ୍ଧବ କୃଷ୍ଣର ବଚନେ । ଗଲେ ଯେ ବଦରିକାଶ୍ରମେ ॥
ପୁଣି କି କଲେ ଚକ୍ରପାଣି । ବିସ୍ତାରି କହ ମୁନିମଣି ॥
ଯେ କାଳରୂପେ ଅବତରେ । କୋଟି ବ୍ରହ୍ମାଣ୍ଡ ରୋମେ ଧରେ ॥
ବ୍ରାହ୍ମଣ ଶାପେ ଯଦୁବଂଶ । ଶରୀର ତୁଲେ କଲେ ନାଶ ॥୧,୨
ଅଶେଷ ଜଗତ ମଙ୍ଗଳ । ଯେ ରୂପ ଦେଖି କାମ ଭୋଳ ॥
ଜନ ଲୋଚନ ମନୋହର । ଅଶେଷ ଭୁବନ ସୁନ୍ଦର ॥
ଯେ ନାରୀ ଦୃଷ୍ଟି ଅଙ୍ଗେ ପଡ଼େ । ମନମୋହନ ଚିତ୍ତେ ଜଡ଼େ ॥
ଆସି ନ ପାରେ ମନ ଛାଡ଼ି । ପ୍ରେମଲାଳସା ସୁଖେ ବୁଡ଼ି ॥
ଯେ ରୂପ ଗୁଣ ସାଧୁଗଣେ । କେବଳ ଶୁଣିଲେ ଶ୍ରବଣେ ॥
ସର୍ବ ବିଷୟ ପାସୋରନ୍ତି । ଗୃହ ଦେହକୁ ନ ସ୍ମରନ୍ତି ॥
ଆଜାନୁ ଲମ୍ବେ ଗ୍ରୀବି କର । ବଚନ ଅମୃତ ମଧୁର ॥
ଏ ରୂପ ଅର୍ଜୁନର ରଥେ । ଦେଖି ମରିଲେ ଯୁଦ୍ଧେ ଯେତେ ॥

* ମୂଳ ସଂସ୍କୃତ ଅନୁସାରେ ତ୍ରିଂଶ ଅଧ୍ୟାୟ ।

ନିଜ ଶରୀର ପାସୋରିଲେ । ତାହାର ଶରୀରେ ପଶିଲେ ॥
ସେ ଦେହ ତେଜିଲେ କି ଅର୍ଥେ । ଯଶ ବିସ୍ତାରି ଏ ଜଗତେ ॥ ୩
ବୋଲନ୍ତି ଶୁକ ମୁନିବର । ଶୁଣ ହେ ମହିମା କୃଷ୍ଣର ॥(ଜ.)

*ଶ୍ରୀ ଶୁକ ଉବାଚ*

କୃଷ୍ଣର କାଳଚକ୍ର ଘାତେ । ଦ୍ୱାରକା କମ୍ପିଲା ଅଦ୍ଭୁତେ ॥
ବିବିଧ ଉତ୍ପାତ ପ୍ରତ୍ୟକ୍ଷେ । ଭୂମି ଗଗନ ଅନ୍ତରୀକ୍ଷେ ॥
ତା ଦେଖି ଦେବକୀ ନନ୍ଦନ । ନିକଟେ ରାଇ ବନ୍ଧୁଜନ ॥
ଉଗ୍ରସେନର ତୁଲେ ହରି । ସୁଧର୍ମା ମଧ୍ୟେ ବିଜେ କରି ॥
ବୋଲନ୍ତି ପ୍ରଭୁ ଦାମୋଦର । ଶୁଣ ସକଳ ଯଦୁବୀର ॥ ୪
ଦେଖ ଉତ୍ପାତ ଏ ପ୍ରତ୍ୟକ୍ଷେ । ଭୂମି ଗଗନ ଅନ୍ତରୀକ୍ଷେ ॥
ଏ ଧୂମକେତୁ ଭୟଙ୍କର । ଦେଖ ଦିବସେ ଅନ୍ଧକାର ॥
ଅବନୀ କମ୍ପେ ଘନଘନ । ଅଦ୍ଭୁତେ ଶୁଭେ ଘୋର ସ୍ୱନ ॥
ଏ ଘୋର ପ୍ରଚଣ୍ଡ ଅଦ୍ଭୁତ । ଏ ପୁରେ ରହିବା କେମନ୍ତ ॥
ନିଶ୍ଚୟ ସର୍ବେ ଯିବା ନାଶ । ଏ ପୁରେ ନ କରିବା ବାସ ॥
ଦଣ୍ଡେ ନ ଥିବା ଦ୍ୱାରକାଏ । ମୋତେ ଲାଗଇ ମହାଭୟେ ॥ ୫
ପ୍ରଭାସ ତୀର୍ଥେ ଗ୍ଚଲ ଯିବା । ଦ୍ୱାରକା ନିମିଷେ ନ ଥିବା ॥
ଯେ ତୀର୍ଥେ ପ୍ରାଚୀ ସରସ୍ୱତୀ* । ସ୍ନାନେ ସକଳ ରିଷ୍ଟ ଶାନ୍ତି ॥
ବୃଦ୍ଧ ବାଳକ ନାରୀଗଣ । ରାତ୍ରହୁଁ କରନ୍ତୁ ପ୍ରୟାଣ ॥
ଦ୍ୱାରକା ଆଶା ଛାଡ଼ି ଦୂରେ । କେହି ନ ରହ ଏ ନଗ୍ରରେ ॥ ୬
ସେ ଜଳେ ସ୍ନାନ କରି ତୋଷେ । ଦିନ ବଞ୍ଚିବା ଉପବାସେ ॥
ଘେନି ସକଳ ଉପହାର । ସେ ତୀର୍ଥେ ସ୍ନାନ ଦାନ କର ॥ ୭
ପିତୃ ଦେବତା ଋଷିଗଣେ । ବୈଦିକ ଉତ୍ତମ ବ୍ରାହ୍ମଣେ ॥

---

* ମୂଳ ସଂସ୍କୃତରେ 'ପ୍ରତ୍ୟକ୍ ସରସ୍ୱତୀ' ଅର୍ଥାତ୍ ପଶ୍ଚିମବାହିନୀ ସରସ୍ୱତୀ ଲେଖାଅଛି ।

ଆନନ୍ଦେ କରି ନାନା ଦାନ । ସୁବର୍ଣ୍ଣ ତିଳ ବସ୍ତ୍ର ଅନ୍ନ ॥
ଅଶ୍ୱ କୁଞ୍ଜର ଭୂମି ରଥ । ଗୋରୁ ମହିଷି ଯୂଥ ଯୂଥ ॥ ୮
ଏ ଯେ ଉତ୍ତମ ବିଧିସାର । ସକଳ ମଙ୍ଗଳ ଆଗ୍ର ॥
ଗୋରୁ ଦେବତା ସୁବ୍ରାହ୍ମଣ । ଏ ପୂଜା ପରମ କାରଣ ॥
ଅରିଷ୍ଟ ଖଣ୍ଡନ ଏ ବିଧି । ନିଗମ ବଚନେ ପ୍ରସିଦ୍ଧି ॥
ଏଣୁ ସକଳ ଯଦୁଜନ । ରିଷ୍ଟ ଖଣ୍ଡନେ ଦେବା ଦାନ ॥ ୯
ଏମନ୍ତେ କୃଷ୍ଣର ବଚନେ । ଯାଦବେ ଭାଳି ଏକମନେ ॥
ବୋଲନ୍ତି ଧନ୍ୟ କୃଷ୍ଣକଥା । ଏଣେ ଖଣ୍ଡିବ ରିଷ୍ଟ ବ୍ୟଥା ॥
ଏମନ୍ତ ଭାଳି ଏକଚିତ୍ତେ । ଯାନ ଆରୋହି ଯେଝାମତେ ॥
ରାତ୍ରହୁଁ ଗଲେ ଯୂଥେ ଯୂଥେ । ମିଳିଲେ ସରସ୍ୱତୀ ତୀର୍ଥେ ॥୧୦
ଆନନ୍ଦେ ପଶି ପୁଣ୍ୟଜଳେ । କରନ୍ତି ସ୍ନାନ କୁତୂହଳେ ॥
ଯେ ବିଧି କୃଷ୍ଣ ଉପଦେଶେ । ଦିନ ବଞ୍ଚିଲେ ଉପବାସେ ॥
ନାନା ପ୍ରକାରେ ଦେଇ ଦାନ । ତୋଷିଲେ ବିପ୍ରଙ୍କର ମନ ॥୧୧
ଦିବସ ଅବଶେଷ କାଳେ । ସକଳେ ବସି ଏକମେଳେ ॥
ଦଇବ ଯୋଗେ ହତଜ୍ଞାନ । ଯାଦବେ କଲେ ମଦ୍ୟପାନ ॥
କୃଷ୍ଣମାୟାରେ ବିମୋହିତ । ହୋଇଲେ ସର୍ବେ ମହାମତ୍ତ ॥
ଫଳିଲା ବ୍ରହ୍ମଶାପ ଫଳ । ଅଦ୍ଭୁତେ ଉଠିଲା କନ୍ଦଳ ॥
ବେଣୁ ଘର୍ଷଣେ ଅଗ୍ନି ଯେହ୍ନେ । ତକ୍ଷଣେ ଉଠେ ଘୋରବନେ ॥୧୨,୧୩
ଶୂନ୍ୟେ ପଡ଼ିଲା ଥାଟ ହୁରି । ଯାଦବେ କରେ ଶସ୍ତ୍ର ଧରି ॥
ଗଦା ମୁଦ୍‌ଗର ଅସିବର । ଧନୁର୍କ ଭୁଷଣ୍ଡି ତୋମର ॥
ଏମନ୍ତେ ନାନା ଶସ୍ତ୍ର ଧରି । ଧାଇଁଲେ ଘୋର ନାଦ କରି ॥
ଧାମନ୍ତି ଅତି ଭୟଙ୍କରେ । ଘୋର ସମର ନଦୀତୀରେ ॥୧୪
ରଥେ କେ ଯୁଝେ ରଣମଧ୍ୟେ । କେ ଗୋରୁ ମହିଷର କନ୍ଧେ ॥
ଖର ଉଷ୍ଟ୍ରର କନ୍ଧେ ବସି । କେ ଯୁଝେ ଘୋର ରଣେ ପଶି ॥
ଗଜର କନ୍ଧେ କେ ଯୁଝନ୍ତି । ଅଶ୍ୱର ପୃଷ୍ଠେ ଆରୋହନ୍ତି ॥

ମୁଷଳ ମୁଦ୍ଗର ପ୍ରହାରେ । ଯୁଝନ୍ତି ଘୋର ଅନ୍ଧକାରେ ॥
ଅଦ୍ଭୁତ ମୁଷଳ ସମରେ । ମୁଖ ନ ଦିଶେ ଅନ୍ଧକାରେ ॥
ସ୍ୱଭାବେ ମହାବୀରଗଣେ । ଯୁଝନ୍ତି ହସ୍ତୀ ଯେହ୍ନେ ବନେ ॥୧୫
ରୁକ୍ମିଣୀସୁତ ଶାମ୍ବ ସଙ୍ଗେ । ଘୋର ଗର୍ଜନ ରଣରଙ୍ଗେ ॥
ଭୋଜ ଅକ୍ରୂର ଅନ୍ୟୋଅନ୍ୟ । ସାତ୍ୟକି ଅନିରୁଦ୍ଧ ପୁଣ ॥
ସଂଗ୍ରାମଜିତ ଭଦ୍ରସେନ । ରୋଷେ କରନ୍ତି ଘୋର ରଣ ॥୧୬
ସହସ୍ରଜିତ ଶତଜିତ । ସୁମିତ୍ର ସଙ୍ଗରେ ସୁରଥ ॥
ଦୁର୍ମଦ ଅନ୍ଧ ଯଦୁଗଣ । ଅନ୍ୟୋନ୍ୟେ କଲେ ଘୋର ରଣ ॥
ଶ୍ରୀକୃଷ୍ଣ ମାୟା ବିମୋହିତ । ଯୁଦ୍ଧ କରିଣ ହେବେ ହତ ॥୧୭
ମାଥୁର ଶୂରସେନ ମଧୁ । ଭୋଜ ସାତ୍ୱତ ବୃଷ୍ଣି ଯଦୁ ॥
ଦୁର୍ମଦ ମତ୍ତ ଘୋର ରଣେ । ଯୁଦ୍ଧ କରନ୍ତି ଜଣେ ଜଣେ ॥୧୮
କୋପେ ଯୁଝନ୍ତି ପିତାପୁତ୍ରେ । ଦାରୁଣ ଯୁଦ୍ଧ ମିତ୍ରେ ମିତ୍ରେ ॥
ସୁହୃଦ ସୁହୃଦେ ନ ଗ୍ରହିଁ । କୋପେ ଯୁଝନ୍ତି ଭାଇ ଭାଇ ॥
ମାତୁଳ ଭଗିନୀ କୁମରେ । ଯୁଝନ୍ତି ଜ୍ଞାତି ସହୋଦରେ ॥୧୯
ଲଜ୍ଜା ପୀରତି ତେଜି ଦୂରେ । ଯୁଝନ୍ତି ଘୋର ଅନ୍ଧକାରେ ॥
ଦୁଃସହ ପ୍ରହାରେ ପ୍ରଚଣ୍ଡ । ଶସ୍ତ୍ରେ ଭାଜିଲେ ଖଣ୍ଡ ଖଣ୍ଡ ॥
ବିନ୍ଧୁ ତୁଟିଲେ ଧନୁଶର । ଗଦା ଖଡ଼ଗ ହେଲା ଚୂର ॥
ଅରୁଣ ପ୍ରକାଶେ ଗଗନ । ମିଳିଲେ ଏରକାର ବନ ॥୨୦
ବ୍ରାହ୍ମଣଶାପେ ଲୌହଜାତ । ତୀକ୍ଷ୍ଣ ତ୍ରିଶିର ବଜ୍ରବତ ॥
କରେ ଧରନ୍ତି ମୁଷ୍ଟି ମୁଷ୍ଟି । ପ୍ରହାରେ ଛିଡ଼େ କୋଟି କୋଟି ॥
ଏରକା ବନେ ଘୋର ରଣେ । ସଂଗ୍ରାମ କଲେ ବୀରଗଣେ ॥
ଗଗନେ ଆଦିତ୍ୟ ପ୍ରକାଶେ । ଯେ ଅବା ଥିଲେ ଯେଉଁ ଦେଶେ ॥
ପ୍ରବେଶ ହେଲେ ତହିଁ ଆସି । ଯୁଦ୍ଧ କରନ୍ତି ରଣେ ପଶି ॥
ଦେଖି ଧାଇଁଲେ ଗଦାଧର । ଡାକନ୍ତି ନ କର ସମର ॥
ଯାଦବ ମଦେ ଅଚେତନ । ନ ଶୁଣି ଗୋବିନ୍ଦ ବଚନ ॥

ନାନା ଆୟୁଧ ଧରି କରେ । କୃଷ୍ଣଙ୍କୁ ବେଢ଼ିଲେ ସମରେ ॥
ବିନ୍ଧନ୍ତି ନାନା ଶସ୍ତ୍ର ଧରି । ଦେଖି ଧାଇଁଲେ ହଳଧାରୀ ॥
ରାମ ଗୋବିନ୍ଦ କୋପଭରେ । ଯୁଝନ୍ତି ମୁଷଳ ସମରେ ॥
ଗଦା ମୁଷଳେ ଯୁଦ୍ଧ କଲେ । କେ ନିଜ ପର ନ ଜାଣିଲେ ॥
ଏରକାମୁଷ୍ଟି ବଜ୍ରାଘାତେ । ବୀରେ ପଡ଼ିଲେ ଯୂଥେ ଯୂଥେ ॥
ମାୟାଭିଆଣ ଭଗବାନ । ଯାଦବ କଲେ ନିଶୋଧନ[୧] ॥୨୧-୨୩
ବ୍ରାହ୍ମଣଶାପ କୋପାନଳ । ହେଲେ ଦହିଲା ଯଦୁକୁଳ ॥
ବେଣୁ ଅନଳେ ବେଣୁ ଯେହ୍ନେ । ଯାଦବେ ନାଶ ଗଲେ ତେହ୍ନେ ॥୨୪
ପୁଣି ପ୍ରଦ୍ୟୁମ୍ନ କୃଷ୍ଣ ଦେଖି । ଚକ୍ର ପେଷିଲେ ବିଶ୍ୱରୂପୀ ॥
ପ୍ରଦ୍ୟୁମ୍ନ ନାଶି ଚକ୍ର ଗଲା । ଶ୍ରୀକୃଷ୍ଣ କରକୁ ନଇଲା ॥*
ସେ କାଳରୂପୀ ଭଗବାନ । ଦେଖି ସାନନ୍ଦ କଲେ ମନ ॥
ଏମନ୍ତେ ନିଜ କୁଳ ହରି । କନ୍ଦଳ ବ୍ୟାଜେ[୨] ନାଶ କରି ॥
ମନେ ଚିନ୍ତନ୍ତି ଦାମୋଦର । ଏବେ ସେ ଗଲା ପୃଥ୍ୱୀଭାର ॥୨୫
ଯାଦବବଳ ନଷ୍ଟ ଦେଖି । ରାମ ବୁଜିଲେ ବେନି ଆଖି ॥
ତକ୍ଷଣେ ନିଜ ଯୋଗବଳେ । ଅନନ୍ତ ପଶିଲେ ପାତାଳେ ॥
ଅନନ୍ତ ମହିମା ଯାହାର । ଛାଡ଼ିଲେ ନିଜ କଳେବର ॥୨୬
ରାମର ଦେଖି ଅବସାନ । ତକ୍ଷଣେ ପ୍ରଭୁ ଭଗବାନ ॥
ଅଶ୍ୱତ୍ଥ ତରୁମୂଳେ ବସି । ନିଜ ମହିମା ପରକାଶି ॥୨୭
ସୁନ୍ଦର ଦିଶେ ଚତୁର୍ଭୁଜ । କୋଟିଏ ରବି ଜିଣି ତେଜ ॥
ଅନ୍ଧାର ଦଶଦିଶ ଗଞ୍ଜେ । ଶ୍ୟାମସୁନ୍ଦର ରୂପ ତେଜେ ॥
ଶ୍ରୀବତ୍ସ ଚିହ୍ନ ହୃଦେ ଶୋହେ । ମଣିକଙ୍କଣ ମନ ମୋହେ ॥
ପୀତବସନ ପରିଧାନ । ସକଳ ମଙ୍ଗଳ ନିଧାନ ॥୨୮,୨୯

---

୧. ନିଶୋଧନ—ସମୂଳେ ବିନାଶ । ୨. ବ୍ୟାଜେ—ଛଳରେ ।

* 'ପୁଣି ପ୍ରଦ୍ୟୁମ୍ନ....କରକୁ ନଇଲା' ଏତିକି ଅଂଶ ମୂଳ ଭାଗବତ ଆଧାରିତ ନୁହେଁ ।

ସୁନ୍ଦର ସ୍ମିତହାସ ମୁଖ । କୁଟିଳ କୁନ୍ତଳ ସୁରେଖ ॥
ବିକଚ ପୁଣ୍ଡରୀକ ପ୍ରାୟେ । କୃଷ୍ଣ ନୟନଯୁଗ ଶୋହେ ॥
ଶ୍ରବଣେ ମକର କୁଣ୍ଡଳ । ସୁନ୍ଦର ଅଳକା କପୋଳ ॥୩୦
ଯଜ୍ଞୋପବୀତ କନ୍ଧେ ସାଜେ । ରତ୍ନମେଖଳା କଟିମାଝେ ॥
ଲଲାଟେ କିରୀଟ ସୁନ୍ଦର । ଚରଣେ ସୁବର୍ଣ୍ଣ ମଞ୍ଜୀର[୧] ॥୩୧
ଉରେ କୌସ୍ତୁଭ ବନମାଳ । ମୋହନ ରୂପ ନନ୍ଦବାଳ ॥
ନିଜ ଆୟୁଧ ମୂର୍ତ୍ତିମନ୍ତେ । ବସନ୍ତି କୃଷ୍ଣର ଅଗ୍ରତେ ॥
ଶରୀରୁ ଶ୍ରମଝାଳ ଗଳେ । କୃଷ୍ଣ ବସିଲେ ତରୁମୂଳେ ॥
ବାମଚରଣ ତୋଳି ଧୀରେ । ଦକ୍ଷିଣ ଜାନୁର ଉପରେ ॥
ପଦ୍ମ ଅରୁଣ ବର୍ଣ୍ଣ ପ୍ରାୟେ । ସେ ପାଦ ଅତି ଶୋଭା ପାଏ ॥୩୨
ଏମନ୍ତେ ଶୁଣ ନରନାଥ । ଜାରାଶବର ଉପଗତ ॥
ମୁଷଳ ଅବଶେଷ ଖଣ୍ଡେ । ଫଳା ନିର୍ମିତ ତାର କାଣ୍ଡେ ॥
ବନେ ବୁଲନ୍ତେ ମୃଗ ମାରି । ମିଳିଲା କରେ ଧନୁ ଧରି ॥
ଲତା ଗହନ ବୃକ୍ଷମୂଳେ । ଦେଖିଲା ଚରଣ ନିରୋଳେ ॥
ମୃଗର କର୍ଣ୍ଣପ୍ରାୟ ମଣି । ବାଣ ବିନ୍ଧିଲା ଗୁଣ ଟାଣି ॥୩୩
ବିନ୍ଧି ଧାଇଁଲା ଅତି ଖରେ । ଦେଖିଲା ଲତାର ଭିତରେ ॥
କୋଟି ଆଦିତ୍ୟ ଜିଣି ତେଜ । ସୁନ୍ଦର ଶୋହେ ଚତୁର୍ଭୁଜ ॥
ଦେଖି ଚକିତ ବ୍ୟାଧ ମନେ । ଧନୁ ପକାଇ ତତକ୍ଷଣେ ॥
କାତରେ ବେନି କର ଯୋଡ଼ି । କୃଷ୍ଣ ଚରଣ ତଳେ ପଡ଼ି ॥
ଉଠି କପାଳେ ମାରେ କର । ବୋଲଇ ମୁହିଁ ଦୁରାଗ୍ରହ ॥
ନ ଜାଣି କଲି ଏଡ଼େ କର୍ମ । କେ ମୋତେ କଲା ମତିଭ୍ରମ ॥
ମୁଁ ଯେ ପାମର ଦୁରାଗ୍ରହ । ନରକେ ନିବାସ ମୋହର ॥
ତୁ ନାଥ ଜଗତ ସୋଦର । ଏ ଅପରାଧ କ୍ଷମା କର ॥୩୪,୩୫
ତୋ ନାମ ଚିତ୍ତେ ଯେ ସୁମରେ । ଘୋରସଂସାର ଦୁଃଖୁଁ ତରେ ॥

୧. ମଞ୍ଜୀର—ନୂପୁର ।

ତୋତେ ଯେ ନୟନେ ଦେଖଇ । ଅଜ୍ଞାନ ତିମିର ଧ୍ୱଂସଇ ॥
ଶବର ଜାତି ହୀନ ମୁହିଁ । ତୋର ମାୟାରେ ହୋଇ ମୋହି ॥
ସ୍ୱଭାବେ ପତିତ କୁତ୍ସିତ । ଦୀନ ପାମର ମୋହଚିତ୍ତ ॥୩୬
ତୋର ସ୍ୱହସ୍ତେ ଦାମୋଦର । ଖଡ଼୍‌ଗେ ଛେଦ ମୋର ଶିର ॥
ସର୍ବପାତକ ମୋର ଯାଉ । ଏ ଜାତି ମଧ୍ୟେ ଜନ୍ମ ନୋହୁ ॥
ଦୁରିତ ନ କରେଁ ଯେମନ୍ତେ । ଏମନ୍ତ ଆଜ୍ଞା ହେଉ ମୋତେ ॥୩୭
ତୋ ମାୟାଗତି ଦାମୋଦର । ନ ଜାଣେ ବିରଞ୍ଚି ଶଙ୍କର ॥
ବେଦବଚନେ ମୁନିଜନେ । ଭ୍ରମନ୍ତି ତୋର ଅନୁମାନେ ॥
ତୋ ମାୟାବଳେ ଗୋପୀନାଥ । ଅଶେଷଜନ ବିମୋହିତ ॥
ମୁଁ ପାପୀ ଜାଣିବି କେମନ୍ତେ । ଅଜ୍ଞାନେ ଭ୍ରମେ ଏ ଜଗତେ ॥୩୮
ବ୍ୟାଧ ବିକଳ କର୍ଣ୍ଣେ ଶୁଣି । ବୋଲନ୍ତି ପ୍ରଭୁ ଚକ୍ରପାଣି ॥(ଜ.)

*ଶ୍ରୀ ଭଗବାନୁବାଚ*

ଉଠ ଶବର ଛାଡ଼ ପାୟେ । ମନେ ନ କର କିଛି ଭୟେ ॥
ମୋହର ବାଞ୍ଛିତ ଏ କର୍ମ । ମନେ ନ କର ଜାରା ଭ୍ରମ ॥
ମୋର ବଚନେ ତୁ ନିର୍ମଳ । ଏହି ଶରୀରେ ସ୍ୱର୍ଗେ ଚଳ ॥୩୯
କୃଷ୍ଣର ଆଜ୍ଞା ପାଇ ବେଗେ । ବ୍ୟାଧ ଚଳିଲା ସ୍ୱର୍ଗମାର୍ଗେ ॥
ଜାରା ଶବର ସ୍ୱର୍ଗପଥେ । ଯାନ୍ତେ ମିଳିଲା ଦିବ୍ୟରଥେ ॥
କି ଅବା ଦେବା ପଟାନ୍ତର । ଗଞ୍ଜଇ ଚନ୍ଦ୍ର ଦିବାକର ॥
ଦେଖି ଶବର ତୋଷମନେ । ତକ୍ଷଣେ ବସିଲା ବିମାନେ ॥
କୃଷ୍ଣ ବଚନେ ସ୍ୱର୍ଗେ ଗଲା । ତକ୍ଷଣେ ଦାରୁକ ମିଳିଲା ॥
ଲତାଗହନେ କୃଷ୍ଣପାଶେ । ମିଳିଲା ଦିବ୍ୟଗନ୍ଧ ବାସେ ॥
ଦାରୁକ ଦେଖେ ଯଦୁପତି । କୋଟି ଆଦିତ୍ୟ ପ୍ରାୟେ ଜ୍ୟୋତି ॥
ଜଗମୋହନ ରୂପରାଶି । ଅଶ୍ୱତ୍ଥ ତରୁମୂଳେ ବସି ॥
ଦାରୁକ ରୋମାଞ୍ଚ ଶରୀର । ପ୍ରେମେ ନୟନୁଁ ବହେ ନୀର ॥
ତକ୍ଷଣେ ରଥ ସେହୁ ଛାଡ଼ି । କୃଷ୍ଣଚରଣ ତଳେ ପଡ଼ି ॥
ହା କୃଷ୍ଣ ଜୀବନ ମୋହର । ଭୋ ନାଥ ମୁହିଁ ତୋ କିଙ୍କର ॥

ବିକଳେ କାନ୍ଦେ ଉଚ୍ଚ ତୁଣ୍ଡେ । କରଯୁଗଳ ତାଡ଼ି ମୁଣ୍ଡେ ॥
ଭୋ ନାଥ ଛାଡ଼ି ମୋତେ ଦୟା । କିମ୍ପା ଦେଖାଉ ଏଡ଼େ ମାୟା ॥
ତୋତେ ନ ଦେଖି ଦାମୋଦର । ଜୀବନ ନାହିଁ ମୋ ଶରୀର ॥
ନୟନ ନାହିଁ ମୋ ଶରୀରେ । ଆଜ ପଡ଼ିଲି ତମଘୋରେ ॥
ନ ଦିଶେ ଦଶଦିଗ ମୋତେ । ତୋର ଚରଣ ଶସ୍ତ୍ରାଘାତେ ॥
ତୋତେ ନ ଦେଖି ଦାମୋଦର । ଜୀବନ ଥିବ କି ମୋହର ॥୪୦-୪୩
ଏମନ୍ତେ ଦାରୁକ କାନ୍ଦନ୍ତେ । ରଥ ଉଠିଲା ଶୂନ୍ୟପଥେ ॥
ଭୂଷଣ ବାହନ ସହିତେ । ଗରୁଡ଼ ଲାଞ୍ଛନ[୧] ଅଦ୍ଭୁତେ ॥
କୋଟିଏ ସୂର୍ଯ୍ୟ ପ୍ରାୟ ଦିଶି । ଗଗନମାର୍ଗେ ଗଲା ପଶି ॥
ତାହାର ପଛେ ଶସ୍ତ୍ରଗଣ । ଚଳିଲେ ଗଗନ ମାର୍ଗେଣ ॥୪୪,୪୫
ଦାରୁକେ ବୋଲନ୍ତି ମୁରାରି । ଦ୍ୱାରକା ଯାଅ ବେଗ କରି ॥
ତାତ ଜନନୀଙ୍କର ଆଗେ । ବାରତା କହ ଯାଇ ବେଗେ ॥
ଜ୍ଞାତି ବାନ୍ଧବଗଣ ରାଇ । ମୋ ତାତ ଜନନୀ ବସାଇ ॥
ଘୋର ସମରେ ଯଦୁବଂଶ । ପ୍ରଭାସତୀର୍ଥେ ଗଲେ ନାଶ ॥
ତା ଦେଖି ପ୍ରଭୁ ବଳରାମ । ଯୋଗେ ଚଳିଲେ ନିଜଧାମ ॥
ମୋର ଜୀବନେ ନାହିଁ ଆଶା । ଦାରୁକ ଦେଖି ମୋର ଦଶା ॥
ଆଜ ରଜନୀ ମଧ୍ୟଗତେ । ମୁଁ ପୁଣି ଯିବି ନିଜପଥେ ॥
ମୋର ଶରୀର ଅବସାନେ । ସମୁଦ୍ର ଘୋରନାଦ ସ୍ୱନେ ॥
ନାଶିବ ଦ୍ୱାରକା ଭୁବନ । ଜଳେ ବୁଡ଼ିବେ ସର୍ବଜନ ॥
ଆଜ ନ ଥାନ୍ତୁ କେହି ପୁରେ । ରଜନୀମୁଖେ ଯାନ୍ତୁ ତୀରେ ॥
ତାତ ଜନନୀ ନାରୀ ସଙ୍ଗେ । ଇନ୍ଦ୍ରପ୍ରସ୍ଥେ ତୁ ଯାଅ ବେଗେ ॥
ଅର୍ଜୁନ ଅଛି ମୋ ଭୁବନେ । ଆବୋରି ନିଅ ବେନିଜନେ ॥୪୬-୪୮
ତୁ ଏବେ ହୁଅ ଜ୍ଞାନପର । ସକଳ ଭ୍ରମ କର ଦୂର ॥
ସଂସାର ମୋହ ଛାଡ଼ି ଚିତ୍ତେ । ରହ ତୁ ମୋର ଧର୍ମପଥେ ॥
ଯେତେ ତୁ ଦେଖୁ ଜୀବଲୋକ । ଏ ସର୍ବ ଦୁଃଖ ମହାଶୋକ ॥

୧. ଗରୁଡ଼ ଲାଞ୍ଛନ—ଗରୁଡ଼ ଚିହ୍ନ ଥିବା ଧ୍ୱଜା ।

ମୋର ମାୟାରେ ଏ ଚଳନ୍ତି । ଶାନ୍ତି ତୁ ଭଜ ଏହା ଚିନ୍ତି ॥୪୯
କୃଷ୍ଣର ଶୁଣି ଏ ବଚନ । ଦାରୁକ ହୋଇ ହତଜ୍ଞାନ ॥
କୃଷ୍ଣଚରଣେ ଶିର ଦେଇ । ନମିଲା ଦଣ୍ଡପ୍ରାୟ ହୋଇ ॥
ପ୍ରଣାମ କରି ପୁଣ ପୁଣ । ନମିଲା ଅଭୟ ଚରଣ ॥
ଚରଣରେଣୁ ଶିରେ ଧରି । କାନ୍ଦଇ ଉଚ୍ଚ ନାଦ କରି ॥
ପଥ ନ ଦିଶେ ଦୁଃଖଶୋକେ । ଦ୍ୱାରକା ଚଳିଲା ଦାରୁକେ ॥୫୦
ବୋଲଇ ଦାସ ଜଗନ୍ନାଥ । ଏବେ ମୁଁ ହୋଇଲି ଅନାଥ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଏକାଦଶସ୍କନ୍ଧେ ସର୍ବଯାଦବବିନାଶନଂ ନାମ ଏକତ୍ରିଂଶୋଽଧ୍ୟାୟଃ ।

□□□

# ଦ୍ୱାତ୍ରିଂଶ ଅଧ୍ୟାୟ*

ଶ୍ରୀକୃଷ୍ଣ ନିଜଧାମେ ଯାନ୍ତେ । ବସୁଦେବାଦି ନିଜ ପଥେ ॥
ଚଳିଲେ ହୋଇ ଶୋକଗ୍ରସ୍ତ । ଦ୍ୱାତ୍ରିଂଶ ଅଧ୍ୟାୟ ଚରିତ ॥

*ଶ୍ରୀ ଶୁକ ଉବାଚ*

ଏବେ ହୋ ପରୀକ୍ଷିତ ଶୁଣ । ବିଧାତା ଆଦି ଦେବଗଣ ॥
ରଜନୀମୁଖେ ଦିନ ଅନ୍ତେ । ମିଳିଲେ କୃଷ୍ଣର ଅଗ୍ରତେ ॥
ତ୍ରିଦଶନାଥ ପୁରନ୍ଦର । ମିଳିଲେ ଗଉରୀ ଶଙ୍କର ॥
ସିଦ୍ଧ ଗନ୍ଧର୍ବ ପିତୃଗଣେ । ପିଶାଚ କିନ୍ନର ଗ୍ରହଗଣେ ॥
ଯକ୍ଷ ଗୁହ୍ୟକେ ବିଦ୍ୟାଧର । ଘେନାଇ ନାନା ଉପହାର ॥
କୃଷ୍ଣଗମନ ଖେଳା ଦେଖି । ମିଳିଲେ ଭୁବନ ଉପେକ୍ଷି ॥
କୃଷ୍ଣର ଜନ୍ମ କର୍ମମାନ । ଆନନ୍ଦେ କରନ୍ତି ଗାୟନ ॥
ଦିବ୍ୟକୁସୁମ ବରଷନ୍ତି । ଜୟଶବଦେ କରି ସ୍ତୁତି ॥୧-୪

* ମୂଳ ସଂସ୍କୃତ ଅନୁସାରେ ଏକତ୍ରିଂଶ ଅଧ୍ୟାୟ ।

ନିକଟେ ଦେଖି ଦେବଗଣ । ମନେ ଚିନ୍ତିଲେ ଭଗବାନ ॥
ଦେବଙ୍କ ମନ୍ଦିରେ ମୋ ବାସ । ଏଣୁ ଏ ମୋହର ବିଶ୍ୱାସ ॥
ଏହାଙ୍କ ଅର୍ଥେ ଅବତରି । ମୁଁ ଯେ ଧରଣୀଭାରା ହରି ॥
ମୁହିଁ ମୋହର ମହୀତଳେ । ବିହରି ନାନା ଯୋଗବଳେ ॥
ମୋତେ ନ ପାରେ କେହି ଲକ୍ଷି । ଯେଣୁ ମୁଁ ସର୍ବଭୂତେ ସାକ୍ଷୀ ॥
ମୁଁ ଆଜ ସମାଧି ପ୍ରବେଶେ । ଶରୀର ଛାଡ଼ି ନିଜ ଅଂଶେ ॥
ପଶିବି ଦେଖନ୍ତୁ ଏ କ୍ଷଣ । ଏତେ ବିଗ୍ରରି ନାରାୟଣ ॥
ଦୟାସାଗର ଭଗବାନ । ତକ୍ଷଣେ ବୁଜିଲେ ନୟନ ॥ ୫
ସମାଧି ବସି ଦୃଢ଼ାସନେ । ପ୍ରାଣ ସଂଯମନ ପବନେ ॥
ଧାରଣା ଅଗ୍ନି ସନ୍ଦୀପନେ । ଦେହ ନ ଦହି ଅବଧାନେ ॥
ନିଜ ଭୁବନେ ଗଲେ ହରି । ଜୟଶବଦେ ଦିଗ ପୂରି ॥
ଶ୍ୟାମସୁନ୍ଦର କଳେବର । ଅଶେଷ ଜନ ସୁଖଘର ॥
ଧ୍ୟାନ ଧାରଣା ସ୍ତୁତିସ୍ଥାନ । ମହୀ ମଙ୍ଗଳ ଅଭିରାମ ॥
ସଂସାର ତରେ ଯାହା ଦେଖି । ହରି କେମନ୍ତେ ତା ଉପେକ୍ଷି ॥ ୬
ଦୁନ୍ଦୁଭି ବାଜେ ସୁରପୁରୀ । ନୃତ୍ୟ କରନ୍ତି ଅପସରୀ ॥
ଆନନ୍ଦେ ପାରିଜାତମାଳା । ଦେବେ ବରଷି କଲେ ଖେଳା ॥
ଶୂନ୍ୟ ଶବଦ ଶୁଣି କର୍ଣ୍ଣେ । ଦେବେ ବୋଲନ୍ତି ଅନ୍ୟୋଅନ୍ୟେ ॥
ଗ୍ରଲ ହେ ଏହି ପଥେ ଯିବା । କୃଷ୍ଣର ଚରଣେ ପୂଜିବା ॥
ଏମନ୍ତ କରି ସେ ବିଗ୍ରର । ଘେନାଇ ନାନା ଉପହାର ॥
କୃଷ୍ଣର ପଥେ ଯାନ୍ତି ଦେବେ । ପୂରିତ ଅନେକ ଉତ୍ସବେ ॥
ଯେବଣ ପଥେ କୃଷ୍ଣ ଗଲେ । କେବେହେଁ ଦେବେ ନ ଜାଣିଲେ ॥୭,୮
ପରମଜ୍ୟୋତି ଶୂନ୍ୟେ ମିଶେ । ମେଘେ ବିଜୁଳି ପ୍ରାୟ ଦିଶେ ॥
ମର୍ତ୍ତ୍ୟେ ତା ନ ଜାଣନ୍ତି ଯେହ୍ନେ । କୃଷ୍ଣର ଗତି ଦେବେ ତେହ୍ନେ ॥
ନ ଦେଖି କୃଷ୍ଣର ଗୋଚର । ହୃଦେ ହୋଇଲେ ଚମତ୍କାର ॥
ଭବ ବିରଞ୍ଚି ଆଦି ସୁରେ । ଶୂନ୍ୟେ ଚଳିଲେ ଯେଝାପୁରେ ॥୯,୧୦
ଜୀବ ସେ ସର୍ବଭୂତେ ଥାଇ । ତାହାକୁ କେହି ନ ଦେଖଇ ॥

ହରିଙ୍କି ଦେଖିବେ ସେ କାହିଁ । ଯାହାର ଆଦିଅନ୍ତ ନାହିଁ ॥
ଆତ୍ମାକୁ ଆପଣେ ସୃଜଇ । ଆତ୍ମାରେ ଆତ୍ମା ପ୍ରବେଶଇ ॥
ଆତ୍ମାରେ ଆତ୍ମାଭାବେ ରହେ । ଜନ୍ତୁ ଗୋଚର ଆତ୍ମା ନୋହେ ॥
ଆତ୍ମାକୁ ଆତ୍ମାବଳେ ବହେ । ଏଣୁ ସକଳ ଆତ୍ମାମଧ୍ୟେ ॥
ଏଣୁ ଏ ଜନ୍ମ ସ୍ଥିତି ମୃତ୍ୟୁ । ଯାହାର ମାୟା ଅଟେ ହେତୁ ॥
ନଟର ପ୍ରାୟେ କ୍ରୀଡ଼ା କରେ । ଦେଖାଇ ପୁଣି ତା ସଂହରେ ॥୧୧
ଶୁଣ ହୋ ପରୀକ୍ଷିତ ତୁହି । ଯମର ଘରୁ ଭାବଗ୍ରାହୀ ॥
ଗୁରୁ ବାଳକ ଆଣି ଦେଲେ । ତୋତେହେଁ ଗର୍ଭେ ସେ ରଖିଲେ ॥
ଯେ ହର ଅନ୍ତେ ଅନ୍ତ କରେ । ପ୍ରଳୟ କରେ ଯେ ସଂସାରେ ॥
ସମରେ ହେଲେ ତାକୁ ଜିଣି । ମହାମହିମ ଚକ୍ରପାଣି ॥
ଚରଣେ ବିନ୍ଧିଲା ଯେ ବ୍ୟାଧ । ଖଣ୍ଡିଲେ ତାର ଅପରାଧ ॥
ଦେଖାଇ ଦରଶନ ଗତି । ତାହାକୁ ଦେଲେ ସ୍ୱର୍ଗଗତି ॥
ଏମନ୍ତ ମହିମା ଯାହାର । ସେ ନୋହେ ନର ଅବତାର ॥
ଆପଣା ତନୁ ସେ ନ ରଖେ । ଏ କଥା ମୂର୍ଖଜନ ଲେଖେ ॥୧୨
ସୃଷ୍ଟି ପାଳନ ସଂହାରଣ । ଯେ ପ୍ରଭୁ ପରମ କାରଣ ॥
ଏ ଲୀଳାଖେଳା ମାତ୍ର କରେ । ତେଣୁ ଅଶେଷ ଶକ୍ତି ଧରେ ॥
ତଥାପି ଯଦୁବଂଶ ମାରି । ଧରଣୀଭାରା ଅପହରି ॥
ବିଗ୍ରହେ ନାହିଁ ପ୍ରୟୋଜନ । ତେଣୁ ସେ ଗଲେ ନିଜ ସ୍ଥାନ ॥
ସେ ଦେବ ଦେବଙ୍କର ପତି । ଦେଖାଇ ତାଙ୍କୁ ଦିବ୍ୟମୂର୍ତ୍ତି ॥
ଯେସନେ ନଟ ଲୀଳା କରେ । ସେ ନିଜ ମାୟାରେ ବିହରେ ॥
ଏମନ୍ତେ ଗୋବିନ୍ଦର ଗତି । ଏବେ ହୋ ଶୁଣ ନରପତି ॥୧୩
ତାର ଚରିତ ଏ ଶୟ୍ୟଳେ । ଯେ ପ୍ରାଣୀ ଉଠି ପ୍ରାତଃକାଳେ ॥
କରଇ ଶ୍ରବଣ କୀର୍ତ୍ତନ । ଭାବେ ଭକତି ବଳେ ପୁଣ ॥
ସୁମରି ଗୋବିନ୍ଦର ଗତି । ନିର୍ମଳ ହୋଏ ତାର ମତି ॥
ସଂସାର ତାପ ନ ଲାଗଇ । ଅନ୍ତେ ପରମଗତି ପାଇ ॥୧୪
ଏବେ ହୋ ଶୁଣ କୃଷ୍ଣଲୀଳା । ଦାରୁକ ଦ୍ୱାରକା ଯେ ଗଲା ॥

ରୋଦନ କରି ଉଚ୍ଚସ୍ୱରେ । ପଶିଲା ଦ୍ୱାରକା ନଗରେ ॥
ଦେବକୀ ବସୁଦେବ ପାଦେ । ପଡ଼ିଲା ଦୁଃଖ ଶୋକନାଦେ ॥
ଶୁଣି ମିଳିଲା ଉଗ୍ରସେନ । ଦେଖି ଦାରୁକ ଆଗମନ ॥
ଦାରୁକ କହି ଶୋକନାଦେ । ପଡ଼ିଲା ଉଗ୍ରସେନ ପାଦେ ॥୧୫
ଯାଦବବଳ ନାଶ କଥା । ରାମ ଗୋବିନ୍ଦଙ୍କ ବ୍ୟବସ୍ଥା ॥
ଦାରୁକ ମୁଖୁଁ ତାହା ଶୁଣି । କୃଷ୍ଣର ଯେତେକ ତରୁଣୀ ॥
ଶୋକେ ହୋଇଲେ ମୂର୍ଚ୍ଛିତ । ଧରଣୀ ପଡ଼ି ମୋହଗତ ॥
ସକଳେ ମିଳି ଏକସ୍ଥାନେ । ରୋଦନ କରି ଉଚ୍ଚସ୍ୱନେ ॥
ଶିରେ ବଦନେ କର ତାଡ଼ି । କାନ୍ଦନ୍ତି ମହୀତଳେ ପଡ଼ି ॥
ରାମ ଗୋବିନ୍ଦ ତନୁ ତ୍ୟାଗେ । ପ୍ରାଣ କେ ଧରେ ହୃଦଭାଗେ ॥୧୬,୧୭
ଦେବକୀ ରୋହିଣୀର କୋଳେ । ହା ହା ଗୋବିନ୍ଦ ବୋଲି ଭୋଳେ ॥
ପଡ଼ି ଛାଡ଼ିଲେ ନିଜ ପ୍ରାଣ । ଦେଖି ବସୁଦେବ ତକ୍ଷଣ ॥
ଚକିତେ ଚଉଦିଗେ ଗୂହିଁ । କାତରେ କମ୍ପେ ତାର ଦେହୀ ॥
ଡାକିଲା ତୋଳି ବେନି କର । ଆସ ଗୋବିନ୍ଦ ହଳଧର ॥
ଦେଖାଅ ସୁନ୍ଦର ବଦନ । ବୋଲି ଛାଡ଼ିଲା ନିଜ ପ୍ରାଣ ॥
ବସୁଦେବର ଯେତେ ନାରୀ । ସ୍ୱାମୀ ଚରଣ ଦୃଢ଼େ ଧରି ॥
ଅନଳେ ହୋଇଲେ ଦହନ । ଗମିଲେ ବୈକୁଣ୍ଠ ଭୁବନ ॥
ରେବତୀ ରାମମାର୍ଗ ଚିନ୍ତି । ଅଗ୍ନିରେ ଦଗଧ ହୁଅନ୍ତି ॥
କୃଷ୍ଣନନ୍ଦନ ନାରୀଗଣେ । ଅଗ୍ନି ପ୍ରବେଶ ଜଣେ ଜଣେ ॥
କୃଷ୍ଣର ଶ୍ରେଷ୍ଠା ଅଷ୍ଟନାରୀ । ରୁକ୍ମିଣୀଦେବୀ ଆଦି କରି ॥
ତୁଣ୍ଡେ ଉଚ୍ଚାରି ଭଗବାନ । ଅନଳେ ହୋଇଲେ ଦହନ ॥୧୮-୨୦
ଅର୍ଜ୍ଜୁନ ଦେଖି ତା ନୟନେ । ସୁମରି କୃଷ୍ଣକଥା ମନେ ॥
ଅନିତ୍ୟ ଦେଖି ଏ ସଂସାର । ଚିନ୍ତି ହୃଦୟ କଲା ସ୍ଥିର ॥୨୧
କୃଷ୍ଣ ନ ଦେଖି ବନ୍ଧୁଜନେ । ପ୍ରାଣ ଛାଡ଼ିଲେ ଜଣେ ଜଣେ ॥
ଅର୍ଜ୍ଜୁନ ନେଇ ତା ଅନଳେ । ଦହନ କଲା ସିନ୍ଧୁକୂଳେ ॥୨୨
ଯେ ଅବା ରହିଲେ ଜୀବନେ । କୃଷ୍ଣର ଯେତେ ନାରୀଗଣେ ॥

ତାହାଙ୍କୁ ଘେନାଇ ଅର୍ଜ୍ଜୁନେ । ପୁରେ ଯେ ଥିଲେ ପ୍ରଜାଜନେ ॥
ସକଳେ ମିଳି ଏକମେଳେ । ତୀରେ ମିଳିଲେ ରାତ୍ରକାଳେ ॥
ଦେଖନ୍ତି ସର୍ବଲୋକ ତୁଲେ । ତକ୍ଷଣେ ସମୁଦ୍ର ଉଲ୍ଲୋଳେ ॥
ବୁଡ଼ିଲା ଦ୍ୱାରକା ନଗର । ଛାଡ଼ି କୃଷ୍ଣର ନିଜ ପୁର ॥
ଯେଣୁ ସେ କୃଷ୍ଣ ସନ୍ନିଧାନେ । ରହେ ପ୍ରଳୟ ଅବସାନେ ॥
ଏଣୁ ସେ ଦ୍ୱାରକାନଗର । ସୁପୁଣ୍ୟ ଈଶ୍ୱର ମନ୍ଦିର ॥
ପରମ ପବିତ୍ର ମଙ୍ଗଳ । ଯହିଁ ବିଜୟ ଆଦିମୂଳ ॥
ସୁମନେ ଶୁଣ ପରୀକ୍ଷିତ । ଥିଲା ଯେ ଅନିରୁଦ୍ଧ ସୁତ ॥
ବାଳକ ବଜ୍ର ତାର ନାମ । ସୁନ୍ଦର ତନୁ ଗୁଣଧାମ ॥
ତାହାକୁ କଲେ ତହିଁ ରାଜା । ସୁଖେ ପାଳିଲା ଜନପ୍ରଜା ॥
ଅର୍ଜୁନ ଛତ୍ର ଦେଇ ଶିରେ । ସେ ରାଜା ମଥୁରା* ନଗରେ ॥
ମଙ୍ଗଳ ଅଭିଷେକ କରି । କୃଷ୍ଣ ବିଧବା ଯେତେ ନାରୀ ॥
ସକଳ ପାରିଷଦ ଯୁତେ । ଅର୍ଜ୍ଜୁନ ଗଲା ଇନ୍ଦ୍ରପ୍ରସ୍ଥେ ॥
ପଥେ ସେ ଗଲା ଦୁଃଖଶୋକେ । କୃଷ୍ଣ ବିଚ୍ଛେଦେ ଅଶ୍ରୁମୁଖେ ॥୨୩-୨୫
ଶୁଣ ହେ ରାଜା ପରୀକ୍ଷିତ । ଅର୍ଜ୍ଜୁନଠାରୁ ବନ୍ଧୁ ହତ ॥
ଶୁଣି ତୋ ପିତାମହଗଣେ । ରାଜ୍ୟ ଛାଡ଼ିଲେ ତତକ୍ଷଣେ ॥
ତୋ ଶିରେ ଅଭିଷେକ କରି । ତୁ ଯେ ପାଣ୍ଡବ ବଂଶଧାରୀ ॥
ଉତ୍ତର ଅଭିମୁଖେ ଗଲେ । ଅନ୍ତେ ବୈକୁଣ୍ଠେ ସେ ମିଳିଲେ ॥୨୬
ଶୁଣ ହୋ ଅଭିମନ୍ୟୁବଳା । ଯେତେ କହିଲି କୃଷ୍ଣଲୀଳା ॥
କୃଷ୍ଣର ଜନ୍ମ କର୍ମ ଗାଥା । ଶ୍ରଦ୍ଧାଏ କରନ୍ତି ଯେ ଚିନ୍ତା ॥
ଏହା ଯେ ଶୁଣନ୍ତି ଶ୍ରବଣେ । କି ଅବା ଶୁଣାନ୍ତି ବଦନେ ॥

---

* ଏ ସ୍ଥଳରେ ଏକାଧିକ ଓଡ଼ିଆ ପାଠରେ ବଜ୍ର (ବଜ୍ରନାଭ) ଦ୍ୱାରକାରେ ରାଜା ହେବା କଥା ଦେଖିବାକୁ ମିଳୁଥିଲେହେଁ ଏହା ଅପ୍ରାସଙ୍ଗିକ ମନେ ହୁଏ। କାରଣ ଶ୍ରୀକୃଷ୍ଣଙ୍କ ସ୍ୱଧାମଗମନ ପରେ ଦ୍ୱାରକା ଜନଶୂନ୍ୟ ଓ ଜଳମଗ୍ନ ହୋଇଯାଇଥିଲା। ବଜ୍ରନାଭ ମଥୁରାରେ ରାଜା ହୋଇଥିଲେ ବୋଲି ମୂଳ ସଂସ୍କୃତରେ ଅନ୍ୟତ୍ର ବର୍ଣ୍ଣିତ ଅଛି। ତା’ ଛଡ଼ା ଏହି ଗ୍ରନ୍ଥରେ

ସେ ନର ତ୍ରିଭୁବନେ ଧନ୍ୟ । ଦେବେ କରନ୍ତି ତାକୁ ମାନ୍ୟ ॥
ହେଳେ ତରଇ ଭବବାରି । ଜଗତ ମଧ୍ୟେ ଯଶ ପୂରି ॥
ଅତି ପତିତ ଦୁରାଗ୍ରର । ଯେ ଅବା ପାପିଷ୍ଠ ପାମର ॥
ସେ ହରିକଥା କର୍ଣ୍ଣେ ଶୁଣି । ତରନ୍ତି ଭବତରଙ୍ଗିଣୀ ॥୨୭
ଶ୍ରଦ୍ଧା ବିହୀନେ ଅବହେଳେ । ଯେ ପ୍ରାଣୀ ଶୁଣେ ଏକବେଳେ ॥
ଭକତି ଲଭେ କୃଷ୍ଣପାଦେ । ନ ପଡ଼େ ଭବ ପରମାଦେ ॥
ପ୍ରାଣ ବିଯୋଗେ ବ୍ରହ୍ମମଯ୍ୟେ । ପଶଇ ନାରାୟଣ ଦେହେ ॥୨୮
ପରୀକ୍ଷେ କହେ ବ୍ୟାସସୁତ । ଶ୍ରୀ ଏକାଦଶେ ଭାଗବତ ॥
ଏଣେ ଜୀବର ପରିତ୍ରାଣ । ସୁଜନେ ନିତ୍ୟେ ଏହା ଶୁଣ ॥
ଭକତି କୃଷ୍ଣପାଦେ ଲଭ । ମନୁଷ୍ୟଜନ୍ମର ଏ ଲାଭ ॥
ବୋଲଇ ବିପ୍ର ଜଗନ୍ନାଥ । ମୁଁ ତୁମ୍ଭ ଭୃତ୍ୟଙ୍କର ଭୃତ୍ୟ ॥

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ଶୁକପରୀକ୍ଷିତସଂବାଦେ
ଶ୍ରୀକୃଷ୍ଣବୈକୁଣ୍ଠଗମନଂ ନାମ ଦ୍ୱାତ୍ରିଂଶୋଽଧ୍ୟାୟଃ ।

***ସମାପ୍ତୋଽୟଂ ଏକାଦଶସ୍କନ୍ଧଃ***

॥ ହରିଃ ଓଁ ତତ୍‌ସତ୍ ॥

❒❒❒

---

ମଧ୍ୟ ଅନ୍ୟ ସ୍ଥଳମାନଙ୍କରେ କବି ଶ୍ରୀ ଜଗନ୍ନାଥଦାସ ବଜ୍ରନାଭ ମଥୁରାର ରାଜା ହେବା କଥା ଉଲ୍ଲେଖ କରିଛନ୍ତି; ଯଥା—

ଯାଦବବଂଶେ ଶେଷ ଥିଲା । ବଜ୍ର ଯେ ଅନିରୁଦ୍ଧ ବଳା ॥
ମଥୁରାପୁରେ ଧର୍ମଗ୍ରତେ । ସ୍ଥାପିଲେ ଶୂରସେନ ପାଟେ ॥
(୧ । ୧୪ । ୩୬-୩୮)

ମଥୁରାପୁରେ ସେ ରାଜନ । ବଜ୍ର ଅନିରୁଦ୍ଧ ନନ୍ଦନ ॥
(୧୨ । ୧୨ । ୪୧,୪୨)

ସମ୍ଭବତଃ ଦୀର୍ଘକାଳରୁ ଅନେକ ଅନୁଲେଖନକାରୀଙ୍କ ହସ୍ତରେ ପ୍ରତିକୃତି ହେବା ଦ୍ୱାରା ଏଠାରେ ପ୍ରମାଦବଶତଃ 'ଦ୍ୱାରକା' ଶବ୍ଦ ରହିଯାଇଛି । ତେଣୁ ଏଠାରେ ସଂଶୋଧିତ ପାଠରୂପେ 'ମଥୁରା' ଗ୍ରହଣ କରାଗଲା ।

॥ ଶ୍ରୀହରିଃ ॥

# ଗୀତାପ୍ରେସ୍‌ରୁ ପ୍ରକାଶିତ ଓଡ଼ିଆ ପୁସ୍ତକାବଳୀ

## ସ୍ୱାମୀ ରାମସୁଖଦାସଙ୍କ ପ୍ରଣୀତ

430 ଗୃହସ୍ଥାଶ୍ରମରେ କିପରି ରହିବା?
754 ଗୀତାମାଧୁର୍ଯ୍ୟ
757 ଶରଣାଗତି
796 ଦେଶର ବର୍ତ୍ତମାନ ଦଶା ତଥା ତାହାର ପରିଣାମ
797 ସନ୍ତାନର କର୍ତ୍ତବ୍ୟ ଏବଂ ସତ୍ୟ ଆଶ୍ରୟ
798 ଗୁରୁତତ୍ତ୍ୱ
817 କର୍ମରହସ୍ୟ
852 ମୂର୍ତ୍ତିପୂଜା ଏବଂ ନାମଜପ
1003 ସତ୍‌ସଙ୍ଗ-ମୁକ୍ତାହାର
1004 ତାତ୍ତ୍ୱିକ ପ୍ରବଚନ
1005 ମାତୃଶକ୍ତିର ଘୋର ଅପମାନ
1121 ଶ୍ରୀମଦ୍‌ଭଗବଦ୍‌ଗୀତା ସାଧକ-ସଂଜୀବନୀ ଟୀକା
1130 ଗୁରୁ ବିନା କଣ ମୁକ୍ତି ନାହିଁ?
1138 ଆତ୍ମୀୟ ଭଗବାନ
1139 କଲ୍ୟାଣକାରୀ ପ୍ରବଚନ
1208 ଆଦର୍ଶ କାହାଣୀ ଚୟନ
1209 ପ୍ରଶ୍ନୋତ୍ତର ମଣିମାଳା
1267 ସହଜ ସାଧନା
1268 ବାସ୍ତବ ସୁଖ
1269 ଆବଶ୍ୟକ ଶିକ୍ଷା
1270 ନିତ୍ୟଯୋଗର ଉପଲବ୍ଧି
1298 ଗୀତାଦର୍ପଣ
1299 ଭଗବାନ ଓ ଭଗବଦ୍‌ଭକ୍ତି
1321 ଈଶ୍ୱରମୟ ଏ ଜଗତ
1464 ଅମୃତ ବିନ୍ଦୁ
1465 ଗୀତା ଅନ୍ୱୟ ଓ ଅର୍ଥ
1473 ସାଧନ-ସୁଧା-ସିନ୍ଧୁ
1511 ସର୍ବଜନ ଶ୍ରେୟ ପନ୍ଥା
1512 ସାଧନାର ଦୁଇଟି ପ୍ରଧାନ ସୂତ୍ର

## ଶ୍ରୀ ହନୁମାନପ୍ରସାଦ ପୋଦ୍ଦାରଙ୍କ ପ୍ରଣୀତ

865 ପ୍ରାର୍ଥନା
1011 ଆନନ୍ଦ ଲହରୀ
1041 ବ୍ରହ୍ମଚର୍ଯ୍ୟ ଓ ମନକୁ ବଶ କରିବାର କେତୋଟି ଉପାୟ
1186 ଶ୍ରୀଭଗବନ୍ନାମ
1251 ଭବରୋଗର ଔଷଧ ରାମବାଣ

## ଶ୍ରୀ ଜୟଦୟାଲ ଗୋୟନ୍ଦକାଙ୍କ ପ୍ରଣୀତ

1038 ସନ୍ଥ-ମହିମା
1039 ଭଗବାନଙ୍କର ଦୟା ଏବଂ ଭଗବତ୍ କୃପା
1040 ସତ୍‌ସଙ୍ଗର କିଛି ସାରକଥା
1078 ଭଗବତ୍‌ପ୍ରାପ୍ତିର ବିବିଧ ଉପାୟ
1079 ବାଲ୍ୟ-ଶିକ୍ଷା

1089 ଧର୍ମ କ'ଣ? ଭଗବାନ୍ କ'ଣ?
1090 ପ୍ରେମର ବାସ୍ତବ ସ୍ୱରୂପ ଓ ଶୋକନାଶର ଉପାୟ
1091 ଆମର କର୍ତ୍ତବ୍ୟ
1100 ଶ୍ରୀମଦ୍ଭଗବଦ୍‌ଗୀତା ତତ୍ତ୍ୱବିବେଚନୀ ଟୀକା
1163 ବାଳକଙ୍କ କର୍ତ୍ତବ୍ୟ
1174 ଆଦର୍ଶ ନାରୀ ସୁଶୀଳା
1187 ଆଦର୍ଶ ଭ୍ରାତୃ-ପ୍ରେମ
1203 ନଳ-ଦମୟନ୍ତୀ
1205 ରାମାୟଣର କେତେକ ଆଦର୍ଶ ପାତ୍ର
1220 ସାବିତ୍ରୀ ଓ ସତ୍ୟବାନ୍
1221 ଆଦର୍ଶ ଦେବୀଚରିତ୍ର
1252 ଭଗବାନଙ୍କ ରହିବାର ପାଞ୍ଚୋଟି ସ୍ଥାନ
1253 ପରଲୋକ, ପୁନର୍ଜନ୍ମ ଏବଂ ବୈରାଗ୍ୟ
1274 ପରମାର୍ଥସୂତ୍ର-ସଂଗ୍ରହ
1506 ଅମୂଲ୍ୟ ସମୟର ସଦୁପଯୋଗ

## ବିବିଧ

541 ଶ୍ରୀମଦ୍ଭଗବଦ୍‌ଗୀତା ଓ ବିଷ୍ଣୁସହସ୍ରନାମ (କେବଳ ଶ୍ଳୋକ, ପକେଟ ସାଇଜ୍)
815 ଶ୍ରୀମଦ୍ଭଗବଦ୍‌ଗୀତା (ଶ୍ଳୋକାର୍ଥ ସହିତ, ବନ୍ଧାଇ)
826 ଗର୍ଭପାତ ଉଚିତ ବା ଅନୁଚିତ ଆପଣ ଭାବନ୍ତୁ
854 ଭକ୍ତରାଜ ହନୁମାନ
856 ଶ୍ରୀହନୁମାନଗ୍ଭଳିଶା
863 ନବଦୁର୍ଗା (ଚିତ୍ରକଥା)
1008 ଶ୍ରୀମଦ୍ଭଗବଦ୍‌ଗୀତା (ଶ୍ଳୋକାର୍ଥ ସହିତ, ପକେଟ ସାଇଜ)
1009 ଜୟ ହନୁମାନ (ଚିତ୍ରକଥା)
1010 ଅଷ୍ଟବିନାୟକ (ଚିତ୍ରକଥା)
1036 ଶ୍ରୀମଦ୍ଭଗବଦ୍‌ଗୀତା (ଲଘୁ ଆକାର)
1068 ଗଜେନ୍ଦ୍ରମୋକ୍ଷଣସ୍ତୋତ୍ରମ୍
1069 ନାରାୟଣକବଚମ୍
1070 ଆଦିତ୍ୟହୃଦୟସ୍ତୋତ୍ରମ୍
1154 ଗୋବିନ୍ଦଦାମୋଦରସ୍ତୋତ୍ରମ୍
1157 ଶ୍ରୀମଦ୍ଭଗବଦ୍‌ଗୀତା (ଅର୍ଥ ସହିତ)
1173 ଭକ୍ତ ଚନ୍ଦ୍ରିକା
1200 ସତ୍ୟପ୍ରେମୀ ହରିଶ୍ଚନ୍ଦ୍ର
1201 ମହାତ୍ମା ବିଦୁର
1202 ପ୍ରେମୀ ଭକ୍ତ ଉଦ୍ଧବ
1204 ସୁନ୍ଦରକାଣ୍ଡ (ମୂଳ ପାଠ)
1218 ଶ୍ରୀରାମଚରିତମାନସ (ମୂଳ ପାଠ, ବଡ଼ ଅକ୍ଷର)
1219 ଶ୍ରୀପଞ୍ଚରତ୍ନଗୀତା
1248 ମୋହନ (ଚିତ୍ରକଥା)
1249 କହ୍ନେଇ (ଚିତ୍ରକଥା)
1250 ଓଁ ନମଃ ଶିବାୟ (ଚିତ୍ରକଥା)
1254 ସାଧନ-ନବନୀତ
1342 ବଡ଼ମଣିଷଙ୍କ ଜୀବନରୁ ଶିକ୍ଷା
1463 ଶ୍ରୀରାମଚରିତମାନସ (ଅର୍ଥ ସହିତ)
1476 ଶ୍ରୀଦୁର୍ଗାସପ୍ତଶତୀ (ଅର୍ଥ ସହିତ)
1494 ଚିତ୍ରମୟ ଚୈତନ୍ୟ ଲୀଳା
1509 ରାମରକ୍ଷାସ୍ତୋତ୍ର
1551 ଅତିବଡ଼ୀ ଜଗନ୍ନାଥଦାସ ପ୍ରଣୀତ ଶ୍ରୀମଦ୍‌ଭାଗବତ
1750 ଶ୍ରୀମଦ୍‌ଭାଗବତ ଏକାଦଶ ସ୍କନ୍ଧ (ଶ୍ରୀଜଗନ୍ନାଥଦାସକୃତ)